ଓଁ

SRI NAHAR
PURI - 75200

9th SEPT. 1994

## In Remembrance :

*Amiable, friendly and always ready to lend a helping hand, Jagadish Pani was at heart a sincere* ***"Bhakta"*** *of Shri Jagannath Mahaprabhu. I recollect his cherished desire to spend his last days at* ***"Shri-Kshetra dham."***

*May Shri Shri Jagannath Mahaprabhu rest his soul in eternal peace. My sincere condolences to all members of the bereaved family.*

(DIBYASINGHA DEB)

# ଜଗଦୀଶ ପାଣିଙ୍କ ବିୟୋଗରେ ମୁଖ୍ୟମନ୍ତ୍ରୀଙ୍କ ଶୋକ

ଜଗଦୀଶ ପାଣିଙ୍କର ଅକାଳ ବିୟୋଗ ଓଡ଼ିଶାର ସାହିତ୍ୟାନୁରାଗୀଙ୍କ ପାଇଁ ଏକ ଦୁଃଖଦ ଘଟଣା । ପ୍ରଥମେ କଲିକତାରୁ, ତା'ପରେ ଭୁବନେଶ୍ୱରରୁ ତାଙ୍କ ସଂପାଦନାରେ ପ୍ରକାଶିତ 'ସମାବେଶ'ର ଗୁଣାତ୍ମକ ଉତ୍କର୍ଷ ସମସ୍ତେ ସ୍ୱୀକାର କରିବେ । ଏହାରି ମାଧ୍ୟମରେ ସେ ବହୁ ଲେଖକଙ୍କୁ ପ୍ରୋତ୍ସାହିତ କରିଥିଲେ । ତାଙ୍କର ବନ୍ଧୁପ୍ରୀତିର ପଟାନ୍ତର ନାହିଁ । ବ୍ୟକ୍ତିଗତ ଜୀବନରେ ବହୁ ବିପର୍ଯ୍ୟୟର ସମ୍ମୁଖୀନ ହେବା ସତ୍ତ୍ୱେ ତାଙ୍କର ସାହିତ୍ୟ ପ୍ରୀତି ଓ ବନ୍ଧୁ ସ୍ନେହ ଅତୁଟ ରହିଥିଲା ।

ତାଙ୍କର ଅମର ଆତ୍ମା ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଜଣାଇବା ସଂଗେ ସଂଗେ ମୁଖ୍ୟମନ୍ତ୍ରୀ ଶୋକସନ୍ତପ୍ତ ପରିବାର ପ୍ରତି ଗଭୀର ସମବେଦନା ଜ୍ଞାପନ କରିଛନ୍ତି ।

••••

ଭୁବନେଶ୍ୱର
୨୪-୯-୯୪

ପ୍ରାଣବାବୁ,

ଆପଣଙ୍କ ବାପା; ସ୍ୱର୍ଗତ ଜଗଦୀଶ ପାଣିଙ୍କ ବିୟୋଗରେ ଆମେ ଭୁବନେଶ୍ୱରର ସାହିତ୍ୟିକ ଏବଂ ସାହିତ୍ୟପ୍ରେମୀମାନେ ଗଭୀର ଭାବରେ ମର୍ମାହତ। ପ୍ରକୃତରେ ସେ ଜଣେ ସାହିତ୍ୟ-ପ୍ରାଣ ବ୍ୟକ୍ତି ଥିଲେ। ତାଙ୍କୁ ହିଁ କେନ୍ଦ୍ରକରି 'ସମାବେଶ' ପତ୍ରିକା ମାଧ୍ୟମରେ ଓଡ଼ିଆ ସାହିତ୍ୟର, ସଂସ୍କୃତିର ଏକ ଭିନ୍ନ ପରିବେଶ ସୃଷ୍ଟି ହୋଇଥିଲା । ଆଧୁନିକ ଓଡ଼ିଆ ସାହିତ୍ୟର ନୂତନ ଦିଗ ସହିତ ପାଠକମାନେ ପରିଚିତ ହୋଇଥିଲେ। ଜଣେ ସଫଳ ପ୍ରକାଶକ ଭାବରେ ମଧ୍ୟ ତାଙ୍କ କର୍ମକୁଶଳତାର ପଟାନ୍ତର ନାହିଁ। ସ୍ୱଳ୍ପ କେତେଖଣ୍ଡ ବହି 'ସମାବେଶ ପ୍ରକାଶନ' ମାଧ୍ୟମରେ ପ୍ରକାଶିତ ହୋଇଥିଲେ ମଧ୍ୟ ଜରୁରୀକାଳୀନ ପରିସ୍ଥିତି ଜାରି ରହିଥିବା ବେଳେ ଡଃ ହରେକୃଷ୍ଣ ମହତାବଙ୍କ '୧୯୭୫' ଓ ତୃତୀୟ ପର୍ବ ଏବଂ ଜରୁରୀକାଳୀନ ପରିସ୍ଥିତିରେ ଓଡ଼ିଆ ପାଠକମାନଙ୍କ ପାଇଁ ଗାଳ୍ପିକମାନେ ଲେଖିଥିବା ରାଜନୀତି-ସଚେତନତା ମୂଳକ ଗଳ୍ପକୁ ନେଇ 'ଅଂଧଯୁଗର କାହାଣୀ'- ସଂକଳନକୁ ପ୍ରକାଶ କରିବାର ଯେଉଁ ସାହସ ସେ ପ୍ରଦର୍ଶନ କରିଛନ୍ତି ତାହା ଅସାଧାରଣ।

ଈଶ୍ୱର ଆପଣଙ୍କୁ ତଥା ପରିବାରବର୍ଗଙ୍କୁ ଏହି ଗଭୀର ଦୁଃଖ ସହ୍ୟ କରିବାକୁ ସାହସ ଦିଅନ୍ତୁ ଏହାହିଁ କାମନା।

ଆଜି ଅପରାହ୍ନ ୫ଘଟିକା ବେଳେ ଗୋଦାବରୀଶ ସାହିତ୍ୟ ସଂସଦ, ଭୁବନେଶ୍ୱର, ପରିସରରେ ଭୁବନେଶ୍ୱରର ସାହିତ୍ୟିକ ଏବଂ ସାହିତ୍ୟ ପ୍ରେମୀମାନଙ୍କ ଦ୍ୱାରା ଆୟୋଜିତ ଶୋକସଭାରେ ଗୃହୀତ ଶୋକ ପ୍ରସ୍ତାବ।

ପ୍ରେରକ - ବିରାଜ ମୋହନ ଦାସ୍

••••

ମହାଶୟା,

ଜଗଦୀଶବାବୁଙ୍କ ଆକସ୍ମିକ ତିରୋଧାନ ସମସ୍ତଙ୍କୁ ଚକିତ ଓ ଶୋକାର୍ତ୍ତ କରିଦେଇଛି । ତାଙ୍କପରି ଜଣେ ବନ୍ଧୁବତ୍ସଳ, ସାହିତ୍ୟପ୍ରେମୀ,ବିଚକ୍ଷଣ ସଂପାଦକ ଓ ସାମ୍ବାଦିକ ଆଉ ଦେଖିବାକୁ ମିଳିବନି । ଦୁଃସ୍ଥ ଓ ଅଭାବୀ ପ୍ରତି ତାଙ୍କର ସଂବେଦନଶୀଳତା ଜଣାଶୁଣା । ସାମାନ୍ୟ କର୍ମଜୀବନରୁ ନିଜ ପ୍ରଚେଷ୍ଟା ଓ ନିଷ୍ଠା ବଳରେ କ୍ୱାଲିଟି ପ୍ରେସ୍ ପରି ଏକ ପ୍ରଥମ ଶ୍ରେଣୀର ପ୍ରେସ୍ ପ୍ରତିଷ୍ଠା କରିବା ସହଜ କଥା ନୁହେଁ । ଜଗଦୀଶ ପାଣି ଲେଖକ ସାମୁଖ୍ୟ ସହିତ ପ୍ରଥମରୁ ଜଡ଼ିତ । ସବୁ ସମ୍ମିଳନୀ ଓ ବୈଠକରେ ସେ ଆଗ୍ରହର ସହିତ ଯୋଗ ଦେଉଥିଲେ । ତାଙ୍କ ତିରୋଧାନରେ ଆମେ ସବୁ ମର୍ମାହତ । ସାତକଡ଼ି ହୋତାଙ୍କ ଅଧ୍ୟକ୍ଷତାରେ ଲେଖକ ସାମୁଖ୍ୟ ପକ୍ଷରୁ ହୋଇଥିବା ଶୋକସଭାରେ (୨/୯) ତାଙ୍କ ଗୁଣଗାନ କରିବା ଛଡ଼ା ନିମ୍ନଲିଖିତ ଶୋକ ପ୍ରସ୍ତାବ ଗୃହୀତ ହୋଇଥିଲା ଏବଂ ସମସ୍ତେ ତାଙ୍କ ଆତ୍ମାର ସଦ୍‌ଗତି ପାଇଁ ପ୍ରାର୍ଥନା କରିଥିଲେ ।

"ସମାବେଶର ସଂପାଦକ, ସାହିତ୍ୟପ୍ରେମୀ, କ୍ୱାଲିଟି ପ୍ରେସ୍‌ର ପ୍ରତିଷ୍ଠାତା ଓ ସାମ୍ବାଦିକ ବନ୍ଧୁ ଜଗଦୀଶ ପାଣିଙ୍କ ଆକସ୍ମିକ ତିରୋଧାନରେ ବନ୍ଧୁଟିଏ ଆଉ ଆମ ଗହଣରେ ମିଳିବେ ନାହିଁ । ଲେଖକ ସାମୁଖ୍ୟ ଜନ୍ମଦିନରୁ ଏହା ସହିତ ସଂପୃକ୍ତ ଥିଲେ ସେ । ସମାବେଶର ସଂପାଦକ ଭାବେ ବହୁ ନୂତନ ପ୍ରତିଭାକୁ ଲୋକଲୋଚନକୁ ଆଣିବା ଛଡ଼ା ଲେଖକ ଲେଖିକା ମାନଙ୍କର ଜଣେ ଆତ୍ମୀୟ ଓ ବନ୍ଧୁଭାବେ ସେ ସମସ୍ତଙ୍କୁ ଆପଣାର କରିପାରିଥିଲେ ।

ତାଙ୍କର ତିରୋଧାନରେ ଓଡ଼ିଶା ଜଣେ ବିଚକ୍ଷଣ ସଂପାଦକ ଓ ପରିଚାଳକଙ୍କୁ ହରାଇଲା । ସେପରି ଗୁଣୀ ବ୍ୟକ୍ତିଟିଏ ଆଉ ସହଜରେ ମିଳିବେ ନାହିଁ ।

ଲେଖକ ସାମୁଖ୍ୟ ତାଙ୍କର ଶୋକସନ୍ତପ୍ତ ପରିବାର ପ୍ରତି ଗଭୀର ସମବେଦନା ଜଣାଇବା ସଂଗେ ସଂଗେ ତାଙ୍କ ଆତ୍ମାର ସଦ୍‌ଗତି କରିବା ପାଇଁ ପ୍ରାର୍ଥନା କରୁଛି ।"

ଶ୍ରୀମତୀ ପ୍ରେମଲତା ପାଣି
କ୍ୱାଲିଟି ପ୍ରେସ୍

ସାତକଡ଼ି ହୋତା
ସଭାପତି
ଲେଖକ ସାମୁଖ୍ୟ



ପ୍ରିୟ ଭଉଣୀ,

ଜଗଦୀଶବାବୁଙ୍କ ଆକସ୍ମିକ ତିରୋଧାନ ସଂପର୍କରେ ଶୁଣିଲି । ସେ ଯେ ଏତେ ଶୀଘ୍ର ଏପରିଭାବେ ଚାଲିଯିବେ ତାହା ସମସ୍ତଙ୍କୁ ବ୍ୟଥିତ ଓ ଶୋକାଭିଭୂତ କରିଛି । ଜଗଦୀଶବାବୁ 'ସମାବେଶ' ପତ୍ରିକାର ସଂପାଦକ ଭାବେ ଏକ ବଳିଷ୍ଠ ପରଂପରା ସୃଷ୍ଟି କରି ଯାଇଛନ୍ତି । ସେ କେବଳ ଆମର ଶୁଭାକାଂକ୍ଷୀ ଓ ବନ୍ଧୁ ନଥିଲେ, ବହୁ ଜଣା ଅଜଣା ଲେଖକ/ଲେଖିକାଙ୍କ ପାଇଁ ତାଙ୍କର ଦରଦ ଓ ଅକୃତ୍ରିମ ବନ୍ଧୁବତ୍ସଳତା ସ୍ମରଣୀୟ ହୋଇ ରହିବ । ବହୁ ଝଡ଼ଝଂଜାର ସମ୍ମୁଖୀନ ହୋଇ ମଧ୍ୟ ସେ ନିଜ ମାର୍ଗରେ ଅଟଳ ରହି ବୀରପରି ଶେଷ ପର୍ଯ୍ୟନ୍ତ ଚାଲିଥିଲେ । ସେପରି ଜଣେ ଭଲ ଲୋକ ସହଜରେ ମିଳନ୍ତି ନାହିଁ ।

ଏହି ଦାରୁଣ ବିପର୍ଯ୍ୟୟ ଓ ଦୁଃଖ ସହିବାକୁ ଭଗବାନ ଆପଣଙ୍କୁ ଓ ପିଲାମାନଙ୍କୁ ଶକ୍ତି ଦିଅନ୍ତୁ ଏତିକି ପ୍ରାର୍ଥନା କରୁଛି ଅମୃତାୟନ ପରିବାର ପକ୍ଷରୁ ।

ଅମର ଆତ୍ମାର ସଦ୍‌ଗତି ହେଉ ।

॥ ଇତି ॥

ଶ୍ରୀମତୀ ପ୍ରେମଲତା ପାଣି
କାଲିଟି ପ୍ରେସ୍
ଭୁବନେଶ୍ୱର

ଗୀତା ହୋତା
ସଂପାଦିକା
ଅମୃତାୟନ

••••

# ଶୋକବାର୍ତ୍ତା

ଜଗଦୀଶ ପାଣିଙ୍କ ବିୟୋଗରେ ଓଡ଼ିଶା ଜଣେ ସାହିତ୍ୟ ପୃଷ୍ଠପୋଷକ ଓ ନିଷ୍ଠାପର ମୁଦ୍ରାକରଙ୍କୁ ହରେଇଛି । ଅନେକ ବର୍ଷ ପର୍ଯ୍ୟନ୍ତ ତାଙ୍କ ଦ୍ୱାରା ପ୍ରତିଷ୍ଠିତ କ୍ୱାଲିଟି ପ୍ରେସ୍ ହିଁ ଭୁବନେଶ୍ୱରର ସବୁଠୁ ରୁଚିସମ୍ପନ୍ନ ପ୍ରେସ୍ ହୋଇ ଚାଲିଥିଲା । ନିଜ ଉଦ୍ୟମରେ ସେ ଯେଉଁଭଳି ଭାବେ କଲିକତାର ଏକ ଅଖ୍ୟାତ ଗଳିରୁ ନିଜର ଛାପାଖାନା ଆରମ୍ଭ କରି ରାଜଧାନୀର ବିଖ୍ୟାତ ପ୍ରେସ୍ ପ୍ରତିଷ୍ଠାତାର ଗୌରବ ଅର୍ଜନ କରିପାରିଥିଲେ ତାହା ବାସ୍ତବିକ ପ୍ରଶଂସନୀୟ । ସେ ମୋର ଗୁରୁଜନ ସ୍ଥାନୀୟ ଥିଲେ ଓ ଅନେକ ସମୟରେ ମୁଁ ତାଙ୍କର ସାହାଯ୍ୟ ଲୋଡୁଥିଲି । 'ସମାବେଶ' ପତ୍ରିକାଟି ପାଇଁ ତାଙ୍କର ଖୁବ୍ ଅନୁରାଗ ଥିଲା । ତାଙ୍କର ଆତ୍ମୀୟତା, ବନ୍ଧୁପ୍ରୀତି ଓ ମେଳାପୀ ସ୍ୱଭାବ ତାଙ୍କୁ ସମସ୍ତଙ୍କ ପାଖରେ ପ୍ରିୟ କରିଥିଲା ।

ଜଗଦୀଶବାବୁ ନାହାନ୍ତି କିନ୍ତୁ ତାଙ୍କର ନିଷ୍ଠା, ଅଧ୍ୟବସାୟ ସମ୍ପର୍କରେ ବହୁ ସ୍ମୃତି ଛାଡ଼ି ଯାଇଛନ୍ତି । ଏସବୁ ମୁଦ୍ରଣ ଶିଳ୍ପ ସହ ସଂପୃକ୍ତ ହେବାକୁ ଚାହୁଁଥିବା ନୂଆ ଉଦ୍ୟୋଗୀଙ୍କୁ ପ୍ରେରଣା ଦେବ । ସେ ଏଭଳି ଜଣେ ପ୍ରେସ୍ ମାଲିକ ଥିଲେ ଯିଏ ପ୍ରେସ୍‌ର କମ୍ପୋଜଠୁ ବନ୍ଧେଇ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ଶିଖିଥିଲେ । ନିଜର ବ୍ୟବସାୟ ସହ ଏ ଧରଣର ସଂପୃକ୍ତି ଆଦର୍ଶ ସ୍ଥାନୀୟ ।

ମୁଁ ସ୍ୱର୍ଗତ ଜଗଦୀଶବାବୁଙ୍କ ଅମର ଆତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ଜଣାଉଛି ଓ ତାଙ୍କର ପରିବାରବର୍ଗମାନଙ୍କ ପାଇଁ ମୋର ସହାନୁଭୂତି ପ୍ରକାଶ କରୁଛି ।

ସୌମ୍ୟରଞ୍ଜନ ପଟ୍ଟନାୟକ



# କର୍ମବୀର ଜଗଦୀଶବାବୁ

## ଜାନକୀବଲ୍ଲଭ ପଟନାୟକ

"ସମାବେଶ"ର ପ୍ରତିଷ୍ଠାତା–ସଂପାଦକ ଓ କ୍ୱାଲିଟି ପ୍ରେସ୍‌ର ପ୍ରତିଷ୍ଠାତା ସାହିତ୍ୟସେବୀ ଓ ସମାଜସେବୀ ଶ୍ରୀ ଜଗଦୀଶ ପାଣି ମୋର ଜଣେ ବ୍ୟକ୍ତିଗତ ବନ୍ଧୁ ଥିଲେ । ଗତ ୪୦ ବର୍ଷ ଧରି ମୁଁ ତାଙ୍କୁ ଜାଣିଥିଲି । କଲିକତାରେ ଏକ ଆୟୁର୍ବେଦିକ ଅନୁଷ୍ଠାନର ପ୍ରତିନିଧି ଭାବରେ ସେ କାର୍ଯ୍ୟ କରୁଥିଲେ । ପରେ ଡଃ ହରେକୃଷ୍ଣ ମହତାବଙ୍କ ସହିତ ସଂପୃକ୍ତ ହେଲେ ଓ କଲିକତାରେ ପ୍ରଜାତନ୍ତ୍ରର ପ୍ରତିନିଧିତ୍ୱ କଲେ । ପ୍ରେସ୍, ସାହିତ୍ୟ, ଓ ସମାଜିକତା ପ୍ରତି ତାଙ୍କର ଗଭୀର ଅନୁରାଗ ରହିଥିଲା ଓ ପ୍ରବାସୀ ଓଡ଼ିଆମାନଙ୍କ ମଧ୍ୟରେ ରହି ସେ ବିଭିନ୍ନ ସମାଜସେବା ଓ ଗଠନମୂଳକ କାର୍ଯ୍ୟରେ ନିଜକୁ ନିୟୋଜିତ ରଖୁଥିଲେ । ତାଙ୍କର ପ୍ରଖର ବୁଦ୍ଧି ଓ ମେଳାପି ସ୍ୱଭାବ ଯୋଗୁଁ ସେ ପ୍ରେସ୍ ବ୍ୟବସାୟ କ୍ଷେତ୍ରରେ ବେଶ୍ ସଫଳତା ଲାଭ କରିଥିଲେ ।

ଡଃ ମହତାବଙ୍କର ବିଶ୍ୱାସଭାଜନ ହୋଇ ପ୍ରଜାତନ୍ତ୍ର ପ୍ରଚାର ସମିତି କାର୍ଯ୍ୟରେ ସେ ତାଙ୍କର ବିଶେଷ ସହାୟକ ହୋଇଥିଲେ ଓ ରାଜନୈତିକ କ୍ଷେତ୍ରରେ ମଧ୍ୟ ବେଳେ ବେଳେ ତାଙ୍କର କାର୍ଯ୍ୟ କରୁଥିଲେ । ଗଭୀର ଅଧ୍ୟବସାୟ, କର୍ତ୍ତବ୍ୟନିଷ୍ଠା ବଳରେ ସେ ସାହିତ୍ୟ ଓ ସାମ୍ବାଦିକତାର କ୍ଷେତ୍ରରେ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ । ସମାବେଶ ପତ୍ରିକାର ପ୍ରତିଷ୍ଠା ତାଙ୍କୁ ସାହିତ୍ୟିକମାନଙ୍କ ମହଲରେ ବେଶ୍ ପରିଚିତ କରାଇଥିଲା ଓ ଏହି ପତ୍ରିକା ବହୁ ନୂତନ ଲେଖକ ଲେଖିକାଙ୍କୁ ଉତ୍ସାହିତ କରିଥିଲା । ଏହା ଏକ ମାସିକ ପତ୍ରିକା ନହେଲେ ମଧ୍ୟ ତାଙ୍କ ସଂପାଦନାରେ ନିୟମିତ ଭାବରେ ପ୍ରକାଶ ପାଇ ଆସୁଛି ଓ ଗଳ୍ପ, ପ୍ରବଂଧ, କବିତା, ସମାଲୋଚନା ସାହିତ୍ୟ ଆଦି କ୍ଷେତ୍ରରେ ଓଡ଼ିଆ ସାହିତ୍ୟର ସେବା କରି ଆସୁଛି ।

ଜଗଦୀଶ ବାବୁଙ୍କର ବନ୍ଧୁବତ୍ସଳତା ସର୍ବଜନବିଦିତ । ସେ ଯାହାକୁ ଥରେ ବନ୍ଧୁଭାବରେ ଗ୍ରହଣ କରନ୍ତି ତାଙ୍କୁ ଅତି ଆପଣାର କରି ନିଅନ୍ତି । କଲିକତା, କଟକ ଓ ଭୁବନେଶ୍ୱର ସେ ଯେଉଁଠାରେ ରହିଛନ୍ତି ସେଠାରେ ସେ ତାଙ୍କର ଅଗଣିତ ବନ୍ଧୁ, ଶୁଭେଚ୍ଛୁ ସୃଷ୍ଟି କରି ଯାଇଛନ୍ତି । ତାଙ୍କର ବିୟୋଗରେ ମୁଁ ବ୍ୟକ୍ତିଗତ ଭାବରେ ଜଣେ ବିଶିଷ୍ଟ ବନ୍ଧୁଙ୍କୁ ହରାଇଲି । ସମାବେଶ ସାହିତ୍ୟ ପତ୍ରିକାଟି ତାଙ୍କ ପରେ ବନ୍ଦ ନହେଉ । କ୍ୱାଲିଟି ପ୍ରେସ୍‌ଟି ଭଲଭାବରେ ଚାଲୁ । ଏହି ପତ୍ରିକା ଓ ପ୍ରେସ୍‌ର ସୁପରିଚାଳନା ତାଙ୍କ ପ୍ରତି ଯଥେଷ୍ଟ ଶ୍ରଦ୍ଧାଞ୍ଜଳି ହେବ ।

••••

# ତମ ପାଦଚିହ୍ନ ଲିଭିବାର ନୁହେଁ

**ପ୍ରସନ୍ନ ପାଟଶାଣୀ**

ତମେ ଗ୍ଭଲିଯିବ ବୋଲି  ଜାଣିଥିଲେ
ମୁଁ ତୁମକୁ ସେଦିନ ଛାଡ଼ି ନଥାଂନ୍ତି ।
ତମେ ଗ୍ଭଲି ଗ୍ଭଲି ଗଲ କୁଆଡ଼େ
ଆଉ ଫେରିଲ ନାହିଁ ।

ଅଗଣିତ ମଣିଷର ସମାବେଶ ଭିତରେ
ତମ ପାଦଚିହ୍ନ ଲିଭିବାର ନୁହେଁ ।
ତୁମେ ଏବେ ଯେଉଁଠି ଥାଅନା କାହିଁକି
ସେଠିକି ସମସ୍ତେ ଦିନେ ନା ଦିନେ ଯିବେ,
କିଂତୁ ଏ ଅବେଳରେ ଏକୁଟିଆ
ତୁମକୁ ଯିବାକୁ ଭଲ ଲାଗିଲା ?

ମହାଶୂନ୍ୟତାର ପାଠାଗାରରେ
ସମାବେଶର ମଲାଟ ପରି
ରାତି ମୋତେ ଦିଶୁଚି

ତାରାଗୁଡ଼ିକ ସବୁ ଡି.ଟି.ପି. ଅକ୍ଷର
ମେଘର କାଳିରେ ଛପା ହେଉଥିବ
ପ୍ରତିଦିନ ପ୍ରକୃତି,
ଆଉ ଜଣା ପଡୁନଥିବ ଦିନ ତ ରାତି ।

ମୋର ଇଚ୍ଛା ହୁଏ
ତମ ପାଖରେ ବସି ସାଥୀରେ
କବିତା ପଢ଼ନ୍ତି ।
ପୁଣି ତୁମକୁ ସାଙ୍ଗରେ ଧରି
ଫେରି ଆସନ୍ତି ଏଇ ପୃଥିବୀକୁ ।



# ଏକ ବିରଳ ବ୍ୟକ୍ତିତ୍ୱ

## ଚିନ୍ତାମଣି ବେହେରା

ଓଡ଼ିଶାର ସାରସ୍ୱତ କ୍ଷେତ୍ରରେ ଜଗଦୀଶ ପାଣି ହେଉଛନ୍ତି ଏକ ବିରଳ ବ୍ୟକ୍ତିତ୍ୱ। ସାହିତ୍ୟର ଇତିହାସରେ ଏପରି କେତେକ ବ୍ୟକ୍ତିଙ୍କର ଆବିର୍ଭାବ ଘଟିଥାଏ ଯେଉଁମାନେ ନିଜେ ହୁଏତ ଉଚ୍ଚକୋଟୀର ସ୍ରଷ୍ଟା ବା ସାରସ୍ୱତ ପ୍ରତିଭାର ଅଧିକାରୀ ନୁହନ୍ତି, କିନ୍ତୁ ସେମାନଙ୍କ ସଂକଳ୍ପ ଓ ସାଧନା ଯୋଗୁଁ ସାହିତ୍ୟ ଓ ସଂସ୍କୃତିର ବିକାଶ ଓ ସମୃଦ୍ଧି ସମ୍ଭବପର ହୋଇଥାଏ। ଜଗଦୀଶବାବୁ ନିଜେ ହୁଏ ତ ସେପରି ଜଣେ ସ୍ରଷ୍ଟା ଓ ଉଚ୍ଚମାନର ଲେଖକ ନଥିଲେ, କିଂତୁ ତାଙ୍କର ପ୍ରୟାସ ଓ ପ୍ରଯତ୍ନ ଫଳରେ 'ସମାବେଶ' ପତ୍ରିକା ଜନ୍ମଲାଭ କରି ତାଙ୍କରି ନେତୃତ୍ୱ ଓ ସଂପାଦନାରେ ଦୀର୍ଘକାଳ ଧରି ଓଡ଼ିଆ ସାହିତ୍ୟର ଯେଉଁ ସେବା ଏ ଯାବତ୍ କରି ଆସିଛି, ତାହା ବାସ୍ତବିକ ତାଙ୍କ ଏକକ ଓ ଅନନ୍ୟ ବ୍ୟକ୍ତିତ୍ୱର ପରିଚାୟକ। ଜୀବନରେ ବହୁ ଝଡ଼ଝଂଜା ଓ ଘାତ ପ୍ରତିଘାତ ଭିତରେ ସେ ଗତି କରିଛନ୍ତି ସତ, କିଂତୁ ନିଜର ଦୃଢ଼ ଓ ଅନମନୀୟ ବ୍ୟକ୍ତିତ୍ୱ ବଳରେ ' ସମାବେଶ' କୁ ସର୍ବଦା ସଂଜୀବନୀ ମନ୍ତ୍ରରେ ପ୍ରାଣୋଚ୍ଛଳ କରିବା ସଂଗେ ସଂଗେ ତାହାକୁ ଏକ ଉତ୍କୃଷ୍ଟ ମାନର ସାହିତ୍ୟ ପତ୍ରିକାରେ ସେ ଯେପରି ପରିଣତ କରିପାରିଥିଲେ, ତା'ର ପଟାନ୍ତର ସମକାଳୀନ ଭାରତୀୟ ସାହିତ୍ୟରେ ଦୁର୍ଲଭ। 'ସମାବେଶ' ଥିଲା ଯଥାର୍ଥରେ ତାଙ୍କର ମାନସପୁତ୍ର। ତା'ର ପ୍ରକାଶନ, ପ୍ରତିଷ୍ଠା ଓ ଉତ୍କର୍ଷସାଧନ ପାଇଁ ଆଜୀବନ ସେ ସଂଗ୍ରାମ କରି ଆସିଛନ୍ତି। ସେ ହେଉଛନ୍ତି ଓଡ଼ିଶାର ଏକମାତ୍ର ସଂପାଦକ ଯାହାଙ୍କ ସହିତ ଓଡ଼ିଶାର ଅଗଣିତ ସ୍ରଷ୍ଟା ଓ ଶିଳ୍ପୀଙ୍କର ଥିଲା ନିବିଡ଼ ଓ ଅନ୍ତରଙ୍ଗ ଯୋଗାଯୋଗ। ସ୍ରଷ୍ଟାମାନଙ୍କ ସହିତ ଆନ୍ତରିକ ସାଖ୍ୟ ଓ ଆତ୍ମୀୟ ସଂପର୍କ ସ୍ଥାପନରେ ସେ ଥିଲେ ବିଶ୍ୱାସୀ। ପ୍ରାତ୍ୟହିକ ଜୀବନର ସାଧାରଣ ମନୁଷ୍ୟଟି ଭିତରେ ଆତ୍ମଗୋପନ କରି ରହିଥିଲା ଏକ ଅସାଧାରଣ ଦରଦୀ, ମରମୀ ଓ ଶିଳ୍ପରସିକ ପୁରୁଷ। ନିଜେ ସୃଜନପ୍ରତିଭାର ଅଧିକାରୀ ସେ ନଥିଲେ ସତ, କିଂତୁ ସୃଷ୍ଟିର ଗୁଣାଗୁଣ ନିର୍ଣ୍ଣୟ କରିବାରେ ସେ ଥିଲେ ଜଣେ ଯୋଗ୍ୟ ଜହୁରୀ। ଯେଉଁମାନେ ତାଙ୍କ ସଂସ୍ପର୍ଶରେ ଆସିଛନ୍ତି, ତାଙ୍କ ଉନ୍ନତ ଶିଳ୍ପବୋଧ ଓ ଶିଳ୍ପରୁଚି ସଂପର୍କରେ ସେମାନେ ନିଶ୍ଚୟ ଅବହିତ ହୋଇଥିବେ।

କେବଳ ଜଣେ ସଂପାଦକ ବା ସାମ୍ବାଦିକ ଭାବରେ ନୁହେଁ, ଜଣେ ମଣିଷ ଭାବରେ ଯେଉଁ ସକଳ ସୁଗୁଣର ସେ ଅଧିକାରୀ ଥିଲେ, ତାହା ଏ ଯୁଗରେ ବିରଳ କହିଲେ ଅତ୍ୟୁକ୍ତି ହେବନାହିଁ। ତାଙ୍କର ସ୍ନେହାର୍ଦ୍ର ଚିତ୍ତବୃତ୍ତି, ବନ୍ଧୁବତ୍ସଳତା, ଆତିଥେୟତା ଓ ଆତ୍ମୀୟତାର ପରିଚୟ ଯିଏ ଥରେ ଲାଭ କରିଛି, ସେ ତାହା ଜୀବନରେ କେବେ ବିସ୍ମୃତ ହୋଇଯିବା ସମ୍ଭବ ନୁହେଁ। ଅସହାୟ ଓ ବିପନ୍ନ ବ୍ୟକ୍ତି ପ୍ରତି ତାଙ୍କର ସାହାଯ୍ୟ ଓ ସଂପ୍ରୀତିର ହସ୍ତ ସର୍ବଦା ଥିଲା ସଂପ୍ରସାରିତ। ଯିଏ ଯେତେବେଳେ କୌଣସି ଦୁଃଖ ବା ବିପଦରେ ପଡ଼ି ପ୍ରତିକାର ଆଶାରେ ତାଙ୍କର ସାହାଯ୍ୟ ପାଇଁ ଦ୍ୱାରସ୍ଥ ହେଉଥିଲା, ସେ କେବେ ନିରାଶ ହୋଇ ତାଙ୍କଠୁଁ ଫେରୁନଥିଲା। କିଛି ନା କିଛି ପ୍ରତିକାରର ଉପାୟ ସେ ବତାଇଥିଲେ ଏବଂ ତାଙ୍କ ସହିତ ଆଳାପ-ଆଲୋଚନା ଦ୍ୱାରା ଦୁଃଖର ଅର୍ଦ୍ଧାଂଶ ଯେପରି ପ୍ରଥମେ ଲାଘବ ହୋଇଯାଉଥିଲା। ସେ ନିଜେ ରାଜନୀତିକ ନଥିଲେ କିନ୍ତୁ ରାଜନୀତି ଚର୍ଚ୍ଚାରେ ସେ ନିଜର ପ୍ରଖର ବୁଦ୍ଧିମତା ଓ ପ୍ରବୀଣତାର ପରିଚୟ ଦେଉଥିଲେ। କହିବାକୁ ଗଲେ ଓଡ଼ିଶାର ବିଭିନ୍ନ ରାଜନୀତିକ ଦଳ ଓ ସେଗୁଡ଼ିକର ନେତୃସ୍ଥାନୀୟ ତୁଙ୍ଗ ବ୍ୟକ୍ତିମାନଙ୍କ ସହିତ ତାଙ୍କର ସଖ୍ୟ ଓ ସଦ୍‌ଭାବ ଥିଲା ଅନାବିଳ ଓ ଅନ୍ତରଙ୍ଗ। ପରସ୍ପର ବିରୋଧୀ ବିଭିନ୍ନ ମତବାଦର ବ୍ୟକ୍ତି ତାଙ୍କୁ ଯେ କେବଳ ବଂଧୁ ଭାବରେ ଗ୍ରହଣ କରୁଥିଲେ ତା' ନୁହେଁ, ତାଙ୍କଠି ସେମାନେ ଅଖଣ୍ଡ ବିଶ୍ୱାସ ମଧ୍ୟ ସ୍ଥାପନ କରୁଥିଲେ। ନିଜର ବର୍ଣ୍ଣାଢ଼୍ୟ ବ୍ୟକ୍ତିତ୍ୱ ଦ୍ୱାରା ଏହା କେବଳ ସମ୍ଭବ ହୋଇପାରୁଥିଲା। ଅତି ସାଧାରଣ ପରିବାର ଓ ପରିବେଶରୁ ଆସି ନାନା ଉତ୍‌ଥାନ-ପତନ ମଧ୍ୟରେ ଜୀବନ ସହିତ ସଂଗ୍ରାମ କରି ସେ ନିଜକୁ ଯେପରି ପ୍ରତିଷ୍ଠିତ କରି ଯାଇଛନ୍ତି, ସମସ୍ତଙ୍କ ହୃଦୟରେ ଯେପରି ଶ୍ରଦ୍ଧା ଓ ସମ୍ମାନର ଆସନ ଲାଭ କରିଛନ୍ତି, ତାହା ଭାବିଲେ ପ୍ରକୃତରେ ବିସ୍ମିତ ହେବାକୁ ପଡ଼ିଥାଏ। ତାଙ୍କ ବ୍ୟକ୍ତିତ୍ୱରେ ଥିଲା ଏକ ପ୍ରବଳ ଆକର୍ଷଣୀ ଶକ୍ତି ଯାହାର ଚୁମ୍ବକୀୟ ସ୍ପର୍ଶରେ ଗୋଟିଏ ମୁହୂର୍ତ୍ତରେ ତାର ହୋଇ ଉଠୁଥିଲା ଏକାନ୍ତ ଆପଣାର – ସତେ ଯେପରି ନିଜ ପରିବାରର ଜଣେ ଆତ୍ମୀୟ।

ଏଇ ମୋହିନୀ ବ୍ୟକ୍ତିତ୍ୱଧାରୀ ଉଜ୍ଜ୍ୱଳ ପୁରୁଷଟି ସହିତ ମୋର ବନ୍ଧୁତ୍ୱ ଦୀର୍ଘ ତ୍ରିଶ ବର୍ଷର ଏବଂ ଆମ ସହଯାତ୍ରାର ପଥ କଲିକତାଠୁଁ ଭୁବନେଶ୍ୱର ପର୍ଯ୍ୟନ୍ତ ପ୍ରଲମ୍ବିତ। ଏଇ ଦୀର୍ଘ କାଳ ମଧ୍ୟରେ କେବଳ ସାରସ୍ୱତ ସଂପର୍କ ନୁହେଁ, ଆମର ବ୍ୟକ୍ତି-ସଂପର୍କ ମଧ୍ୟ ଥିଲା ଅତି ନିବିଡ଼ ଓ ଘନିଷ୍ଠ। ଆମ ଉଭୟଙ୍କ ଜୀବନଚର୍ଯ୍ୟା ଓ ଜୀବନଶୈଳୀରେ କେଉଁଠି କିଛି ସାମ୍ୟ ଥିଲା କେଜାଣି, ଆମେ ପରସ୍ପର ମଧ୍ୟରେ ନିଜକୁ ନିମଜ୍ଜିତ କରି ପାଉଥିଲୁ ଅସୀମ ଆନନ୍ଦ ଓ ପରିତୃପ୍ତି। ସେ ଆନନ୍ଦ ଓ ସୁଖସମ୍ଭୋଗରୁ ମୁଁ ଆଜି ବଂଚିତ। ଜଣେ ଅକୃତ୍ରିମ, ଅନ୍ତରଙ୍ଗ ଓ ସଦାଶୁଭେଚ୍ଛୁ ବଂଧୁର ବିୟୋଗ କେଡ଼େ ପୀଡ଼ାପ୍ରଦ ଓ ଆତ୍ମବାହୀ,

ତାହା ମର୍ମେ ମର୍ମେ ମୁଁ ଆଜି ଅନୁଭବ କରୁଛି । ବର୍ତ୍ତମାନ କେବଳ ଏକା ମୋର ନୁହେଁ, ଯେଉଁ ସାହିତ୍ୟିକ ବଂଧୁମାନଙ୍କ ସହିତ ମମତାର ବନ୍ଧନରେ ସେ ଥିଲେ ଆବଦ୍ଧ, ଆମ ସମସ୍ତଙ୍କର ଲକ୍ଷ୍ୟ ଓ କର୍ତ୍ତବ୍ୟ ହେବା ଉଚିତ ତାଙ୍କର ମାନସପୁତ୍ର 'ସମାବେଶ'କୁ ସ୍ଥାୟୀ ଓ ସଂଜୀବିତ କରି ରଖିବା ଏବଂ ମୁଁ ଭାବୁଛି, ଏହାହିଁ ହେବ ତାଙ୍କର ଅମର ଆତ୍ମା ପ୍ରତି ବନ୍ଧୁସମାଜର ଯଥାର୍ଥ ସମାଦର ଓ ସମ୍ମାନ । ଜୀବନର ଦ୍ୟୁତି ମୃତ୍ୟୁର ନିକଷରେ ଉଦ୍‌ଭାସିତ ହୁଏ ବୋଲି କୁହାଯାଏ । ତେଣୁ ଜଗଦୀଶବାବୁ ଆଜି ନାହାନ୍ତି ସତ, କିନ୍ତୁ ତାଙ୍କର ସ୍ୱର୍ଣ୍ଣାଭ ସୁଗୁଣାବଳୀ ଓଡ଼ିଶାର ସାରସ୍ୱତ ଇତିହାସରେ ଚିରକାଳ ଯେ ଲିପିବଦ୍ଧ ଓ ଅବିସ୍ମରଣୀୟ ହୋଇ ରହିବ, ଏଥିରେ କାହାରି ତିଳେ ମାତ୍ର ସନ୍ଦେହ ନାହିଁ । ପ୍ରକୃତରେ ମଣିଷ ପରି ସେ ଥିଲେ ଜଣେ ମଣିଷ ଏବଂ କେବଳ ମଣିଷପଣିଆ ନୁହେଁ, ପୌରୁଷଦୀପ୍ତ ମଣିଷପଣ ତାଙ୍କ ଜୀବନର ଥିଲା ବ୍ରତ ଓ ବୈଶିଷ୍ଟ୍ୟ । ଏଇ ମଣିଷପଣ, ସଂଗ୍ରାମୀ ସଂକଳ୍ପ, ଆତ୍ମୀୟତା ଓ କୁଟୁମ୍ବିତାର ଭାବନା ତାଙ୍କର ବ୍ୟକ୍ତିତ୍ୱ ଆଜି ଆମକୁ ଶିକ୍ଷା ଦେଉ । ତାଙ୍କର ଏକକତା ଓ ଅନନ୍ୟତା ଆମ ଚଲାବାଟର ହେଉ ଅନୁପ୍ରେରଣା ।

••••

*ବାସାଂସି ଜୀର୍ଣ୍ଣାନି ଯଥା ବିହାୟ*
*ନବାନି ଗୃହ୍ଣତି ନରୋଽପରାଣି-*
*ତଥା ଶରୀରାଣି ବିହାୟ ଜୀର୍ଣ୍ଣ-*
*ନ୍ୟନ୍ୟାନି ସଂଯାତି ନବାନି ଦେହୀ ।*

ଜଗଦୀଶ ପାଣିଙ୍କୁ ମୁଁ ପ୍ରଥମେ ଭେଟିବା ଦିନଠାରୁ ଶେଷଦିନଯାଏଁ ତାଙ୍କ ଚେହେରାରେ କି ଆଚରଣରେ କୌଣସି ପରିବର୍ତ୍ତନ ମୋ ଆଖିରେ ପଡ଼ିନାହିଁ, ଚେହେରା ବଦଳିଥିବ ନିଶ୍ଚୟ, କିନ୍ତୁ ଜଗଦୀଶ ପାଣି ଯାହା ତାହା ବଦଳି ନଥିବାରୁ ଓ ସେହି ନ ବଦଳୁଥିବା ସତ୍ତାଟି ସହିତ ଆମେ ପରିଚିତ ହୋଇଥିବାରୁ ଅନ୍ୟ କୌଣସି ପରିବର୍ତ୍ତନ ପ୍ରତି ଧ୍ୟାନ ଦେଇପାରିନାହୁଁ, ବ୍ୟକ୍ତିଗତ ଜୀବନରେ ସେ ବହୁ ବିପର୍ଯ୍ୟୟ ଭୋଗିଛନ୍ତି; କେତେକ ବିପର୍ଯ୍ୟୟ ତାଙ୍କୁ ଖୁବ୍ ବାଧିଛି ବୋଲି ଆମେ ଜାଣୁ, କିନ୍ତୁ ତାଙ୍କର ଅନ୍ୟମାନଙ୍କ ପ୍ରତି ସ୍ନେହ ଓ ସଦିଚ୍ଛା ଉପରେ ନିଜର ବିଷାଦର ତିଳେମାତ୍ର ପ୍ରଭାବ ନଥିଲା । ଯାହାକୁ ସେ ଭଲ ପାଉଥିଲେ ତା ପ୍ରତି ସବୁ କିଛି କରିବାକୁ ପ୍ରସ୍ତୁତ ଥିଲେ, ତା ପାଇଁ ଅନ୍ୟମାନଙ୍କ ଦ୍ୱାରସ୍ଥ ହେବା ଅପମାନଜନକ ମନେକରୁ ନଥିଲେ । କରନ୍ତେ ବା କାହିଁକି ? ଅନ୍ୟଜଣକର ଦୁଃଖ ବୁଝିପାରି ଥିବାର ଆନନ୍ଦ ତୁଳନାରେ ସବୁ ମାନସମ୍ମାନ କେଡ଼େ ତୁଚ୍ଛ !

ମୁଁ କଲେଜରେ ପଢ଼ିବା ବେଳୁଁ ତାଙ୍କୁ ଚିହ୍ନିଛି । ମୋର କେତୋଟି କବିତା ପଢ଼ି ସେ ହିଁ ମତେ ଖୋଜି ବାହାର କଲେ ଓ ସମାବେଶ ପାଇଁ ଲେଖିବାକୁ କହିଲେ । ସେତେବେଳକୁ ମୁଁ ପ୍ରାୟ ତିନିବର୍ଷ ଧରି ଲେଖିଲିଣି, କିନ୍ତୁ ଟିକିଏ ଦୀର୍ଘ କବିତାଟିଏ ଜଣେ ସମ୍ପାଦକ ନାକଚ୍ କରିଦେଲେ । କିଛି ଦ୍ୱିଧାର ସହିତ ମୁଁ ତାଙ୍କୁ ସେ କବିତାଟି ଦେଲି । ପ୍ରଶଂସା କରିବାରେ ତ ତାଙ୍କ ପାଟିରେ ବାଟୁଳି ବାଜେ ନାହିଁ । ସେ କବିତାଟି ନେଲେ ଓ 'ସମାବେଶ'ରେ ଛାପିଲେ । ତା'ପରେ ଯେତେବେଳେ 'ସମାବେଶ' ପାଇଁ ଲେଖା ମାଗିଛନ୍ତି, ମନା କରିବା ବା ଟାଳଟୁଳ କରିବାର ଜୋର୍ ମୋର ଆସିନାହିଁ ମୋ ପରି ଅନେକ ଲେଖକ ତାଙ୍କର ଉତ୍ସାହ ପାଇଛନ୍ତି । ଏପରି ଉତ୍ସାହ ଦେଉଥିବା ଏକମାତ୍ର ସମ୍ପାଦକଟିର ଅକାଳରେ ଦେହାନ୍ତ ହୋଇଗଲା । ଯେଉଁ ସମ୍ପାଦକ ଜଣକୁ ଲେଖା ପଠାଇ ନପାରିଲେ ନିଜ ପ୍ରତି ଧିକ୍କାର ଆସେ ସେ ଆଉ ନାହିଁ ।

ଜଗଦୀଶ ପାଣି ଗଢ଼ିଥିବା ସୁହୃଦ୍‌ପଣର ସଂସାର କ୍ଷିପ୍ରଭାବେ ଦୂରକୁ ଦୂରକୁ ଘୁଞ୍ଚିଗଲା ପରି ଲାଗୁଛି, ତା ଜାଗାରେ ମାଡ଼ିପଡ଼ିଲା ଭଳି ଶୂନ୍ୟତା ଅଧିଷ୍ଠିତ ହୋଇଆସିଲା ପରି ଲାଗୁଛି । ସେ ସଂସାରରେ କିଛିଦିନ ବସବାସ କରିଥିବା ଲୋକଙ୍କୁ ଏ ଶୂନ୍ୟସ୍ଥାନରେ ବଞ୍ଚିରହିବାର ଦହଗଞ୍ଜ ଭୋଗିବାକୁ ହେବ । ସମସ୍ତେ କ'ଣ ଜଗଦୀଶ ପାଣି ହୋଇଛନ୍ତି ଯେ ନିଜକୁ ସବୁ ଦୁଃଖଠାରୁ ବଡ଼ ମନେକରି ଜୀଇଁଯିବେ ଓ ମରିଯିବେ ?

ରମାକାନ୍ତ ରଥ



ଆନନ୍ଦର କଥା ସ୍ୱର୍ଗୀୟ ଜଗଦୀଶ ପାଣିଙ୍କ ଶ୍ରାଦ୍ଧ ଉତ୍ସବ ଉପଲକ୍ଷେ ଗୋଟିଏ ସ୍ମରଣିକା ପ୍ରକାଶ ପାଉଛି । ୧୯୪୫ ମସିହାରୁ ସ୍ୱର୍ଗୀୟ ଜଗଦୀଶବାବୁଙ୍କ ସହିତ ମୋର ସଂପର୍କ, ମୁଁ କଲିକତା ବିଶ୍ୱବିଦ୍ୟାଳୟରେ ଆଇନ୍ ଅଧ୍ୟୟନ କରୁଥିବା ବେଳେ କଲିକତାରେ ଓଡ଼ିଆ ସମାଜକୁ ପୁନର୍ଗଠନ ଓ ସକ୍ରିୟ କରିବାରେ କାର୍ଯ୍ୟ କଲାବେଳେ ସ୍ୱର୍ଗୀୟ ଜଗଦୀଶ ପାଣି, ସ୍ୱର୍ଗୀୟ ହୃଦାନନ୍ଦ ମଲ୍ଲିକ, ଅଭୟ ଚରଣ ନାୟକ, ରାମଚନ୍ଦ୍ର ପଟ୍ଟନାୟକ ଓ ଚିତ୍ତରଞ୍ଜନ ନାୟକ ପ୍ରଭୃତି ମୋର ପ୍ରଧାନ ସହାୟକ ଥିଲେ । ବୃହତ୍ତର କଲିକତାର ବିଭିନ୍ନ ସ୍ଥାନରେ ଓଡ଼ିଆମାନଙ୍କର ସ୍ୱାର୍ଥ ରକ୍ଷା ପାଇଁ କାର୍ଯ୍ୟ କରିବା ଦିଗରେ ଓଡ଼ିଆମାନଙ୍କର କୌଣସି କେନ୍ଦ୍ରୀୟ ଅନୁଷ୍ଠାନ ସେଠାରେ ନଥିଲା । କଲିକତା ଓଡ଼ିଆ ସମାଜକୁ ସକ୍ରିୟ କରି ବିଭିନ୍ନ ସ୍ଥାନରେ ଥିବା ଓଡ଼ିଆ ମାନଙ୍କର ସାଂସ୍କୃତିକ ଅନୁଷ୍ଠାନ ସହିତ ସଂପର୍କ ରଖି ସେମାନଙ୍କୁ ସଜାଗ କରିବା ଦିଗରେ ସ୍ୱର୍ଗୀୟ ହୃଦାନନ୍ଦ ମଲ୍ଲିକଙ୍କ ସହିତ ସ୍ୱର୍ଗୀୟ ଜଗଦୀଶ ପାଣି ତାଙ୍କର ସଂପୂର୍ଣ୍ଣ ସମୟ ଦେଇ କାର୍ଯ୍ୟ କରୁଥିଲେ । ଏଥିପାଇଁ ସ୍ୱର୍ଗୀୟ ଜଗଦୀଶବାବୁ ବିଶେଷ ଭାବରେ ଖ୍ୟାତି ଅର୍ଜନ କରିଥିଲେ । କଲିକତା ଓଡ଼ିଆ ସମାଜର ନାମ ପରିବର୍ତ୍ତନ କରାଯାଇ 'ବୃହତ୍ତର କଲିକତା ଓଡ଼ିଆ ସମାଜ' ରଖା ଯାଇଥିଲା ।

୧୯୪୬ ମସିହାରେ କଲିକତାରେ ଯେଉଁ ଭୟାବହ ସାଂପ୍ରଦାୟିକ ଦଙ୍ଗା ଘଟିଥିଲା ସେଥିରେ ବହୁ ଓଡ଼ିଶା ବାସୀଙ୍କ ଧନଜୀବନ ନଷ୍ଟ ହୋଇଥିଲା । ଦଙ୍ଗାବିପନ୍ନ ଓଡ଼ିଆମାନଙ୍କୁ ଥଇଥାନ ଓ କ୍ଷତିପୂରଣ ପ୍ରଭୃତି ପାଇବା ଦିଗରେ ସାହାଯ୍ୟ କରିବା ପାଇଁ ସ୍ୱର୍ଗୀୟ ବିଶ୍ୱନାଥ ଦାସଙ୍କର ଅଧ୍ୟକ୍ଷତାରେ ଗୋଟିଏ କମିଟି ଗଠନ କରାଯାଇଥିଲା । ସ୍ୱର୍ଗତ ପାଣି ଏଥିରେ ଜଣେ ସକ୍ରିୟ ସଭ୍ୟ ଥିଲେ । ବିପନ୍ନ ଓଡ଼ିଆମାନଙ୍କ ସାହାଯ୍ୟ କାର୍ଯ୍ୟରେ ଜଗଦୀଶବାବୁ ମୋ ସହିତ ପୂରା ସମୟ ଦେଇ ଲାଗିଥିଲେ । ସେଥିପାଇଁ ସେ ଓଡ଼ିଆମାନଙ୍କ ଭିତରେ ସୁନାମ ଅର୍ଜନ କରିପାରିଥିଲେ ।

ସ୍ୱର୍ଗୀୟ ଡକ୍ଟର ହରେକୃଷ୍ଣ ମହତାବଙ୍କର ପ୍ରଜାତନ୍ତ୍ର ପ୍ରତିଷ୍ଠାନ ସହିତ ତାଙ୍କର ଘନିଷ୍ଠ ସଂପର୍କ ଥିଲା । ସେଥିରେ ତାଙ୍କର ଯାହା ଅନୁଭୂତି ହୋଇଥିଲା ସେଇ ଅନୁଭୂତିକୁ ନେଇ ସେ ଭୁବନେଶ୍ୱରରେ ପ୍ରଖ୍ୟାତ କ୍ୱାଲିଟି ପ୍ରେସ୍ ପ୍ରତିଷ୍ଠା କରିପାରିଥିଲେ । ତାଙ୍କ ସଂପାଦିତ 'ସମାବେଶ' ଓଡ଼ିଶାର ଗୋଟିଏ ଅଗ୍ରଣୀ ପତ୍ରିକା । ସେ ଜଣେ ମେଳାପୀ ଲୋକ ଥିଲେ ଓ ସେଥିପାଇଁ ବହୁ ଲୋକଙ୍କ ଦ୍ୱାରା ସେ ଆବୃତ ହୋଇ ପାରୁଥିଲେ ।

ସମାଜ ସେବାରେ ତାଙ୍କର ବିଶେଷ ଆଗ୍ରହ ଥିଲା ଏବଂ ଏ ଦିଗରେ ବହୁ ସାମାଜିକ ଓ ସାଂସ୍କୃତିକ ଅନୁଷ୍ଠାନ ସହିତ ସେ ସଂପର୍କ ରଖିପାରିଥିଲେ । ସେ ମୋର ଜଣେ ଅନ୍ତରଙ୍ଗ ବନ୍ଧୁ ଥିଲେ । ମାସକଡଳେ ମୁଁ ତାଙ୍କ ଘରକୁ ଯାଇ କେତେକ ବିଷୟ ଆଲୋଚନା କରିବାର ସୁଯୋଗ ନେଇଥିଲି । ହଠାତ୍ ତାଙ୍କର ମୃତ୍ୟୁ ଖବର ପାଇ ମୁଁ ମର୍ମାହତ ହୋଇଥିଲି । ତାଙ୍କର ବିୟୋଗ ଓଡ଼ିଶାର ସାଂସ୍କୃତିକ କ୍ଷେତ୍ରରେ ଗୋଟିଏ ଅପୂରଣୀୟ କ୍ଷତି ଘଟାଇଛି ।

ନୀଳମଣି ରାଉତରାୟ



# ଏକ ଓ ଅଭିନ୍ନ

## ଶାନ୍ତନୁ କୁମାର ଆଚାର୍ଯ୍ୟ

ଜଗଦୀଶ ପାଣିଙ୍କ ସହିତ ମୋର ପରିଚୟ 'ସମାବେଶ' ଯୋଗୁ । 'ସମାବେଶ' ସହିତ ମୋର ସଂପର୍କ ଜଗଦୀଶବାବୁଙ୍କ ଯୋଗୁ । ଏ ଦୁଇଟି ନାମ ୧୯୫୯/୬୦ ସୁଦ୍ଧା ମୋର ଅଜଣାରେ କେଉଁଠି ସମୃଦ୍ଧ ହେଉଥିଲେ କେଜାଣି । ଦିନେ, ପ୍ରଜାତନ୍ତ୍ର ପରିସର ଭିତରେ, ମୋର ଗୋଟିଏ କ୍ଷୁଦ୍ରଗଳ୍ପ 'ସେ ଦୁହେଁ ଏକ ଓ ଅଭିନ୍ନ' କାହିଁକି ଲମ୍ବା ସମୟ ଧରି ଝଙ୍କାରରେ ଅପ୍ରକାଶିତ ରହିଛି ବୋଲି ଅନୁସନ୍ଧାନ କରୁ କରୁ ଶୁଣିବାକୁ ମିଳିଲା– ଗପଟାକୁ ଜଗଦୀଶବାବୁ ନେଇଯାଇଛନ୍ତି ତାଙ୍କ ସମାବେଶ ପାଇଁ । ଆଶ୍ଚର୍ଯ୍ୟ ହେଲି । ମୁଁ ତ ଏ ଗପଟାକୁ ଦେଇ ଯାଇଥିଲି 'ଝଙ୍କାର' ପାଇଁ ; କିନ୍ତୁ ମୋ ଅଜାଣତରେ ଏ ଗପକୁ ଅନ୍ୟ କିଏ କିପରି ନେଇଗଲେ ? କିଏ ସେ ବାବୁ, ଜଗଦୀଶବାବୁ ? କୋଉଠୁ ବାହାରେ ସମାବେଶ ? ଏଇଭଳି ଅନେକ ପ୍ରଶ୍ନର ଉତ୍ତରରେ ଶୁଣିବାକୁ ମିଳିଲା– ମଝିରେ ମଝିରେ ସେ କଲିକତାରୁ ଆସନ୍ତି ଓ ତାଙ୍କ ପତ୍ରିକା ପାଇଁ ଏଠାରୁ ସଂଗ୍ରହ କରି ନିଅନ୍ତି ଲେଖା । ସେଇ ହେଲା ଜଗଦୀଶବାବୁଙ୍କ ସଂପର୍କରେ ମୋର ପ୍ରଥମ ଖବର – ଏପରି ଜଣେ କିଏ ଅଛନ୍ତି କୋଉଠି ଯେ ଡ଼ଃ ମହତାବଙ୍କ ପସରାରେ ମଧ୍ୟ ହାତ ପୂରେଇ ଲେଖା ନେଇଯାଇ ପାରନ୍ତି ତାଙ୍କ ପତ୍ରିକା ପାଇଁ । ଜଗଦୀଶବାବୁଙ୍କ ରାଜନୈତିକ ପ୍ରଭାବ ବିଷୟରେ ମୋର ପ୍ରଥମ ଅବଗତି ସେଇଠୁ । ପରେ, ତାଙ୍କର ବ୍ୟକ୍ତିଗତ ପରିଚୟ ଓ ଓଡ଼ିଆ ଭାଷା ସାହିତ୍ୟ ପ୍ରତି ତାଙ୍କର ଏକ ଛୁଆ ରଙ୍କୁଣୀ ମା'ର ସକରୁଣ ମନୋଭାବର ପରିଚୟ ମତେ ଚିରକାଳ ପାଇଁ ତାଙ୍କ ସହିତ ଆବେଗାତ୍ମକ ସ୍ନେହ ରଜ୍ଜୁରେ ଆବଦ୍ଧ କରିଦେଇଥିଲା । ଏହାପରେ 'ସମାବେଶ'ଙ୍କେ କୋର ଲେଖା ପାଇଁ 'ଝଙ୍କାର'ର ମାଧ୍ୟମ ଆଉ ଲୋଡ଼ା ହେଇନାହିଁ । ମୁଁ ନିଜେ ନିଜେ ମୋ ଆଡୁ ଲେଖା ପଠାଇ ଆସିଥିଲି ଆଜି ପର୍ଯ୍ୟନ୍ତ । ଆଜି ପରିସ୍ଥିତି ଏକ ଭିନ୍ନ ରୂପ ହେଲା– ସେ ଦୁହେଁ ଭିନ୍ନ ହେଇଗଲେ । 'ସମାବେଶ' ଅଛି । ଜଗଦୀଶ ସମାବେଶକୁ ଛାଡ଼ି ଗ୍ଲିଗଲେ ।

ଜଗଦୀଶଙ୍କ ସହିତ ଘନିଷ୍ଠତା ପ୍ରକୃତରେ ଆହୁରି ନିବିଡ଼ ହେଲା– ୧୯୬୭ରେ । ନିବିଡ଼ତାର ପୃଷ୍ଠଭୂମି ସେଇ ପ୍ରଜାତନ୍ତ୍ର ପରିସର ଆଉ ସେଇ ଡ଼ଃ ମହତାବ । ସେ ବର୍ଷ ଜନକଂଗ୍ରେସ ଓ ସ୍ୱତନ୍ତ୍ର ପାର୍ଟିର ମିଳିତ ସରକାର ଓଡ଼ିଶାରେ ପ୍ରତିଷ୍ଠିତ ହେଲା । ଏଥିରେ ଡ଼ଃ ମହତାବଙ୍କର ଭୂମିକା ଥିଲା ନେପୋଲିୟନଙ୍କର 'ଏଲବା'ରୁ ପ୍ରତ୍ୟାବର୍ତ୍ତନ ପରି ଏକ ମହତ୍ତ୍ୱପୂର୍ଣ୍ଣ ଐତିହାସିକ ଆବଶ୍ୟକତା । ତା ପୂର୍ବରୁ, ଓଡ଼ିଶାରେ ଯେଉଁସବୁ ରାଜନୈତିକ

ଅପସଂସ୍କୃତି ଚରମ ପର୍ଯ୍ୟାୟକୁ ଗତିକରି, ଶେଷରେ ଦୀର୍ଘ କାଳୀନ ଛାତ୍ର ଆନ୍ଦୋଳନରେ ପରିଣତ ହୋଇ, ଗଣତନ୍ତ୍ରର ପବିତ୍ରତାକୁ ମଧ ବିଧାନ ସଭାଗୃହ ମଧ୍ୟରେ କଡ଼ାକର କରି ଛାଡ଼ିଥିଲା, ସେସବୁ ଦୁର୍ଦ୍ଦିନ କଟି ଗଲା ଭଳି ଏକ ପ୍ରତ୍ୟୟ ସୃଷ୍ଟିକରି ଆସିଥିଲା ସେଇ ନୂଆ ଅଧ୍ୟାୟ – ଓଡ଼ିଶାର ରାଜନୈତିକ ସଂସ୍କୃତିର ଅଭ୍ୟୁତ୍ଥାନ ଲକ୍ଷ୍ୟରେ ଓଡ଼ିଆ ଭାଷା ସାହିତ୍ୟ ପ୍ରତି ପୁନର୍ବାର ଆସ୍ଥା ସ୍ଥାପନ ଓ ଓଡ଼ିଆ ସଂସ୍କୃତିର ପୁନର୍ଜାଗରଣ ଉଦ୍ଦେଶ୍ୟରେ। ସେଇ ଲକ୍ଷ୍ୟରେ ଡ଼ଃ ମହତାବ 'ଝଂକାର' ଓ 'ପ୍ରଜାତନ୍ତ୍ର'ର ଆଭିମୁଖ୍ୟରେ ଆଣିଥିଲେ ସମୟୋଚିତ ପରିବର୍ତ୍ତନ। 'ଝଂକାର'ର ସଂପାଦନା ଓ ପରିଚାଳନା ସହିତ 'ପ୍ରଜାତନ୍ତ୍ର'ର ପରିଚାଳନାରେ ସେ ସଂପୃକ୍ତ କରିଥିଲେ କେତେକ ନୂଆ ଲୋକଙ୍କୁ। ଜଗଦୀଶ୍ ପାଣି 'ପ୍ରଜାତନ୍ତ୍ର'ର ପରିଚାଳନା ସହ ପ୍ରତ୍ୟକ୍ଷଭାବେ ସଂପୃକ୍ତ ହେଲା ବେଳକୁ, ଡ଼ଃ ମହତାବ 'ଝଂକାର'ର ସଂପାଦନାରେ ଦାୟିତ୍ୱ ଦେଇଥିଲେ ମହାପାତ୍ର ନୀଳମଣି ସାହୁଙ୍କୁ। ତା' ଛଡ଼ା 'ଝଂକାର'ର ଉପଦେଷ୍ଟା ସମିତିରେ କିଛି 'ନୂଆରକ୍ତ'ର ପ୍ରବେଶ ଘଟିଥିଲା ସେବର୍ଷ। ସେଇ 'ନୂଆରକ୍ତ'ର ତାଲିକାରେ ଥିଲା ମୋ ନାଁ। ଏହାପରେ ପ୍ରଜାତନ୍ତ୍ର ପରିସର ଭିତରେ ଜଗଦୀଶ ପାଣି ଓ ଆମଭଳି କେତେକ ତତ୍କାଳୀନ ଯୁବଲେଖକଙ୍କ ସଂପର୍କ ଆହୁରି ଘନିଷ୍ଠ ହୋଇଉଠିବା ଥିଲା ସ୍ୱାଭାବିକ। ଡ଼ଃ ମହତାବଙ୍କ ଦୃଷ୍ଟି ସମ୍ମୁଖରେ ପ୍ରଜାତନ୍ତ୍ର ଓ ଝଂକାରର ସମୃଦ୍ଧି ପାଇଁ ସେତେବେଳେ ଯେଉଁସବୁ ଯୋଜନା କାର୍ଯ୍ୟକାରୀ କରାଯାଉଥିଲା ସେଥିରେ ଜଗଦୀଶଙ୍କ ଭାଗଥିଲା ଅଧିକ ଆଭ୍ୟନ୍ତରୀଣ; କିନ୍ତୁ ସାଂସ୍କୃତିକ ଅଭ୍ୟୁତ୍‌ଥାନ ଲାଗି ଆମମାନଙ୍କର ବାହ୍ୟ ଉପଦେଶକୁ ଡ଼ଃ ମହତାବ କାର୍ଯ୍ୟକାରୀ କରିବାରେ ଅବହେଳା ନକରିବା କାରଣରୁ ଆମେମାନେ ଅଧିକ ଉତ୍ସାହରେ ଭାଷା ସାହିତ୍ୟର ସ୍ୱାଭିମାନ ସଂରକ୍ଷଣ ପାଇଁ ଲାଗିପଡ଼ିଥିଲୁ। 'ଝଂକାର'ର ପ୍ରସାର ଓ ଲୋକପ୍ରିୟତା ଏହି ସମୟରେ ଏକ ବିଶେଷ କୋଟୀକୁ ସ୍ପର୍ଶ କରିଥିବା ବିଷୟ ତତ୍କାଳୀନ ଯୁବଲେଖକର ସ୍ମୃତିରେ ଅଦ୍ୟାବଧି ଉତ୍କୀର୍ଣ୍ଣ।

ସେ ଯାହା ହେଉନା କାହିଁକି, ଜଗଦୀଶ ପାଣିଙ୍କ ନିଜ 'ସମାବେଶ' ପତ୍ରିକା ଏହି ଚାରି ପାଞ୍ଚବର୍ଷର ରାଜନୈତିକ ଗହ ଗହ ଭିତରେ ନିସ୍ତେଜ ହୋଇଯିବା ପରିବର୍ତ୍ତେ ଆହୁରି ଉଚ୍ଚାଙ୍ଗ ସ୍ୱର ସଙ୍ଗୀତର ଲହର ବିସ୍ତାର କରି ନିଜର ବୈଶିଷ୍ଟ୍ୟ ଜହିର କରି ରଖି–ପାରିଥିଲା। ୧୯୭୨ ପରେ, ଜନକଂଗ୍ରେସ ଓ ସ୍ୱତନ୍ତ୍ର ଦଳର ମିଳିତ ସରକାର ଇତିହାସ ପୃଷ୍ଠାରେ ବିଲୀନ ହୋଇଯିବା ପରେ, ଡ଼ଃ ମହତାବଙ୍କ ରାଜନୈତିକ ଆଭିମୁଖ୍ୟରେ ପରିବର୍ତ୍ତନ ଦେଖାଦେଲା। ଜଗଦୀଶ ପାଣି ପ୍ରଜାତନ୍ତ୍ର ଛାଡ଼ି ନିଜ ପ୍ରେସ୍ କ୍ୱାଲିଟି ପ୍ରେସ୍–ପ୍ରତିଷ୍ଠାକଲେ ଓ ଭୁବନେଶ୍ୱରର ଏହି କ୍ୱାଲିଟି ପ୍ରେସ୍ ରାଜଧାନୀର ଏକ ମହାନ ସାରସ୍ୱତ ମିଳନ ପୀଠରେ ପରିଣତ ହେଲା। ଏଣିକି ପ୍ରତି ସଂଧ୍ୟାରେ କ୍ୱାଲିଟି ପ୍ରେସ୍‌ର ପରିସର ହେଲା – ଚିନ୍ତା ଓ ଚେତନାର ଆରାଧନା ପୀଠ। ଆଜିର ଓଡ଼ିଶାର ପ୍ରାୟ ସମସ୍ତ ସ୍ୱନାମଧନ୍ୟ କବି, ସାହିତ୍ୟିକ, ଚିନ୍ତାନାୟକଗଣ ଏହି ପୀଠରେ ଏକତ୍ରିତ ହୋଇ ଓଡ଼ିଆ

ଭାଷା ସାହିତ୍ୟ ସଂସ୍କୃତିର ସମୃଦ୍ଧି ପାଇଁ ଯେଉଁ ସମୟୋଚିତ ପ୍ରାର୍ଥନା ଓଡ଼ିଶାର ଇଷ୍ଟଦେବ ଶ୍ରୀଜଗନ୍ନାଥ ଓ ଇଷ୍ଟଦେବୀ ଶାରଳାଙ୍କ ପୟରରେ ଏହି ପୀଠରେ ଜ୍ଞାପନ କରିଥିଲେ ଓ କରୁଛନ୍ତି ତାହାର ସୁଫଳ ଓଡ଼ିଶାକୁ ହିଁ ମିଳିଛି । ତିନୋଟି ଜ୍ଞାନପୀଠ ଓ ଗୋଟିଏ ସରସ୍ୱତୀ ସମ୍ମାନ ଯୋଗୁ ଆଜି ଯଦି ଓଡ଼ିଶା ସର୍ବଭାରତୀୟ କ୍ଷେତ୍ରରେ ଗର୍ବିତ ତେବେ ତାହାର ପ୍ରାପ୍ତି ସ୍ୱୀକାର ସହିତ ଓଡ଼ିଶାବାସୀ ଦୁଇଟି ସାରସ୍ୱତ ପୀଠ ପ୍ରତି କୃତଜ୍ଞତା ଜ୍ଞାପନ କରିବାକୁ କୁଣ୍ଠିତ ହେବେ ନାହିଁ । ସେଥିମଧ୍ୟରୁ ପ୍ରଥମଟି ନିଶ୍ଚିତ ଭାବେ ଡଃ ମହତାବଙ୍କ ପ୍ରଜାତନ୍ତ୍ର–ଝଂକାର । ଅନ୍ୟଟି ଜଗଦୀଶ ପାଣିଙ୍କ କ୍ୱାଲିଟି ପ୍ରେସ୍ – ସମାବେଶ ।

କ୍ୱାଲିଟି ପ୍ରେସ୍ ଓ ସମାବେଶ ସହ ଓଡ଼ିଶାର ସବୁ ବୟଃକ୍ରମର, ସବୁ ସ୍ତରର କବି ଲେଖକ ସମାଲୋଚକ ଓ ପାଠକ ପାଠିକାଙ୍କର ସଂପର୍କ ଏକ ପାରିବାରିକ ସଂପର୍କର ରୂପ ନେଇ ଆବିର୍ଭୂତ ହୋଇଛି । ଏହାର ଚରମ ମାଧୁର୍ଯ୍ୟବନ୍ତ ଦିନ ଗୁଡ଼ିକ ଏପାକେ ମନକୁ ଆଚ୍ଛନ୍ନ କରିରଖିଛି । ସେ ଦିନ ଗୁଡ଼ିକର ଆଜି ଆମ ଗହଣରେ ନଥିବା ଡଃ ଗୋପୀନାଥ ମହାନ୍ତି, ସୁରେନ୍ଦ୍ର ମହାନ୍ତି, ଅଖିଳ ପଟ୍ଟନାୟକଙ୍କ ସମେତ ଆଜିର ପ୍ରାୟ ସମସ୍ତ ପ୍ରତିଷ୍ଠିତ କବି ଲେଖକଙ୍କୁ ଏହି ସାରସ୍ୱତ ତୀର୍ଥରେ ଏକତ୍ରିତ ହେବାର ଦୃଶ୍ୟ ଆମର ସ୍ମୃତିରେ ଉଜ୍ଜୀବିତ ହୋଇ ରହିଛି । ଅନେକ ସମୟରେ ନିଜେ ଡଃ ମହତାବ ମଧ୍ୟ ଆସନ୍ତି ଏସବୁ ଆସରରେ ଯୋଗ ଦେବାକୁ । ବର୍ଷେ, ଲେଖକ ସାମ୍ମୁଖ୍ୟର ଏକ ନବବର୍ଷର ସାହିତ୍ୟ ଆସରରେ ଯୋଗ ଦେବାକୁ ରାତି ବାରଟାରେ ଡଃ ମହତାବ ଉପସ୍ଥିତ ଥିଲେ ଲେଖକମାନଙ୍କ ଗହଣରେ । କ୍ୱାଲିଟି ପ୍ରେସ୍ ଥିଲା ପ୍ରଜାତନ୍ତ୍ର ପରିସରର 'ବିଷୁବ ମିଳନ' ପରି ଅନ୍ୟତମ ସାରସ୍ୱତ ମିଳନ କ୍ଷେତ୍ର ସେ ସମୟରେ । ଆଉ, ଏ କ୍ଷେତ୍ରର ପ୍ରତିଷ୍ଠାତା ଥିଲେ ଜଗଦୀଶ ପାଣି ଯେ ଆଜି ଆଉ ନାହାନ୍ତି ବୋଲି ଭାବିବାକୁ ବାରଣ କରୁଛି ଆତ୍ମା ।

ଜଗଦୀଶ ପାଣି ଓ 'ସମାବେଶ' ଏ ଦୁହେଁ ଥିଲେ ଏକ ଓ ଅଭିନ୍ନ । ବର୍ତ୍ତମାନ କ୍ୱାଲିଟି ପ୍ରେସ୍ ଓ ସମାବେଶ ସେଇ ଅଭିନ୍ନତାର ସ୍ୱରୂପକୁ ଚିରସ୍ଥାୟୀ କରିବା ପାଇଁ ଆହ୍ୱାନର ସମ୍ମୁଖୀନ । ଭଗବାନଙ୍କ ନିକଟରେ; ଶ୍ରୀଜଗନ୍ନାଥ ଓ ଶାରଳାଙ୍କ ପାଦତଳେ ଆମର ଏତିକି ମାଗୁଣି ଭଗବାନ ସ୍ୱର୍ଗତ ଜଗଦୀଶ ପାଣିଙ୍କ ସଦା ସ୍ନେହ ବତ୍ସଳ, ପରୋପକାରୀ ଓ ସାରସ୍ୱତ ଆଲୋକରେ ସଦା ଆଲୋକିତ ଆତ୍ମାକୁ ମୋକ୍ଷ ପ୍ରଦାନ କରନ୍ତୁ ଓ ଜଗଦୀଶଙ୍କ ଦୁଃଖୀ ପରିବାର ବର୍ଗଙ୍କ ହୃଦୟରେ କୃପାବାରି ସଞ୍ଚି ଏ ଦାରୁଣ ଦୁଃଖରୁ ସମସ୍ତଙ୍କୁ ଉଦ୍ଧାର କରନ୍ତୁ ।

କ୍ୱାଲିଟି ପ୍ରେସ୍ ଓ ସମାବେଶ ଏକ ଓ ଅଭିନ୍ନ ହୁଅନ୍ତୁ । ଉତ୍କଳ ଭାଷା ସରସ୍ୱତୀଙ୍କ ପୀଠରେ ଆତ୍ମବଳୀ ଦେଇଥିବା ଜଗଦୀଶ ପାଣିଙ୍କ ଆଜୀବନ ସ୍ୱପ୍ନ, ସଫଳ ଓ ସାର୍ଥକ ହେଉ ।

••••

# ଜଗଦୀଶବାବୁ, ଗ୍ଳିଗଲ !

## ଶରତ କୁମାର ମହାନ୍ତି

ତମ ଯିବାର ତିନିଦିନ ପୂର୍ବରୁ ଗାଳ୍ପିକ ଉମାଶଙ୍କର ମିଶ୍ର ଓ ମୁଁ ତମ ପାଖକୁ ଯାଇଥିଲୁ । ପହଞ୍ଚୁ ପହଞ୍ଚୁ ପଗ୍‌ଚାରିଦେଲି, "ମାଇତିବାବୁ କିପରି ଅଛନ୍ତି ?" ମୁଁ ଜାଣିଥିଲି ମାଇତିବାବୁ ହସ୍‌ପିଟାଲ୍‌ରେ ଅଛନ୍ତି । ତମେ ହାତଠାରି ଜଣେଇଦେଲ ଯେ ସେ ଗ୍ଳିଗଲେ । ଚମକି ପଡ଼ିଲି । ସେଇଥିପାଇଁ ତମେ ଏପରି କ୍ଳାନ୍ତ, ବିଷଣ୍ଣ ଦିଶୁଥିଲ । ଗଲେ ତମେ କେତେ କ'ଣ ଗପିଯାଅ । ସେଦିନ ପଦେ ଦି'ପଦ ମାମୁଲି କଥାବାର୍ତ୍ତା କଲ ।

ଅଭାବ, ଦୁଃଖକଷ୍ଟ ଭିତରେ ତମ ଆଦ୍ୟ ଜୀବନର ସଂଗ୍ରାମ ବିଷୟରେ କେତେ କଥା କହିଚ । ଏ ସବୁ ଗପିବାବେଳେ ତମର କିଛି ଅଭିଯୋଗ ନଥାଏ, ବରଂ ଥାଏ ରସିକତା । କଥା କଥାକେ ମୋ ଆଗରେ ତମେ ନିଜକୁ ଟାଉଟର ବୋଲି କହିଥାଅ । ଅନ୍ୟମାନଙ୍କୁ ଏପରି କୁହ କି ନାହିଁ କେଜାଣି ? ଏଇତ ମାସକ ତଳେ ତମ ଟାଉଟରୀର ଗୋଟିଏ ନମୁନା ଦେଇଥିଲ । କଲିକତାରେ ପ୍ରେସ୍ ଆରମ୍ଭ କରିଥାଅ । ତମ ପ୍ରେସ୍‌କୁ କୁଞ୍ଜବିହାରୀ ଦାଶ ଅନେକ ସମୟରେ ଆସୁଥିଲେ । ତମ ପ୍ରେସ୍‌ରେ ସେତେବେଳେ ଥାଏ ଖଣ୍ଡେ ଦି'ଖଣ୍ଡ ଛୋଟ ଚଉକି । କୁଞ୍ଜବାବୁ ଲମ୍ବା ଚଉଡ଼ା ମଣିଷ । ସେଥିରେ ସେ କୌଣସିମତେ ବସନ୍ତି । ବ୍ୟାପାରଟା ତମକୁ ମାଡ଼ିପଡ଼େ । ସେଇ ଦାରିଦ୍ର୍ୟ ଭିତରେ ତମର ଟାଉଟରୀ ବୁଦ୍ଧି ଖର୍ଚ୍ଚ କରି ଗୋଟିଏ ବଡ଼ ଚଉକି ଯୋଗାଡ଼ କଲ । କୁଞ୍ଜବାବୁ ସେ ଚଉକି ଦେଖି ଖୁସି । ସେ ଅବଶ୍ୟ ଜାଣି ପାରିଥିଲେ ଯେ ତମେ ଖାସ୍ ତାଙ୍କରି ପାଇଁ ଖର୍ଚ୍ଚାନ୍ତ ହୋଇ ଚଉକିଟିକୁ ଆଣିଚ ।

କବି, ଲେଖକଙ୍କ ପ୍ରତି ତମ ଶ୍ରଦ୍ଧା, ସମ୍ମାନର ତୁଳନା ନାହିଁ । ସେଥିପାଇଁ ତମ 'ସମାବେଶ'କୁ କେନ୍ଦ୍ରକରି ଓଡ଼ିଶାର ସାହିତ୍ୟିକମାନେ ରୁଣ୍ଡ ହୋଇଥିଲେ । ତମେ ତ ନିଜକୁ ମୂର୍ଖ ବୋଲି କହ । ତମେ ପଣ୍ଡିତ ନଥିଲ ସତ, କିନ୍ତୁ ତମର ଗୋଟାଏ ଅଦ୍ଭୁତ ଅନ୍ତର୍ଦୃଷ୍ଟି ଥିଲା । ଯେମିତି ଓସ୍ତାଦ ମାଛ ଧରାଳୀ ପୋଖରୀ କୂଳରେ ଛିଡ଼ାହୋଇ ପୋଖରୀରେ ମାଛ ଅଛନ୍ତି କି ନା ଜାଣିପାରେ, ସେମିତି ଗୋଟିଏ ଲେଖାକୁ ଓଲଟ ପାଲଟ କରି ତମେ ତାର ଓଜନ କଳିନେଇ ପାରୁଥିଲ ।

ତମ ବଡ଼ପୁଅ-ବାବୁଲି ଚ୍ଛ୍ଲିଯିବା ପୂର୍ବରୁ ସମାବେଶ ପରିବାରର ସୁଖକର ଦିନଗୁଡ଼ିକୁ ଏ ଜୀବନରେ ଭୁଲି ହେବନି । ଅଖିଳବାବୁ, ନୀଳମଣିବାବୁ, ତମେ ଓ ମୁଁ ଗୋଟିଏ ଗାଡ଼ିରେ ବସି ବାବୁଲିକୁ ବାହା କରେଇ ଯାଇଥିଲେ । ଏହା ପରେ ବର୍ଷ କେଇଟା ମାତ୍ର ସୁଖରେ କଟିଛି । ବାବୁଲି ଚ୍ଛ୍ଲିଗଲା । ତମର ଅନ୍ତରଙ୍ଗ ବନ୍ଧୁ ଓ ଉପଦେଷ୍ଟା ଅଖିଳ ପଟ୍ଟନାୟକ ଚ୍ଛ୍ଲିଗଲେ । ଭିତରେ ତମେ ଭାଙ୍ଗିପଡ଼ିଲ । ତମ ଜୀବନର ସବୁ ଆନନ୍ଦ ଦୂର ହେଲା । ଶରୀର ସୁସ୍ଥ ରହିଲା ନାହିଁ । ଶୃଷ୍ଟ କର୍ତ୍ତବ୍ୟ କରିଯିବା ପାଇଁ ତମେ ବଞ୍ଚିରହିଲ । କେବଳ ସମାବେଶ ପତ୍ରିକା ତମକୁ ଯତ୍‌କିଞ୍ଚିତ ସୁଖ ଦେଉଥିଲା ।

ସମାବେଶ ପାଇଁ ଲେଖା ମାଗ । ଟିକିଏ କୁଣ୍ଠିତ ହୋଇ ଆର ସଂଖ୍ୟାକୁ ଦେବି କହିଲେ କୁହ, "ମୋର ଆଉ କେତେ ଦିନ ଯେ !" କଲମ ଆଉ ପୂର୍ବପରି ଚ୍ଛ୍ଲୁନି କହିଲେ ସେ କଥାକୁ କର୍ଣ୍ଣପାତ ନକରି ହସି ଉଡ଼େଇ ଦିଅ । ତମ ହସରୁ ମୁଁ ଭରସା ପାଏ । ଭାବିବାକୁ ଭଲ ଲାଗେ ଯେ ମୋ ବ୍ୟାଧିଟା ସାଂଘାତିକ ନୁହେଁ, ସାମୟିକ ।

ଜଗଦୀଶବାବୁ ! ତମ ସହିତ ମୋର କୋଡ଼ିଏ ବର୍ଷର ଆନ୍ତରିକତାପୂର୍ଣ୍ଣ ସମ୍ପର୍କ । ତଥାପି ତମେ ମୋ ଆଗରେ ନିଜକୁ ଟାଉଟର ବୋଲି କାହିଁକି କହୁଥିଲ ତାହା ତମେ ଗଲାଦିନ ଯାଇଁ ବୁଝିଲି । ସେ ଦିନ ମୁଁ ତମ ପାଖକୁ ଗପସପ କରିବାକୁ ଯାଇଥିଲି । ପହଞ୍ଚି ଦେଖେ ତ ତମେ ଠକିଦେଇ ପାର୍ !

••••

ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି ନୈନଂ ଦହତି ପାବକଃ ।
ନ ଚୈନଂକ୍ଲେଦୟନ୍ତ୍ୟାପୋ ନ ଶୋଷୟତି ମାରୁତଃ ।

# ପାଣିବାବୁଙ୍କ ବିୟୋଗରେ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି

ଅନନ୍ତ ନାରାୟଣ ସିଂହଦେଓ

ପାଣିବାବୁ ଚାଲିଗଲେ। ବିଶ୍ୱାସ ହେଉନାହିଁ। ଭୁବନେଶ୍ୱରରେ ମୁଁ ନଥିଲି। ଗାଁକୁ ଚାଲିଯାଇଥିଲି, ସେଥିହେତୁ ତାଙ୍କର ଶେଷ ଦର୍ଶନ ପାଇପାରିଲି ନାହିଁ। ଆସି ଶୁଣିଲି ଯେ, ସେ ରାତି ୯ଟାବେଳେ ମୋର ପୁଅ ସାଙ୍ଗରେ ଫୋନ୍‌ରେ କଥା ହୋଇଥିଲେ ତା ପରେ. ପ୍ରାତଃ ସୂର୍ଯ୍ୟଉଦୟ ପୂର୍ବରୁ ସେ ଚାଲିଗଲେ। ଏପରି ମୃତ୍ୟୁ ବହୁତ କମ୍ ଲୋକଙ୍କର ଭାଗ୍ୟରେ ଥାଏ। ଭଗବାନଙ୍କର ଆଶୀର୍ବାଦ ନ ହେଲେ ଏପରି ମୃତ୍ୟୁବରଣ କରି ହୁଏନା। ସେଦିନ ଏକାଦଶୀ, ବ୍ରହ୍ମମୁହୂର୍ତ୍ତରେ ସେ ଚାଲିଯାଇଛନ୍ତି। ନିଶ୍ଚିତ ଭାବରେ ତାଙ୍କର ଆତ୍ମା ସଦ୍‌ଗତି ପାଇବ ଏଥିରେ ସନ୍ଦେହ ନାହିଁ।

ପାଣିବାବୁଙ୍କର କର୍ମମୟ ଜୀବନ ମଧ୍ୟରେ ସେ ବହୁ ଉତ୍‌ଥାନ ପତନ ଦେଇ ଗତି କରିଛନ୍ତି। ତାଙ୍କର ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ଯେଉଁ ଶ୍ରଦ୍ଧା ବାଲ୍ୟକାଳରୁ ଉଦ୍ରେକ ହୋଇଥିଲା ତାହା ସେ ମୁଦ୍ରଣ ବ୍ୟବସାୟରେ ପ୍ରବେଶ କରି ଚରିତାର୍ଥ କରି ପାରିଛନ୍ତି। ପାଣିବାବୁଙ୍କର ବୈଶିଷ୍ଟ୍ୟ ଯେ ସେ ଓଡ଼ିଶାର ସବୁ ଦଳର ରାଜନୈତିକ ତୁଙ୍ଗ ନେତାମାନଙ୍କ ସହିତ ଘନିଷ୍ଠ ସମ୍ପର୍କ ଥିଲେ ବି ସେ କୌଣସି ରାଜନୈତିକ ଦ୍ୱନ୍ଦ୍ୱ ଭିତରେ ପ୍ରବେଶ କରିନାହାନ୍ତି। ତାଙ୍କ ପ୍ରେସ୍ ସବୁଦଳର ଏକ ମିଳନ ସ୍ଥାନ। ସେଠି କଂଗ୍ରେସ୍ ଦଳର ମାସିକ ପତ୍ରିକା ଛପା ହୁଏ। ସେଠି ଜନତା ଦଳର ନିର୍ବାଚନ ଇସ୍ତାହାର ମଧ୍ୟ ମୁଦ୍ରଣ ହୁଏ। ବହୁ ସମୟରେ ପ୍ରେସ୍‌କୁ ଯାଇ ଦେଖିଛି, ବିଭିନ୍ନ ରାଜନୈତିକ ଦଳର ନେତାମାନଙ୍କର ସେ ଗୋଟିଏ ମିଳନପୀଠ। ନିର୍ବାଚନ ଆସିଲେ ସବୁ ଦଳର ପ୍ରାର୍ଥୀମାନେ ତାଙ୍କ ପାଖରେ ଆସି ବସିଯାଆନ୍ତି। ଆଜିକାଲି ଯୁଗରେ ସବୁ କାର୍ଯ୍ୟ ଦଳୀୟ ଭିତ୍ତିରେ ହୁଏ। କିନ୍ତୁ ପାଣିବାବୁଙ୍କର ସବୁ ଦଳ ପ୍ରତି ସମଭାବ ସମସ୍ତଙ୍କୁ ଆକୃଷ୍ଟ କରିଥିଲା।

ପାଣିବାବୁଙ୍କର ନିଜ ସହକର୍ମୀ ବନ୍ଧୁମାନଙ୍କ ପ୍ରତି ଯେଉଁ ସ୍ନେହ ମମତା ଥିଲା ତାହା ପ୍ରକୃତରେ ଆଶ୍ଚର୍ଯ୍ୟଜନକ। ତାଙ୍କର ଯୁବାବସ୍ଥାରେ କଲିକତା ସହରରେ ଏକ ପ୍ରେସ୍

ପ୍ରତିଷ୍ଠାକରି ଓଡ଼ିଆ ଭାଷା ସେବାରେ ଲାଗି ପଡ଼ିଥିଲେ । ସେଇ ସମୟରେ ସେ ସ୍ୱାଧୀନତା ଆନ୍ଦୋଳନର ବହୁ ନେତାଙ୍କ ସଂସ୍ପର୍ଶରେ ଆସିଥିଲେ । ବିଶେଷ କରି ହରେକୃଷ୍ଣ ମହତାବଙ୍କ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ଓ ଭକ୍ତି ଥିଲା । ସେଥିହେତୁ କଲିକତାରେ ଅବସ୍ଥାନ ସମୟରେ ତତ୍‌କାଳୀନ ସ୍ୱାଧୀନତା ଆନ୍ଦୋଳନର ବଙ୍ଗୀୟ ନେତାମାନଙ୍କ ସହିତ ତାଙ୍କର ସମ୍ପର୍କ ସୃଷ୍ଟି ହୋଇଥିଲା ।

ପାଣିବାବୁଙ୍କର ମହାନ୍ ମାନବିକତାର ଏକ ଉଦାହରଣ ହେଲା ଯେ ସେ କଲିକତା ଛାଡ଼ି ଓଡ଼ିଶା ଆସିବା ପରେ ତାଙ୍କର ସ୍ୱଅର୍ଜିତ ସମ୍ପତ୍ତି କଲିକତା ସ୍ଥିତ ପ୍ରେସ୍‌ଟି ତାଙ୍କର ଜଣେ ସହକର୍ମୀଙ୍କୁ ଦାନ କରିଦେଇ ଆସିଥିଲେ । ଆଜି ପର୍ଯ୍ୟନ୍ତ ସେହି ବ୍ୟକ୍ତି ପ୍ରେସ୍‌ଟିକୁ ଚଳାଇ ପ୍ରତିପୋଷଣ ହେଉଛନ୍ତି । କଲିକତାରେ ଅବସ୍ଥାନ ସମୟରେ ସେ ଜନୈକ ବଙ୍ଗୀୟ ସ୍ୱାଧୀନତା ସଂଗ୍ରାମୀ ବିଷ୍ଣୁପଦ ମାଇତିଙ୍କ ସହିତ ତାଙ୍କର ଘନିଷ୍ଠ ବନ୍ଧୁତ୍ୱ ସ୍ଥାପନ ହୁଏ । ଓଡ଼ିଶାକୁ ଆସିଲା ପରେ ତାଙ୍କୁ ସାଙ୍ଗରେ ନେଇ ଆସିଥିଲେ । ଏବଂ ଭୁବନେଶ୍ୱରରେ ତାଙ୍କର ମୁଦ୍ରଣ ବ୍ୟବସାୟରେ ତାଙ୍କୁ ଏକ ଅଂଶୀଦାର କରିଥିଲେ । ଦୁଇଜଣ ମିଶି ଏହି କ୍ୱାଲିଟି ପ୍ରେସ୍‌କୁ ଗୋଟିଏ ଅଦ୍ୱିତୀୟ ପ୍ରେସ୍‌ରେ ପରିଣତ କରିଥିଲେ । ଏହା ଭୁବନେଶ୍ୱରରେ କାହିଁକି ସାରା ଓଡ଼ିଶାରେ ପ୍ରସିଦ୍ଧି ଲାଭ କରିଛି । ଏଠାରେ ସବୁ ଆଧୁନିକ ପ୍ରଣାଳୀରେ ମୁଦ୍ରଣ କରାଯାଏ ।

ଶୁଣିବାକୁ ପାଇଲି ତାଙ୍କର ବନ୍ଧୁ ମାଇତିଙ୍କର ଠିକ୍ ଏଗାରଦିନ ପୂର୍ବରୁ ମୃତ୍ୟୁ ଘଟିଥିଲା । ବନ୍ଧୁ ବିଚ୍ଛେଦ ସେ ସହିପାରିଲେ ନାହିଁ । ସେହି ଦିନଠାରୁ ସେ ଖାଦ୍ୟପେୟ ବର୍ଜନ କରିବାକୁ ଆରମ୍ଭ କଲେ । ସଦାସର୍ବଦା ମାଇତିଙ୍କୁ ସେ ସ୍ମରଣ କରୁଥିଲେ । ମୃତ୍ୟୁ ଦିବସରେ ସୂର୍ଯ୍ୟ ଉଦୟ ପୂର୍ବରୁ ସେ ଉଠି ଚଳପ୍ରଚଳ ହେଉଥିଲେ ଏବଂ ତାଙ୍କର ବନ୍ଧୁ ମାଇତିଙ୍କ ବିଷୟରେ ଶ୍ରୀମତୀ ପାଣିଙ୍କ ସହିତ ଆଲୋଚନା କରିବାର ଦୁଇଘଣ୍ଟା ପରେ ତାଙ୍କର ମୃତ୍ୟୁ ହୋଇଗଲା । ବନ୍ଧୁ ବିଚ୍ଛେଦରେ ମୃତ୍ୟୁ ହେବା ଅତି ଶ୍ରଦ୍ଧାଳୁ ଓ ଭାବ– ପ୍ରବଣ ବ୍ୟକ୍ତିଙ୍କ ଛଡ଼ା ଅନ୍ୟ କାହାରି ହୋଇନପାରେ । ତାଙ୍କର ଆତ୍ମାକୁ ସଦ୍‌ଗତି ମିଳିବ ଏଥିରେ କିଛି ସନ୍ଦେହ ନାହିଁ । ତଥାପି ତାଙ୍କର ଆମେ ଯେଉଁ ବନ୍ଧୁ ରହିଗଲୁ ଆତ୍ମାର ସଦ୍‌ଗତି ପାଇଁ ପ୍ରଭୁଙ୍କଠାରେ ପ୍ରାର୍ଥନା କରିବା ଛଡ଼ା ଆଉ କ'ଣ କରିପାରୁ ?

••••

# ନୀରବ ପ୍ରୟାଣ.... ଏକ ଅମର ଆତ୍ମାର

ଦୁର୍ଗାମାଧବ ମିଶ୍ର

ଲେଖାଲେଖି ଆରମ୍ଭ କଲାଦିନୁ ମୁଁ ପ୍ରଜାତନ୍ତ୍ର ସହିତ ସଂପୃକ୍ତ ଥିଲି । ଅନେକ ସମୟରେ ମହତାବବାବୁଙ୍କ ସହିତ ଆଲୋଚନା ହୁଏ । ତା'ପରେ, ପ୍ରଜାତନ୍ତ୍ରର ତତ୍କାଳୀନ ବରିଷ୍ଠ ସାମ୍ବାଦିକମାନଙ୍କ ସହିତ ମଧ୍ୟ ଆଲୋଚନା ହୁଏ । ଜଗଦୀଶବାବୁ ପ୍ରାୟ ସବୁବେଳେ ଥାଆନ୍ତି । ପ୍ରଜାତନ୍ତ୍ର ପରିଚାଳନାର ଗୁରୁଦାୟିତ୍ୱ ତାଙ୍କ ଉପରେ ଥାଏ । କେବଳ ପ୍ରଜାତନ୍ତ୍ରର ମୁଦ୍ରଣ ଓ ବଣ୍ଟନ ନୁହେଁ, ପୂରା ଅଫିସ୍‌ର ସମସ୍ତ ଅଧିକାରୀ ଓ କର୍ମଚାରୀ ମାନଙ୍କର ଆବଶ୍ୟକତା ପୂରଣ ଏକ ଆୟାସସାଧ୍ୟ ଦାୟିତ୍ୱ । କେହି ଜଣେ ଅସନ୍ତୁଷ୍ଟ ହେଲେ, ପ୍ରଜାତନ୍ତ୍ରର ପ୍ରକାଶନ ବିଘ୍ନିତ ହେବ । ନୂଆ ହୋଇ ସମ୍ବାଦପତ୍ରଟି ପ୍ରତିଷ୍ଠିତ ହୋଇଥାଏ କଟକରେ । ମହତାବବାବୁ ସେଠାରେ ଅନେକ ସମୟ ବ୍ୟୟ କରୁଥାଆନ୍ତି । କିନ୍ତୁ ମୁଁ ଯେତେଦୂର ଜାଣେ, ସେ ସମସ୍ତଙ୍କୁ ଆପଣେଇ ନେଇ ପ୍ରଜାତନ୍ତ୍ରର ନିୟମିତ ପ୍ରକାଶନରେ ନେପଥ୍ୟରୁ ସାହାଯ୍ୟ କରନ୍ତି । ସବୁଠାରୁ ଦୁଃସାଧ୍ୟ କାର୍ଯ୍ୟ ବିଜ୍ଞାପନ ସଂଗ୍ରହ । ବିନା ବିଜ୍ଞାପନରେ ଗୋଟିଏ ଗୋଟିଏ ସମ୍ବାଦପତ୍ର କେତେଦିନ ଚାଲିବ ? ଜଗଦୀଶବାବୁ ନିଜର ଅମାୟିକ, ସ୍ନେହପୂର୍ଣ୍ଣ ବ୍ୟବହାରରେ ସମସ୍ତଙ୍କର ଶ୍ରଦ୍ଧା ଅର୍ଜନ କରି ପାରିଥିଲେ ଓ ବିଜ୍ଞାପନ ସଂଗ୍ରହ କରିପାରୁଥିଲେ ।

କିନ୍ତୁ ଜଗଦୀଶବାବୁ ଥିଲେ ଏକ ସାହିତ୍ୟପ୍ରେମୀ । ଏହା ଜାଣିବାକୁ ମହତାବବାବୁଙ୍କୁ ବେଶୀଦିନ ଲାଗି ନଥିଲା । ତାଙ୍କରି ଆଶୀର୍ବାଦ ନେଇ ଜଗଦୀଶବାବୁ କଲିକତାରୁ ପ୍ରକାଶ କଲେ 'ସମାବେଶ' । କେଉଁ ଶୁଭ ମୁହୂର୍ତ୍ତରେ ତାହା ପ୍ରଥମେ ପ୍ରକାଶିତ ହେଲା କେଜାଣି, ପତ୍ରିକାଟିରେ ଲେଖା ଦେବାପାଇଁ ଲେଖକ ଲେଖିକାମାନେ ଆଗ୍ରହାନ୍ୱିତ ହେଲେ ଓ ଫଳସ୍ୱରୂପ ସମାବେଶ ପାଇଁ ପାଠକ ପାଠିକାମାନଙ୍କର ଚାହିଦା ବଢ଼ିଲା । କେତେବର୍ଷ ପରେ ସମାବେଶର ପ୍ରକାଶ ସ୍ଥାନ ଭୁବନେଶ୍ୱର କରିଦେଲେ ଜଗଦୀଶବାବୁ । ଏହା ଯେ ଏକ ସମ୍ଭ୍ରାନ୍ତ ସାହିତ୍ୟ ପତ୍ରିକା ଏଥିରେ କାହାର ସନ୍ଦେହ ନଥିଲା । ଏଥିରେ ଲେଖାଟିଏ ପ୍ରକାଶ ପାଇବା ବହୁ ସୌଭାଗ୍ୟର କଥା ବୋଲି ଲେଖକ ଲେଖିକାମାନେ ମନେକରୁଥିଲେ । ଏଥିପାଇଁ ଜଗଦୀଶବାବୁଙ୍କର ହାର୍ଦ୍ଦିକତା, ବନ୍ଧୁବତ୍ସଳତା ଓ ଅବିବାଦୀୟ ବ୍ୟକ୍ତିତ୍ୱ ମୁଖ୍ୟତଃ ଦାୟୀ ।

କାଳକ୍ରମେ, ଜଗଦୀଶବାବୁ, ପ୍ରସିଦ୍ଧ ଲେଖକମାନଙ୍କୁ ସମାବେଶର ସମ୍ପାଦନାରେ ସଂପୃକ୍ତ କରାଇଲେ । ଅନେକ ଦିନ ଧରି ଅଖିଳବାବୁ (ଅଖିଳ ମୋହନ ପଟ୍ଟନାୟକ) ସମାବେଶ କାର୍ଯ୍ୟ, ତାଙ୍କ ଅନୁରୋଧରେ, ଦେଖିଲେ । ପତ୍ରିକାର ମାନ ଉଚ୍ଚତର ହେଲା । କିନ୍ତୁ ଅଖିଳବାବୁଙ୍କର ଅକାଳମୃତ୍ୟୁ ଆମ ସମସ୍ତଙ୍କ ସହିତ ଜଗଦୀଶବାବୁଙ୍କୁ ଖୁବ୍ ବାଧିଥିଲା । ସେତେବେଳେ ମୁଁ କଲିକତାରେ ଥାଏ । ଦିନେ ଗୋଟିଏ ଟେଲିଗ୍ରାମ୍ ପାଇଲି ତାଙ୍କଠାରୁ । ଅଖିଳବାବୁଙ୍କ ସ୍ମୃତିରେ କବିତାଟିଏ ପଠାନ୍ତୁ, ସମାବେଶର ସ୍ମୃତି ବିଶେଷାଙ୍କରେ ପ୍ରକାଶିତ ହେବ । ଶେଷ ତାରିଖ ମାତ୍ର ପାଞ୍ଚଦିନ ବାକି । କବିତାଟିଏ ଲେଖି ପଠାଇଲି । ଶେଷ ଦିନରୁ ଦିନେ ଡେରି ହୋଇଗଲା । ଟେଲିଗ୍ରାମ୍ ଓ ଟେଲିଫୋନ୍ ସବୁ ଆସି ପହଞ୍ଚିଲା । ଲେଖକମାନଙ୍କୁ ଏତେ ଆଦର କିଏ ଦିଏ ? ଏହା ସେ ବୋଧହୁଏ ଭଲକରି ଶିଖିଥିଲେ ମହତାବବାବୁଙ୍କଠାରୁ । ସେ ଠିକ୍ ଜାଣିଥିଲେ, ପତ୍ରିକାର ପ୍ରାଣପିଣ୍ଡ ହେଲେ ଲେଖକ ଲେଖିକା । ସେମାନେ ଲେଖା ନ ପଠାଇଲେ ପତ୍ରିକାରେ କ'ଣ ବାହାରିବ ?

ଶେଷ ଜୀବନ ଜଗଦୀଶବାବୁଙ୍କର ଦୁଃଖରେ ବିତିଲା । ତାଙ୍କ ପୁତ୍ରର ଆକସ୍ମିକ ଅପ୍ରାକୃତ ମୃତ୍ୟୁ ତାଙ୍କର ଜୀବନଧାରଣ ଶୈଳୀକୁ ସମ୍ପୂର୍ଣ୍ଣ ବଦଳାଇ ଦେଲା । କାହିଁକି ଭଗବାନ୍ ତାଙ୍କୁ ଏ ପ୍ରକାର ଆଧିଦୈବିକ ତା' ପରେ ଜର୍ଜରିତ କଲେ କେଜାଣି ? ତା' ପରେ ଦେଖାହୋଇଛି ଜଗଦୀଶବାବୁଙ୍କ ସହିତ ଭୁବନେଶ୍ୱରରେ । ମୋର ରେଳନିଯୁକ୍ତି ପରିଷଦ ଅଫିସ ପାଖରେ ଥିଲା ତାଙ୍କର କ୍ୱାଲିଟି ପ୍ରେସ୍ । ଦେଖିଛି ସେ ଆଉ ପୂର୍ବର ଜଗଦୀଶବାବୁ ହୋଇ ଆଉ ନଥିଲେ । ସେ ପୁତ୍ରଶୋକଜନିତ କ୍ଷତ ଆଉ ଭରିଲା ନାହିଁ । ପୁଅକୁ ଝୁରି ଝୁରି ସେ ଗ୍ଲାଲିଗଲେ । ସେ ପାଲଟିଗଲେ ଏକ ପୃଥକ୍ ବ୍ୟକ୍ତି । ସମାବେଶ ବାହାରୁଥିଲା । ପ୍ରେସ୍ ଗ୍ଲାଲୁଥିଲା । କିନ୍ତୁ ସେ ଥିଲେ ସମ୍ପୂର୍ଣ୍ଣ ନିରାସକ୍ତ । ଯେଉଁ ଜଗଦୀଶବାବୁ ବିଜ୍ଞାପନ ପାଇଁ ମୋ ପୁଅକୁ କଲିକତା ଯାଇ ଦେଖା କରିଥିଲେ ଓ ମାତ୍ରାତିରିକ୍ତ ଆଗ୍ରହ ଦେଖାଉଥିଲେ, ସେ ସେହି ଜଗଦୀଶ ପାଣି ହୋଇ ଆଉ ନଥିଲେ ।

ତାଙ୍କର ପ୍ରସ୍ଥାନ ଓଡ଼ିଆ ସାହିତ୍ୟ ଓ ସାମ୍ବାଦିକତା କ୍ଷେତ୍ରରେ ଯେଉଁ ଶୂନ୍ୟସ୍ଥାନ ସୃଷ୍ଟି କଲା, ତାହା ପୂରଣ ହେବା ପାଇଁ ବହୁଦିନ ଲାଗିବ । ଭଗବାନ୍ ତାଙ୍କର ଆତ୍ମାର ସଦ୍‌ଗତି ବିଧାନ କରନ୍ତୁ ।

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ



# ପାଣି ଭାଇନା (ତୁମକୁ) ଭୁଲି ହୁଏନା.......

ଶାନ୍ତନୁ ମହାପାତ୍ର

କଲିକତାରେ ଆଶୁତୋଷ କଲେଜରେ ପଢୁଥିବାବେଳେ (୧୯୫୨–୫୩) ପ୍ରଥମ ଭେଟ Friends' Press (Hidaram Banerjee Lane, Bowbazar) ରେ। ସେତେବେଳେ ଦୁଇଟି ଓଡ଼ିଆ, ଛାପାଖାନା ଓ ସାହିତ୍ୟ ସେବାରେ ନିୟୋଜିତ ଥିଲେ। ଅଗ୍ରଜ ଶୈଳେଶ ପତି ( ଯେ କି ସେତେବେଳ St. Pauls College Hostel ର Prefect ଥିଲେ) ତାଙ୍କର ପରିଚୟ ଦେଇଥିଲେ। ଜଗଦୀଶ ପାଣି ଓ କଣ୍ଟୁରିଚରଣ ଦାସ। ତୃତୀୟ ବ୍ୟକ୍ତି ଥିଲେ ରାମଚନ୍ଦ୍ର ପଟ୍ଟନାୟକ ( ଓଡ଼ିଆ ଶ୍ରମିକ ନେତା)। ପାଣି ଭାଇନା, ସୁନ୍ଦର ଚେହେରା, ବଙ୍ଗାଳି ବଙ୍ଗାଳି ଭାବ (ଧୋତି ପଞ୍ଜାବି), ହାତରେ ସିଗାରେଟ୍ । ସୁନ୍ଦର ବଙ୍ଗଳା କହୁଥିଲେ। ପେସା:– ସାଧାରଣ Printing Press କାମ ଏବଂ ବିଶେଷ କରି ସେତେବେଳକାର ପ୍ରଖ୍ୟାତ ଉଦ୍ୟୋଗୀ ବିଜୁ ପଟ୍ଟନାୟକଙ୍କର Kalinga Group of Enterprises (Industries, Mining ଏବଂ Airlines )ର ସମସ୍ତ ଛପେଇକାମ। ଛୋଟ ଛାପାଖାନା କିନ୍ତୁ ଗୁଣାତ୍ମକ ଛପେଇ କାମ। ଆଦିଗୁରୁ ହରେକୃଷ୍ଣ ମହତାବଙ୍କର ଅଗ୍ରଣି ଚେଲା, ଜଗଦୀଶ ପାଣି। ପ୍ରଥମ ପରିଚିତିରେ ହୃଦୟଙ୍ଗମ କରିଥିଲି ଜଗଦୀଶ ବାବୁଙ୍କର ଆକର୍ଷଣୀୟ ବ୍ୟକ୍ତିତ୍ୱ।

୧୯୫୫ ଅଗଷ୍ଟ। ପ୍ରବାସୀ ଓଡ଼ିଆଙ୍କ ପାଇଁ ପ୍ରଥମ ସାହିତ୍ୟ ପତ୍ରିକା "ସମାବେଶ"। ଆଇ.ଆଇ.ଟି. ଖଡ଼ଗପୁରର ଛାତ୍ର ହିସାବରେ କଲିକତା ଗସ୍ତବେଳେ କେବେ କେମିତି ଦେଖା। ଶୁଣୁଛି, ତୁମେ ଜଣେ ଭଲ ଫୁଟ୍‌ବଲ୍ ଖେଳାଳୀ, ସୁଗାୟକ, ବଙ୍ଗଳା ସଂଗୀତପ୍ରେମୀ ମଧ୍ୟ। ଗୋଟିଏ ପରାମର୍ଶ ଦେବି ଭାଇ, କିଛି ମନେ କରିବନି। ବଙ୍ଗାଳି ବନ୍ଧୁଙ୍କର ଶାଲା 'ଉଡ଼େ' ଶୁଣୁଥିବ ନିଶ୍ଚୟ। ପଶ୍ଚିମବଙ୍ଗ ଛାଡ଼ିବା ଆଗରୁ ବଙ୍ଗାଳୀଙ୍କୁ ଉଚିତ୍ ଜବାବ୍ ଦେବାକୁ ପଡ଼ିବ ତୁମକୁ ଯେ ସାଧାରଣ ଜଣେ ଓଡ଼ିଆ (ଛାତ୍ର ହେଉ, ଶିଳ୍ପୀ ହେଉ, ପୂଝାରି ହେଉ ବା କଳମିସ୍ତ୍ରୀ ବା କାରଖାନା ଶ୍ରମିକ ହେଉ) ସାଧାରଣ ବଙ୍ଗାଳୀଙ୍କ ତୁଳନାରେ କିଛି କମ୍ ନୁହେଁ ବରଂ ଆଗୁଆ xxxxx"। ଯୁବାବସ୍ଥାରେ ତାଙ୍କୁ ଉଚିତ୍ ପ୍ରମାଣ ଦେଇପାରିଚି କି ନା ଜାଣେନା, କିନ୍ତୁ ତାଙ୍କର ସେଇ ଛୋଟ ଛାପାଖାନାର ପରିବେଶ ଭିତରେ ଯେଉଁ ଓଡ଼ିଆ ସ୍ୱାଭିମାନ ଓ ଆନ୍ତରିକତାର ସ୍ପର୍ଶ ପାଇଥିଲି ତା' ଭୁଲିବାର ନୁହେଁ xxxxx

ମହତାବଙ୍କର ଟାଣରେ, ୧୯୬୯-୭୦ ବେଳକୁ ବୋଧହୁଏ ସେ 'ପ୍ରଜାତନ୍ତ୍ର' ପାଇଁ କାମ କଲେଣି। ସେତେବେଳକୁ ସଂଗୀତ କ୍ଷେତ୍ରରେ ମୁଁ ବେଶ୍ ପ୍ରତିଷ୍ଠା ଲାଭ କରିସାରିଥିଲି ଆଉ ସେ ମଧ୍ୟ ସାମ୍ବାଦିକତା ଏବଂ ସମାଜସେବା କାର୍ଯ୍ୟରେ। ତାଙ୍କର ସମାଜସେବା ବୋଇଲେ ଗରିବଙ୍କୁ ସାହାଯ୍ୟ ଓ ବଞ୍ଚିବାର ପ୍ରେରଣା ଯୋଗାଇବା ଏବଂ ଜାତି-ବର୍ଣ୍ଣ-ନିର୍ବିଶେଷରେ ଅସୁବିଧାରେ ପଡ଼ିଥିବା ଯେକୌଣସି ଲୋକଙ୍କୁ ଚାକିରି, ବ୍ୟବସାୟ, ସମ୍ପର୍କ ସ୍ଥାପନ ଇତ୍ୟାଦି ସବୁ କ୍ଷେତ୍ରରେ ସାହାଯ୍ୟ କରିବା । ରାତିଅଧରେ ବି ଯଦି କେହି କବାଟ ଠକ୍ ଠକ୍ କରି ଡାକେ ସେ ବିରକ୍ତ ହେବା ପରିବର୍ତ୍ତେ ତାକୁ ତତ୍‌କ୍ଷଣାତ୍ ରିକ୍ସାରେ ଧରି ଥାନା ବା ଡାକ୍ତରଖାନା ବା ଅନ୍ୟ କାହା ପାଖକୁ ନେଇଯାଇ ତା ପାଇଁ ସୁପାରିଶ୍ କରୁଥିଲେ। ଡାଃ ମହତାବଙ୍କର ସୁଖ୍ୟାତି ଓ ପ୍ରଭାବର ସମ୍ପୂର୍ଣ୍ଣ ପ୍ରୟୋଗ ସେ କରୁଥିଲେ ଏଇ ସବୁ କାମରେ। ମୋର ଅନେକଥର ହୃଦ୍‌ବୋଧ ହୋଇଛି ଯେ ମହତାବଙ୍କଠାରୁ କେତୋଟି ମୌଳିକ ଗୁଣ ସେ ଶିକ୍ଷା କରିଥିଲେ। ସେଗୁଡ଼ିକ ହେଲା, କାହାରିକୁ ହେୟ ମନେ ନ କରିବା, ସମସ୍ତଙ୍କୁ ସମ୍ମାନାତ୍ମକ ସମ୍ବୋଧନ କରିବା, ଅଦ୍ଭୁତ ଲୋକସଂପର୍କ କାଇଦାରେ କାମ କରାଇନେବା ଇତ୍ୟାଦି। ଉଭୟ ଭୂତତ୍ତ୍ୱ ଏବଂ ସଂଗୀତ କ୍ଷେତ୍ରରେ ମୋର କୃତି ପାଇଁ କଲିକତା କଥା ମନେପକାଇ ସେ ନିଜକୁ ଗର୍ବାନ୍ୱିତ ମନେ କରୁଥିଲେ ଏବଂ ସମସ୍ତଙ୍କୁ ମୋ ବିଷୟରେ କହୁଥିଲେ। ୧୯୬୯ରେ ମୋ ବାହାଘରରେ ପୂରାମାତ୍ରାରେ ଯୋଗଦାନ ସହ ବହୁଭାବରେ ମୋତେ ସାହାଯ୍ୟ କରିଥିଲେ। ଅଜସ୍ର ଆଶୀର୍ବାଦ କରିଥିଲେ ଆମ ଦୁହିଁଙ୍କୁ।

୧୯୭୪ରେ ଖାରବେଳନଗରରେ ନିଜର କ୍ୱାଲିଟି ପ୍ରେସ୍ ସ୍ଥାପନ ତଥା ୧୯୭୮ରେ କ୍ୱାଲିଟି ପ୍ରୋସେସିଂ ଇତ୍ୟାଦି ଆରମ୍ଭ ଜରିଆରେ ଏବଂ ସର୍ବୋପରି ସାହିତ୍ୟ ପତ୍ରିକା "ସମାବେଶ" ପାଇଁ ସେ ଭୁବନେଶ୍ୱରର ଅତି ଜଣାଶୁଣା ଓ ଲୋକପ୍ରିୟମାନଙ୍କ ମଧ୍ୟରୁ ଜଣେ ହୋଇଗଲେ। ୧୯୮୦ ମସିହାରେ କଥାଛଳରେ ତାଙ୍କର ଜଣେ ହିତୈଷୀ ବୟୋଜ୍ୟେଷ୍ଠ ବନ୍ଧୁ ମୋତେ କହିଥିଲେ ଯେ ଏକାଧାରରେ ବିଭିନ୍ନ ରାଜନୈତିକ ଦଳର ନେତାଠାରୁ ଆରମ୍ଭ କରି କର୍ମୀ ପର୍ଯ୍ୟନ୍ତ; ସାରା ଓଡ଼ିଶାର ଅଗ୍ରଣି ସାହିତ୍ୟକାର ଲେଖକ କବିମାନଙ୍କଠାରୁ ଆରମ୍ଭ କରି ସାମ୍ବାଦିକ ଗୋଷ୍ଠୀ, ବ୍ୟବସାୟୀ ଗୋଷ୍ଠୀ ପର୍ଯ୍ୟନ୍ତ ଏବଂ ଉଚ୍ଚପଦସ୍ଥ ସରକାରୀ ଅଫିସରମାନଙ୍କଠାରୁ ଆରମ୍ଭ କରି ଭିକାରୀ, ଖଟିଖିଆ ଗରିବଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ସହିତ ଭାଇନାଙ୍କର ସୁସମ୍ପର୍କ ଏକ ବିରାଟ୍ exception । ସମସ୍ତେ ତାଙ୍କୁ ଭଲ ପାଉଥିଲେ ଓ ଶ୍ରଦ୍ଧା କରୁଥିଲେ। ସତରେ କି ଅଦ୍ଭୁତ ବ୍ୟକ୍ତିତ୍ୱ। ତାଙ୍କର ସବୁଠାରୁ ବଡ଼ ଗୁଣ ଥିଲା ନିଜର ବଦଭ୍ୟାସ ବା ଦୋଷ ଇତ୍ୟାଦିକୁ ଖୋଲାଖୋଲି ଭାବରେ ସ୍ୱୀକାର କରିବା ଓ ଭୁଲ୍ ପାଇଁ କ୍ଷମା ମାଗିନେବା।

"ଓଃ ବ୍ୟସ୍ତ ହୁଅନା, ବସ, ଦେଖିବା, କାମ୍ ହୋଇଯିବ, ଆଗେ ଟ୍ଟ' ପିଅ xxxx"

ଏହିପରି ବାକ୍ୟ ଗୁଡ଼ିଏ ସବୁବେଳେ ତାଙ୍କ ମୁହଁରୁ ବାହାରୁଥିଲା ଅସୁବିଧାରେ ପଡ଼ିଥିବା ଲୋକପାଇଁ, ଏପରିକି ସେ ନିଜେ ଭୀଷଣ ସମସ୍ୟାରେ ପଡିଥିବାବେଳେ ମଧ୍ୟ । ଅନ୍ୟର ଦୁଃଖରେ ସମଦୁଃଖୀ ହୋଇ ନିଜର ଦୁଃଖ ଭୁଲିଯିବା ଲୋକ ଥିଲେ ସିଏ । ପକେଟ୍‌ରେ ୫୦୦୦ଟଙ୍କା ଥିବାବେଳେ ଯେଉଁ ମେଜାଜ୍ ୫ଟଙ୍କା ଥିଲେ ମଧ୍ୟ ସେଇଆ, ଦି'ପଇସା ନଥିଲେ ବି ସେଇଆ । ଛାପାଖାନାରେ ରାତାରାତି ଦୁଃସାଧ୍ୟ ଛପେଇ କାର୍ଯ୍ୟ ସବୁ ତାଙ୍କ ପାଇଁ ଅକୁଣ୍ଠିତ ଚିତ୍ତରେ ତାଙ୍କର ଚିରାନୁଗତ କର୍ମୀମାନେ କରି ଦେଉଥିଲେ ଅଧିକା ପାରିଶ୍ରମିକ ଇତ୍ୟାଦି ଆଶା ନକରି ମଧ୍ୟ, କାରଣ 'ଭାଇନା'ଙ୍କର ସ୍ନେହରେ ସେମାନେ ଥିଲେ ବନ୍ଧା । ତାଙ୍କର ଦୁର୍ଦ୍ଦିନରେ ଭାଇନା ଓ ପରିବାର ସବୁବେଳେ ଠିଆ ହେଉଥିଲେ । ବନ୍ଧୁତା ଖାତିର୍‌ରେ ଛପେଇ କାର୍ଯ୍ୟ କରିଦେଇ ରାଜନୈତିକ ଦଳର ଲୋକଙ୍କଠାରୁ ଆରମ୍ଭ କରି, ନିଜର ବନ୍ଧୁଙ୍କର ବନ୍ଧୁମାନଙ୍କ ଉପରେ ଲକ୍ଷ ଲକ୍ଷ ଟଙ୍କା ବାକିଆ ପଡ଼ିଥିଲେ ମଧ୍ୟ ସେ କେବେ ସେମାନଙ୍କୁ ଅସମ୍ମାନ କରିନାହାନ୍ତି । କେବଳ ସୁଯୋଗ ପାଇଲେ ସେମାନଙ୍କୁ ପ୍ରେସ୍‌ର ୩୦ ଲକ୍ଷ ଟଙ୍କାରୁ ଊର୍ଦ୍ଧ୍ୱ ଋଣର ବୋଝ ବିଷୟରେ ଚେତାଇ ଦିଅନ୍ତି ଓ ବାକିଆ ଟଙ୍କା ଚେଷ୍ଟାକରି ଦେଇଦେବା ପାଇଁ ଅନୁରୋଧ କରନ୍ତି । ( ଆଉ ବନ୍ଧୁତ୍ୱର ଗ୍ରପରେ ପଡ଼ି ପୁଣି ସେମାନଙ୍କ ପାଇଁ 'ବାକି'ରେ କାମ କରି ଦେଉଥିଲେ, ଛାପାଖାନାର କର୍ମୀମାନଙ୍କର ଅନିଚ୍ଛା ସତ୍ତ୍ୱେ )। ନିଜେ ଜଣେ ସୁଲେଖକ ହୋଇ ମଧ୍ୟ ସେ ନିଜକୁ ସେଇ କ୍ଷେତ୍ରରେ କେବେ project କରିନାହାନ୍ତି । ଛୋଟରୁ ବଡ଼ ସାହିତ୍ୟକାର ସମସ୍ତଙ୍କ ପାଇଁ ତାଙ୍କର ସହାନୁଭୂତି, ପ୍ରଶଂସା ଓ ଶ୍ରଦ୍ଧା ଥିଲା । ସଂଗୀତାନୁରାଗୀ ଥିଲେ ସେ ।

ବ୍ୟବସାୟ କ୍ଷେତ୍ର ପରି ବ୍ୟକ୍ତିଗତ–ପାରିବାରିକ ଜୀବନରେ ମଧ୍ୟ ସେ ଥିଲେ ଦୁଃସାହସୀ । ତାଙ୍କର ସଂଘର୍ଷମୟ ଜୀବନ ବୃତ୍ତାନ୍ତ ଲେଖିଲେ ଗ୍ରନ୍ଥଟିଏ ହେବ । ଜନ୍ମରୁ ବିକଳାଙ୍ଗ ଝିଅର ଲାଳନପାଳନ (ବର୍ତ୍ତମାନ ତାକୁ ୨୩ ବର୍ଷ ହେବ ବୋଧହୁଏ) ଛଡ଼ା ପ୍ରେସ୍ ଉପରେ କ୍ରମବର୍ଦ୍ଧିଷ୍ଣୁ ଋଣର ବୋଝ, ନିଜର ବାର୍ଦ୍ଧକ୍ୟ ଜନିତ ଦୋହଲା ସ୍ୱାସ୍ଥ୍ୟ ଇତ୍ୟାଦି ବହୁ ପ୍ରତିକୂଳ ପରିସ୍ଥିତିର ମୁକାବିଲା କରି ଚାଲିଥିଲେ ସେ । x x x x x

ଠିକ୍ ସେତିକିବେଳେ ତାଙ୍କୁ ଓ ଭାଉଜଙ୍କୁ ଦିନେ ନେଇ ଯାଇଥିଲି ଝିଣ୍ଟି ଶାସନରେ ଥିବା ଅଚ୍ୟୁତାନନ୍ଦ ଆଶ୍ରମକୁ । ସେଠାରେ ପୋଥି ଜରିଆରେ କଥା କହୁଥିବା ଅଚ୍ୟୁତାନନ୍ଦଙ୍କର ଅମର ଆତ୍ମାଙ୍କ ସଂସ୍ପର୍ଶରେ ଆସିଲେ ଭାଇନା । ତାଙ୍କର ପ୍ରତ୍ୟେକଟି ପ୍ରଶ୍ନର ଉତ୍ତର ସେ ପାଇଲେ ! ଶାନ୍ତିଲାଭ କଲେ । ମାତ୍ର ୩–୪ ମାସ ଭିତରେ ନିର୍ଦ୍ଦେଶିତ ପୂଜାବିଧି, ମନ୍ତ୍ର ଓ ଧ୍ୟାନ ଇତ୍ୟାଦି ଆଚରଣ କଲାପରେ ତାଙ୍କ ଭିତରେ ବଞ୍ଚିବା ପାଇଁ ଅଧିକ ଉଦ୍ୟମ ତଥା ସଂଗ୍ରାମ କରିବା ପାଇଁ ଉଦ୍ଦୀପନା ଜାଗ୍ରତ ହେଲା । ତାଙ୍କର ସମସ୍ତ ପରିବାର ଉପରେ ଏହାର ପ୍ରଭାବ ପଡ଼ିଲା । ପ୍ରେସ୍‌ର ଭାଗ୍ୟ ମଧ୍ୟ ବଦଳିବାକୁ ଲାଗିଲା । 'ଯୋଗାଯୋଗ' ଉତ୍ତମ ହେଲା । ମହାପୁରୁଷଙ୍କର ଆଶୀର୍ବାଦ ଲାଭ କଲେ ଭାଇନା,

ଭାଉଜ, ଟୁଟୁ, ସାନବୋହୂ ଓ ପିଲାମାନେ । ରୋଗ ବ୍ୟାଧି ସବୁ ଉଭେଇଗଲା । ଶୃଙ୍ଖଳିତ ଜୀବନଯାପନ କଲେ ଭାଇନା । ଆଶ୍ରମର ସମସ୍ତ ଛପେଇ କାମ କରି ଚ୍ଲିଲା କ୍ୱାଲିଟି ପ୍ରେସ୍ । ପଇସା ମିଳୁ ନ ମିଳୁ । ଆଶ୍ରମରେ ଭଜନ ଗାନବେଳେ ତନ୍ମୟ ହୋଇ ଯାଉଥିଲେ ସେ । ଆଶ୍ରମ ପାଇଁ ପ୍ରାଣ ଦେବାକୁ ପ୍ରସ୍ତୁତ ଥିଲେ । ସେହିଦିନଠାରୁ ବୟସରେ ମୋ'ଠାରୁ ଏତେ ବଡ଼ ହୋଇ ମଧ୍ୟ ସେ କହୁଥିଲେ "ଶାନ୍ତି ଫେରି ପାଇବାରେ ଶାନ୍ତନୁ ମୋର ଗୁରୁ ।" ନିର୍ମଳ ଓ ସରଳ ମନ ଥିଲା ତାଙ୍କର ।

ମୃତ୍ୟୁର ମାତ୍ର ଏକମାସ ପୂର୍ବରୁ ଦିନେ ଘଟଣାଚକ୍ରରେ ମୋ ଘରେ ପାଦ ପଡ଼ିଲା ଦୁହିଁଙ୍କର । ମୋ ସ୍ତ୍ରୀଙ୍କ ପାଖରେ ଭାଉଜଙ୍କର ଭୂରି ଭୂରି ପ୍ରଶଂସା (ସେ ହିଁ ମୋର ବଞ୍ଚିବାର ଏକମାତ୍ର ପ୍ରେରଣା ଓ ଭରସା, କେତେ ଦୁଃଖ ନିଭେଇଚି ମୋ ପାଇଁ, ହତାଶ କେବେ ହୋଇନାହିଁ । x x x x x) କଥାଛଳରେ କେତେଥର କହିଚନ୍ତି "ମୋର ଦୁଇଟି ସ୍ତ୍ରୀ ଅର୍ଥାତ୍ ଗୋଟିଏ ମୋ ନିଜ ସ୍ତ୍ରୀ ଆଉ ଅନ୍ୟ ଜଣକ ମାଇତି" । ସେହି ଆଜୀବନ ବନ୍ଧୁ, ଭାଇ, ସହକାରୀ, ସହଯାତ୍ରୀ ମାଇତିବାବୁଙ୍କୁ ୧୯୭୫ରେ କଟକରେ ବାହା କରାଇଥିଲେ ଭାଇନା ସମସ୍ତ ଖର୍ଚ୍ଚ ବହନ କରି । ସବୁବେଳେ ପାଖେ ପାଖେ ଥାଆନ୍ତି ସେଇ ଚରିତ୍ରଟି, ଦୁଃଖରେ ଓ ସୁଖରେ । କିନ୍ତୁ ଭାଗ୍ୟର କି ବିଡ଼ମ୍ବନା ? ମୃତ୍ୟୁର ମାତ୍ର ୫-୬ ଦିନ ପୂର୍ବରୁ ସେ ଓ ଭାଉଜ ଯେତେବେଳେ ଅଚ୍ୟୁତାନନ୍ଦ ଆଶ୍ରମର 'ଚକ୍ରଗୃହ' ମଧ୍ୟରେ ପ୍ରଶ୍ନ କଲେ (କେବଳ ମନେ ମନେ , ଲେଖିବାକୁ ବା କହିବାକୁ ପଡ଼େନା), ସେତେବେଳେ ପବିତ୍ର ପୋଥିରୁ ଉତ୍ତର ଆସିଲା "ପ୍ରଶ୍ନକର୍ତ୍ତାଙ୍କର ଦୁର୍ଦ୍ଦିନର ତଥା ସମସ୍ତ ଯନ୍ତ୍ରଣାର ପରିସମାପ୍ତି ଘଟିଛି, ସେ ବର୍ତ୍ତମାନ ଏ ସବୁଥିରୁ ମୁକ୍ତ ହୋଇଯିବେ" । ପ୍ରକୃତରେ ତାହାହିଁ ହେଲା । ହାଏରେ ଭାଗ୍ୟ । ଯେଉଁ ମାଇତି ବାବୁଙ୍କର ଅକାଳ ମୃତ୍ୟୁରେ ବ୍ୟଥିତ ହୋଇ ଭାଇନା ପିଲାଙ୍କ ପରି ଦିନରାତି କାନ୍ଦୁଥିଲେ (ଭୋର୍‌ରୁ ହଠାତ୍ ଉଠି ବୋହୂକୁ କହୁଥିଲେ ମାଇତି ଆସିଚି, ତା ପାଇଁ ଚ୍' ଆଣ) ସେଇ ମାଇତିବାବୁଙ୍କର ଏକାଦଶାହ ଦିନ ହିଁ ବିନା କଷ୍ଟରେ, ଶୋଇଥିବା ଅବସ୍ଥାରେ, ଭାଇନା ଚ୍ଲିଗଲେ । ସେହିଦିନ ସଂଧ୍ୟାରେ ପ୍ରେସ୍‌ରେ ମାଇତି ପାଇଁ ନିଜେ ଆୟୋଜନ କରିଥିବା "ମହାପ୍ରସାଦ ସେବନ" ରେ ଯୋଗଦେଇ ପାରିଲେନି । x x x x x

ଆଜି ଭାଇନାଙ୍କର ସ୍ୱପ୍ନର "କ୍ୱାଲିଟି ପ୍ରେସ୍" ଓ "ଦିବ୍ୟ ମିଡିଆର" ଭବିଷ୍ୟତ ଭାଉଜ, ଅସୀମ ଦା', ହରିମିଶ୍ର, ଟୁଟୁ, ସରୋଜ, ତ୍ରିପାଠୀ, ବସ୍ତିଆ, ମିତ୍ର ଓ ଅନ୍ୟାନ୍ୟ ନିଷ୍ଠାବାନ୍ ଅନୁଗତ କର୍ମୀମାନଙ୍କର ଉଦ୍ୟମ ଓ ନିଷ୍ଠା ଉପରେ ନିର୍ଭର କରେ । ଜଗନ୍ନାଥେ ସେମାନଙ୍କୁ ଶକ୍ତି ଓ ପ୍ରେରଣା ଅବଶ୍ୟ ଦେବେ । x x x x x

x x x x ସେଦିନ ଆମେ ସବୁ ଭାଇନାଙ୍କୁ କୋକେଇରେ ବୋହିନେଇ ସତ୍ୟନଗର ଶ୍ମଶାନରେ ଗାଧୋଇ ପାଧୋଇ ନୂଆବସ୍ତ୍ର ପିନ୍ଧାଇ ଦେଲାପରେ କି ଶାନ୍ତ, ନିର୍ଲିପ୍ତ, ଧ୍ୟାନମଗ୍ନ ଦେଖାଯାଉଥିଲା ତାଙ୍କର ଚେହେରା । ଭାଇନାଙ୍କର ଆଜୀବନ ଘନିଷ୍ଠତମ ବନ୍ଧୁ ସୁଖଦୁଃଖର

ସାଥୀ ତଥା ପାଣି ପରିବାରର ବିଶିଷ୍ଟ ସଦସ୍ୟ ( ପିଲାମାନଙ୍କର ଆଦରର ମାମୁଁ) ଡାକ୍ତର ଜଗନ୍ନାଥ ମହାପାତ୍ର ମୁଖାଗ୍ନି ପୂର୍ବରୁ ମୋ କାନରେ କହିଲେ "ଦାମୀ ସିଗାରେଟ୍‌ଟାଏ ଅଛି?" ମୁଁ ସାଙ୍ଗେ ସାଙ୍ଗେ କାଢ଼ିଦେଲି । ତା'ପରେ ଦେଖିଲି ଜଗନ୍ନାଥ ନିଜ ପକେଟରୁ ଗୋଟିଏ ନିପ୍ ବିଦେଶୀ ମଦ ବାହାର କରି ସିଗାରେଟ୍‌ରେ ନିଆଁ ଧରାଇ 'ଜୁଇ' ପାଖକୁ ଯାଇ ଚିତା ଉପରେ ଶୋଇଥିବା ଭାଇନାଙ୍କ ପାଟିରେ ଢାଳିଲେ ଓ ସିଗାରେଟ୍‌ଟି ଓଠ ଉପରେ ରଖି କାନ୍ଦି କାନ୍ଦି କହିଲେ, "ଏସବୁ ଛାଡ଼ିଦେଇ କିଛି ଲାଭ ହେଲାନି ବୋଲି ଭାବିବୁନି । ମୋତେ ଯାହା କରିବାକୁ କହିଥିଲୁ ତା କଲି । ପୁଣ୍ୟ ତୋର ପାପ ଭାଗଟା ମୋର x x x x ।"

ହଠାତ୍ ମନେପଡ଼ିଲା ସେହିଦିନ ସକାଳର କଥା । ଦେବ (ମନମୋହନ ପଟ୍ଟନାୟକଙ୍କ ପୁଅ ) କହୁଥିଲା "ମୋ ବାପାଙ୍କର ଅସୁସ୍ଥତା କଥା ଶୁଣି ହଠାତ୍ ଗତକାଲି ରାତିରେ ବାପାଙ୍କୁ ଦେଖିବାକୁ ଆସିଲେ, ସମବେଦନା ଜଣେଇଲେ । ମୁଁ ତାଙ୍କୁ ଘରକୁ ଛାଡିବାକୁ ଗଲାବେଳେ, ହଠାତ୍ ଗୋଟାଏ ଜାଗାରେ ଗାଡ଼ି ଅଟକାଇ କହିଲେ ହଇରେ ଗୁନିଆ, ଆଜି ହଠାତ୍ କାହିଁକି ଟିକେ ପିଇବା ପାଇଁ ଇଚ୍ଛା ହେଉଛି ? ଟିକେ ପିଇଦେବି କିରେ ? ମୁଁ ତାଙ୍କୁ ବୁଝାଇ ସୁଝାଇ ଘରେ ଆଣି ଛାଡ଼ିଦେଲି । ବିଦାୟ ନେବାବେଳେ କହିଲେ ଜଗନ୍ନାଥେ କରନ୍ତୁ ବାପାଙ୍କୁ ଭଲରେ ଭଲରେ ଦିଲ୍ଲୀକୁ ନେଇ ଯା ଆଉ ସୁସ୍ଥ କରାଇ ଫେରିଆ x x x x x x ।"

ତା'ହେଲେ କଂଣ ଆଗଦିନ ରାତିରୁ ତାଙ୍କର ସେଭଳି କିଛି Premonition ହୋଇଥିଲା ? ସେ କାହିଁକି ସରୋଜକୁ ବାରମ୍ବାର ତାଗିଦ୍ କଲେ ଯେ କାଲି ଦିନଟା ଭିତରେ ସମାବେଶର ସେପ୍ଟେମ୍ବର ସଂଖ୍ୟା ଛପା ହୋଇଯିବା ଦରକାର ( ସେ ନିଜେ କିଛି ବିଜ୍ଞାପନର ଓ ଲେଖା ଇତ୍ୟାଦିର ଫର୍ମା ଦେଖିଲେ ରାତିରେ )? ନା, ମାଇତିର ଆତ୍ମା ତାଙ୍କୁ ସାଙ୍ଗରେ ନେଇଯିବା ପାଇଁ ଘର ଦୁଆରମୁହଁକୁ ଆସି ଯାଇଥିଲା x x x x x x ?

ତେଣୁ ହେ ଜଗଦୀଶବାବୁ, ହେ ଜଗଦୀଶ ଭାଇନା, ହେ ଭାଇନା, ହେ ସମାଜସେବୀ, ସାମ୍ବାଦିକ, 'ବସୁଧୈବ କୁଟୁମ୍ବକମ୍' ବିଶ୍ୱାସୀ, ପାଣି ପରି ନିର୍ମଳ, ପରିବାରପ୍ରେମୀ, ସାହିତ୍ୟ ସଂସ୍କୃତିପ୍ରେମୀ, ସ୍ୱାଭିମାନୀ ନାଗରିକ, ବନ୍ଧୁବତ୍ସଳ, ଗରିବର ବନ୍ଧୁ ଏବଂ ସର୍ବୋପରି ଅଚ୍ୟୁତାନନ୍ଦ ଆଶ୍ରିତ ମହାନାତ୍ମା !

* ତୁମେ କେବେ ଟୁଟୁର ପୁଅ ହୋଇ ପୁଣି ଜନ୍ମ ହେବ ?
* ତୁମେ ଯେଉଁ ଲୋକ'ରେ ଥାଅ ସୁଖରେ ଥାଅ
* ତୁମକୁ କୋଟି କୋଟି ନମସ୍କାର ।



# ସ୍ନେହୀ ବ୍ୟକ୍ତିଟିଏ

## ନୃସିଂହଚରଣ ପଣ୍ଡା

ମୁଁ ଶଯ୍ୟାଶାୟୀ ଥିଲି । ଦେହପୀଡ଼ା ବାଧୁଥିଲା । ମୋ ସାନ ନାତୁଣୀ ସୋମା ( ଚ୍ୱରି ବରଷର ଝିଅଟିଏ) ମୋ ପାଖକୁ ଆସିଲା, କହିଲା : "ଜେଜେବାପା, ତମର ଜଣେ ସାଙ୍ଗ ମରିଗଲେ ।" କିଛି ସମୟ ପରେ ମୋ'ର ମଝିଆଁ ପୁଅ ବିକାଶ ଆସି କହିଲା, "ଜଗଦୀଶ ପାଣି ମଉସା ଚ୍ୱଲିଗଲେ" ।

ବିଦ୍ୟୁତ୍ ଆଘାତ ଲାଗିଲେ ଯେମିତି ହୁଏ, ମୋ ମନ ସେମିତି ହୋଇଥିଲା । ମୁଁ ଉପରକୁ ଚ୍ୱହିଁ ଶୋଇଥିଲି । ମୋତେ ଜଣାପଡ଼ିଲା, ସତେ ଯେମିତି ଓଡ଼ିଆ–ସାହିତ୍ୟ–ଆକାଶରୁ ତାରାମାନେ ଗୋଟିକ ପରେ ଗୋଟିଏ ଖସି ଯାଉଛନ୍ତି । ଖସନ୍ତି ଉପରୁ ତଳକୁ । କିନ୍ତୁ ଏମାନେ ତଳୁ ଉପରକୁ ଉଠୁଛନ୍ତି, ଉଠି ପରମାତ୍ମାଙ୍କ ଭିତରେ ଲୀନ ହୋଇ ଯାଉଛନ୍ତି । ସେଦିନ ଜଗଦୀଶବାବୁଙ୍କୁ ମୁଁ ସେ'ଯା ଦେଖିଲି । ସେ ଉର୍ଦ୍ଧ୍ୱଗତିରେ ଉଠିଗଲେ; ମୋ'ର ଦୃଷ୍ଟିସୀମାର ଆରପାରିକୁ ଚ୍ୱଲିଗଲେ ।

ବହୁ ପୁରୁଣା କଥା ମନେ ପଡ଼ୁଛି । ଜଗଦୀଶବାବୁ ଖାରବେଳନଗରସ୍ଥ ଏକ ଭଡ଼ାଘରେ ସପରିବାର ରହୁଥିଲେ । ସେ ଭୁବନେଶ୍ୱରରେ ତାଙ୍କ ପ୍ରେସ୍ ଖୋଲିଥିଲେ । ଏତେ ବଡ଼ ପ୍ରେସ୍ ନଥିଲା । ମୋ ଭାଇର ବିବାହ ଉପଲକ୍ଷେ ନିମନ୍ତ୍ରଣପତ୍ର ଛପେଇବା ପାଇଁ ମୁଁ ଜଗଦୀଶ ବାବୁଙ୍କ ପାଖକୁ ଯାଇଥିଲି । ସେଇ ପ୍ରେସ୍‌କୁ ସେତେବେଳେ ଦେଖିଥିଲି । ସେଇ ପ୍ରେସ୍‌କୁ ଆଜି ଦେଖୁଛି । ଆଜି ତାହା ଏକ ଅତ୍ୟାଧୁନିକ ପ୍ରେସ୍ । ଜଗଦୀଶବାବୁ ଉଚ୍ଚାଭିଳାଷୀ ଥିଲେ । ନିଜର କାର୍ଯ୍ୟରେ ତାଙ୍କର ନିଷ୍ଠା ଥିଲା, ଶ୍ରଦ୍ଧା ଥିଲା । ସେହି ନିଷ୍ଠା ଓ ଶ୍ରଦ୍ଧା ବଳରେ ସେ ଏତେ ଭଲ ପ୍ରେସ୍‌ଟିଏ ଗଢ଼ିପାରିଥିଲେ । ଅର୍ଥାଭାବ ତାଙ୍କର ଉଦ୍ୟମକୁ ଖର୍ବ କରିପାରି ନଥିଲା ।

ଓଡ଼ିଶା ପଶୁଚିକିତ୍ସା ମହାବିଦ୍ୟାଳୟର ରଜତ ଜୟନ୍ତୀ ଉତ୍ସବ ପାଇଁ ଗୋଟିଏ ସ୍ମରଣିକା ପ୍ରକାଶିତ ହୋଇଥିଲା । ମୁଁ ସେହି ସ୍ମରଣିକାର ସମ୍ପାଦକ ଥିଲି । ବିଶ୍ୱବିଦ୍ୟାଳୟ ସେଥିପାଇଁ କୌଣସି ଅନୁଦାନ ଦେଇନଥିଲେ । ବିଜ୍ଞାପନ–ଆୟରୁ ତାହା ମୁଦ୍ରିତ ହୋଇଥିଲା । କିନ୍ତୁ ବିଜ୍ଞାପନ–ଆୟ ଅର୍ଥ–ଅଧିକାରୀଙ୍କ ପାଖରେ ସିଧା ଜମା ହେଉଥିଲା । ବିଜ୍ଞାପନ–ଶୁଳ୍କ ସ୍ମରଣିକା ଛପେଇବାର ଦୁଇ–ତିନି ମାସ ପରେ ମିଳିଲା । ଏହିପରି ଅବସ୍ଥାରେ କଉଡ଼ିଟିଏ ନଥାଇ ମୁଁ ସ୍ମରଣିକାକୁ ପ୍ରସ୍ତୁତ କରେଇଲି । ମନେ ମନେ ଭାବିଲି, "କା ପାଖକୁ ଯିବି ?" ହଠାତ୍ ମୁଣ୍ଡକୁ ଢୁକିଲା, "ଜଗଦୀଶ ପାଣିଙ୍କ ପାଖକୁ ଗଲେ ସବୁ

ସୁବିଧାରେ ହୋଇଯିବ।" ମୁଁ ସେ'ଯା କଲି। ସେ ସଦୟ ରାଜି ହେଲେ। ସ୍ମରଣିକା ପ୍ରକାଶିତ ହେଲା। ଭଲ ସ୍ମରଣିକା ଥିଲା। ସ୍ମରଣିକା ଛପାହବା ପରେ ଏକବର୍ଷ ବିତିଗଲା। କ୍ୱାଲିଟି ପ୍ରେସ୍‌ର ପ୍ରାପ୍ୟ ଦିଆହେଲା ନାହିଁ। ଅର୍ଥ–ଅଧିକାରୀଙ୍କ ଅଫିସରେ ଜିରାରୁ–ଶିରା ବାହାର କରାହେଲା। ବର୍ଷକ ପରେ ମୁଁ କ୍ୱାଲିଟି ପ୍ରେସ୍‌ରୁ ଋଣମୁକ୍ତ ହେଲି। ଏତେ ବିଳମ୍ବ ଘଟିଲେ ସୁଦ୍ଧା ଜଗଦୀଶବାବୁ ମୋତେ କେବେ ହେଲେ ପଇସା ମାଗିନଥିଲେ। ସତେ କ'ଣ ମୁଁ ତାଙ୍କ ପାଖରୁ ଋଣମୁକ୍ତ ହେଲି ? ହେଇନାହିଁ।

ଜଗଦୀଶବାବୁ ଜଣେ ନିଛକ ସାହିତ୍ୟାନୁରାଗୀ ଥିଲେ। "ସମାବେଶ" ସାହିତ୍ୟ ପତ୍ରିକାର ସେ ପ୍ରତିଷ୍ଠାତା ତଥା ସମ୍ପାଦକ ଥିଲେ। ଉଚ୍ଚକୋଟୀର ଲେଖା ପତ୍ରିକାରେ ପ୍ରକାଶିତ ହୋଇ ଆସୁଛି। ଏଥିରେ ବର୍ଣ୍ଣାଶୁଦ୍ଧି ନଥାଏ। କେତେକ ସାହିତ୍ୟିକ ସାକ୍ଷାତ୍କାରରେ ମୁଁ ମୋ'ର ମନ୍ତବ୍ୟ ଦେଇଛି : "ଓଡ଼ିଆ ସାହିତ୍ୟ ପତ୍ରିକାମାନଙ୍କ ଭିତରେ 'ସମାବେଶ' ସର୍ବଶ୍ରେଷ୍ଠ।" ଜଗଦୀଶବାବୁ ପତ୍ରିକାଟିକୁ ବ୍ୟାବସାୟିକ ଦୃଷ୍ଟିରୁ ଛପଉ ନଥିଲେ। କାରଣ ଏହି ପତ୍ରିକାକୁ ଛପେଇବାରେ ବୋଧହୁଏ ତାଙ୍କୁ କ୍ଷତି ସହିବାକୁ ପଡୁଥିଲା। ଜଗଦୀଶବାବୁଙ୍କର ସାହିତ୍ୟ ପ୍ରତି ପ୍ରଗାଢ଼ ଅନୁରାଗ ଥିଲା ଏବଂ କେବଳ ସେହି କାରଣରୁ ସେ ମଶାଲଟିକୁ ହାତରେ ଧରି ଧାବମାନ ଥିଲେ।

ଇଂରାଜୀ ଏବଂ ଓଡ଼ିଆରେ ମୁଁ କେତେକ ବହି ଲେଖେ, ଯେଉଁଥିପାଇଁ ମୋତେ ଅନବରତ ଗୋଟିଏ ଦିଗରେ ଚିନ୍ତା କରିବାକୁ ପଡ଼ିଥାଏ। ଏପରି ହେବା ଦ୍ୱାରା ପତ୍ରିକାରେ ମୁଁ ବେଶୀ ସଂଖ୍ୟାରେ ଲେଖା ଦେଇପାରେ ନାହିଁ। ଜଗଦୀଶବାବୁ ତାଙ୍କ ପତ୍ରିକା ପାଇଁ ଗପ ଲେଖିବା ସକାଶେ ମୋତେ ଅନେକବାର ଅନୁରୋଧ କରିଛନ୍ତି। କେତେ ଥର ଅନୁରୋଧ ପାଇସାରିଲା ପରେ ମୁଁ ନିଜକୁ ଲଜ୍‌ଜିତ ମନେକରେ। ଗପଟିଏ ପଠେଇ ଦିଏ।

ଜଗଦୀଶବାବୁ ମେଳାପି ମଣିଷଟିଏ ଥିଲେ। ସେ ସାହିତ୍ୟିକମାନଙ୍କର ବନ୍ଧୁ, ରାଜନୈତିକ ଲୋକଙ୍କର ବନ୍ଧୁ, ପ୍ରଶାସନିକ ବ୍ୟକ୍ତିମାନଙ୍କର ବନ୍ଧୁ, ସାମ୍ବାଦିକମାନଙ୍କର ବନ୍ଧୁ, ଏବଂ ସବୁରିଙ୍କର ବନ୍ଧୁ ଥିଲେ। ସ୍ନେହୀ ବ୍ୟକ୍ତିଟିଏ। କଥାରେ, ବ୍ୟବହାରରେ ସମସ୍ତଙ୍କ ପ୍ରତି ତାଙ୍କର ସ୍ନେହ ଥିଲା।

ତାଙ୍କର ବିୟୋଗରେ ଆମେ ବହୁତ କିଛି ହରେଇ ବସିଛୁ। ମନର ବେଦନା କେବେ ଯେ ଉପଶାନ୍ତ ହେବ, ତାକୁ ଆଜି କଳି ହେଉନାହିଁ।

ଜଗଦୀଶବାବୁଙ୍କର ଆତ୍ମାର ସଦ୍‌ଗତି ହେଉ। ମହତ୍ ଉଦ୍ଦେଶ୍ୟ ନେଇ ସେ ଯେଉଁ ଯେଉଁ କାର୍ଯ୍ୟ କରିଥିଲେ, ସେହି ସେହି କାର୍ଯ୍ୟର ସମୃଦ୍ଧି ତଥା ଅଗ୍ରଗତି ପାଇଁ ତାଙ୍କର ଦାୟାଦମାନେ ପ୍ରଣୋଦିତ ହୁଅନ୍ତୁ।



# ଡାକ୍ତର, ତୁ କେଡ଼େ ସୁନ୍ଦର

ଜଗଦୀଶ, କେତେ ରାତି ଅନିଦ୍ରା ହୋଇ କାହା ଏକାଦଶାହ ପାଇଁ ତୁ ସ୍ମରଣିକା ନ କାଢ଼ିଛୁ ? ଆଜି ତୋ ପାଇଁ ଏମିତି ଲେଖିବାକୁ ହେବ, ତା ପୁଣି ତୋ ଏକାଦଶାହରେ ଛପା ହେବ, ଭାବିଲା ବେଳକୁ କି କଷ୍ଟ ଲାଗୁଛି ମୁଁ କଳିପାରୁନି, ତୁ ମୋଠୁ ନିହାତି ଦଶ ବାର ବର୍ଷ ବଡ଼। କିନ୍ତୁ ମୁଁ ତତେ 'ତୁ' ବୋଲି ସମ୍ବୋଧନ କରେ। ଯେତେ ଥଟ୍ଟା କଲେ, ଗାଳି ଦେଲେ ବି ତୁ ହସି ଦେଇ କହୁ "ମୋର ତ ଉପରେ ଜଗା, ତଳେ ଜଗା" ତୁ କୌଣସି ପରିସ୍ଥିତିରେ ପଡ଼ି ଅତି emotional ହୋଇପଡିଲେ ମୁଁ କହେ ତୁ ଗୋଟାଏ "inspired lidiot" ସେ ସବୁ ପରିହାସର କଥା ଏତେ ଶୀଘ୍ର କେମିତି ସତ ହୋଇଗଲା !

ଟୁଟୁ ୨ ତାରିଖ ଭୋର୍ ୫ଟା ବେଳେ ଫୋନ୍ କଲା "ମାମୁଁ, ଚଞ୍ଚଳ ଆସ, ବାପା ବୋଧେ ଆଉ ନାହାନ୍ତି," ମୁଁ ମିତୁକୁ ଧରି ଯାଇ ପହଞ୍ଚିଲି। ତୁ ଶୋଇ ପଡ଼ିଥିଲୁ ନିଶ୍ଚଳରେ। ସମସ୍ତେ ତତେ ଡାକୁଥିଲେ। ନାନୀ, ନମି, ଟୁଟୁ, ମାମା, ଭାଇ ସମସ୍ତେ। କିନ୍ତୁ ତୁ ଶୁଣୁ ନଥିଲୁ କାହା କଥା। ମୁଁ ସିନା ସମସ୍ତଙ୍କୁ ବୁଝାଇବାକୁ ଚେଷ୍ଟା କରୁଥିଲି। କିନ୍ତୁ ନିଜକୁ ବୁଝାଇପାରୁ ନଥିଲି। ଯାହାଙ୍କୁ ଫୋନ୍‌ରେ କହିଲି ସମସ୍ତେ ଆସିଲେ। ତୋ'ଘର ଓଡ଼ିଶାର ସାହିତ୍ୟ ରାଜନୀତି ଓ ସାମ୍ବାଦିକତା ସଂଗମ ପାଲଟିଗଲା। ଠିକ୍, ଯେମିତି ଭାଇ ବ୍ରତଘର ଦିନ ଗହଳି ହୋଇଥିଲା। କିନ୍ତୁ ତଦାରଖ କରିବାକୁ ତୁ ନଥିଲୁ।

ମନେଅଛି ତୋ ସହିତ ପ୍ରଥମ ପରିଚୟ ଦିନର କଥା। ପ୍ରାୟ କୋଡ଼ିଏ ବର୍ଷ ହେବ। ତୁ ସେତେବେଳର Housing Board ର Chairman ଶଶୀବାବୁଙ୍କ ଘରୁ ଫେରୁଥାଉ। ସାଂଗରେ ଥିଲେ ଡାକ୍ତର ରାଜୁ ଦାଶ (ହିଟ୍‌ଲର)। ସେ ପରିଚୟ କରାଇ ଦେଲେ। ମୁଁ ସମ୍ଭ୍ରମରେ ତତେ ନେତାଟିଏ ଭାବି ନମସ୍କାର କଲି। କିନ୍ତୁ ତୁ ନେତା ନଥିଲୁ, ନେତା ସୃଷ୍ଟି କଲାବାଲା ଥିଲୁ, ଏକଥା ଜାଣିଲି ପରବର୍ତ୍ତୀ ସମୟରେ। ତୋ ସାଙ୍ଗମାନଙ୍କ ଭିତରୁ ଅଖିଳ ପଟ୍ଟନାୟକ, ବାଳକୃଷ୍ଣ କାନୁନ୍‌ଗୋ, ସ୍ୱରୂପ ଜେନା, ବୀର ନନ୍ଦ, ମାଇତିବାବୁ କେତେ ଗଲେଣି। ତୋର ମନେ ଅଛି ନା ବାଳକୃଷ୍ଣବାବୁଙ୍କ post mortum ଦିନ କଥା। Anatomy Hall ଆଗ ଆମ୍ବ ଗଛ ମୂଳେ ବସି ତୁ ଖୁବ୍ କାନ୍ଦୁଥିଲୁ। ନିଜ ଅକ୍ତିଆର ଭିତରେ ନଥିଲୁ। ମୁଁ, ଗୋରାଭାଇନା ତତେ ଆଣି ଭୁବନେଶ୍ୱରରେ ଛାଡ଼ିଲୁ। ସେଦିନ ରାତି କଥା ଯେତେଥର ମନେପଡ଼ିଲେ ସେତେ ହସ ଲାଗେ। ସମାବେଶ ପ୍ରେସ୍‌ରେ ତୁମ ବଂଧୁମାନଙ୍କର ବୈଠକ ହେଲା। ତୋର ପୁଣି ସେଇ ଅସମ୍ଭାଳ ଅବସ୍ଥା। ତୋତେ କୌଣସିମତେ ନେଇ ୩ନମ୍ବର ଘରେ ଛାଡ଼ିବାକୁ ଗୋପାଳ ଭାଇନା ଓ ନଗେନ୍ ବେଉରିଆ

ମତେ କହିଲେ। ତୁ ମୋ ସ୍କୁଟର ପଛରେ ମୋ ମୁଣ୍ଡ ଉପରେ ଗୋଡ଼ ବୁଲେଇ ବସିଲୁ ଯେ ମୁଁ ଡରିଗଲି। ତଥାପି ତୁ ବସିଲୁ। ମୁଁ ତତେ ଘରକୁ ନେଲି। ନାନୀ ମତେ ବଡ଼ ବଡ଼ ଆଖିରେ ଚାହିଁଲେ। ଡାକ୍ତର ବୋଲି ବୋଧେ କିଛି କହିଲେନି। ବାଧ କଲେ ଖାଇବାକୁ, ତୁ ତ ଖାଲି ବୁଲାଉଥାଉ। ମୁଁ ଖାଇଲି, ହଠାତ୍ ତୁ ମତେ ଆଉଁଷି ପକାଇଲୁ ଆଉ କହିଲୁ, "ଡାକ୍ତର, ତୁ କେଡ଼େ ସୁନ୍ଦର"। ମତେ ଏତେ ଡର ମାଡ଼ିଲା ଯେ ମୁଁ କେମିତି ଘରକୁ ଆସିବି ବାଟ ପାଇଲିନି। ତତେ ଏକଥା ଯେତେ କହିଲେ ତୁ ମିଛ କଥା କହି ହସି ଉଡ଼େଇଦଉ।

ଆରେ, ତୋ ପୁଅ ବାହାଘରରେ ମୁଁ ବରଯାତ୍ରୀରେ ଯାଇଛି। ନାଚିଛି ବି ଖୁବ୍। ପୁଣି ତାକୁ କାନ୍ଧରେ ନେଇ ଶ୍ମଶାନ ବି ଯାଇଛି। ସେ ଥିଲେ ନା, ତୋ ପାଇଁ, ଆଉ ଏତେ ଦୁଃଖ କାହିଁକି ଆଆତ୍ମା କିରେ ? ଢେର୍ ଦିନ ଆମ ମେଳରେ ଥିଲୁ। କେତେ ଲୋକଙ୍କ ପାଇଁ ତୁ ଈଶ୍ୱରଙ୍କ ପାଖାପାଖି ମଣିଷଟିଏ ଥିଲୁ। ସେ ତ ଆଗରୁ ତଣ୍ଟି କାଟି ଚାଲିଗଲା। ତୋ ପରିବାର ସହିତ ମୋ ପରିବାରର ଯେଉଁ ସଂପର୍କ ଯୋଡ଼ା ହୋଇଥିଲା, ତା ଉପରେ ଗଣ୍ଠି ପଡିଚାଲିଲା  ଗୋଟିଏ ପରେ ଗୋଟିଏ। ତୁ ବି ଅଧିକାଂଶ ବେଳରେ ନିଜ ଦୁଃଖ କହି କାନ୍ଦୁ ବ୍ୟସ୍ତ ହେଉ। ମୁଁ ପୁଣି ତତେ ବୁଝାଏ ଗାଳିଦିଏ। ତୁ ଆକ୍ସିଡେଣ୍ଟ କରି କଷ୍ଟ ପାଉ। ମୁଁ ସିଲେଇ କରେ ବ୍ୟାଣ୍ଡେଜ କରେ। ତୁ ଲୁଚାଇ ନିଶା ବଟିକା ଖାଉ। ମୁଁ ତୋ ପକେଟ ଉଣ୍ଡାଳି ସେସବୁ କାଢି ଫିଙ୍ଗିଦିଏ। ଏ ଭିତରେ ତୋ ନାତି ନାତୁଣୀ ଦି'ଜଣ ମୋର ଜୁଇନ୍ଦାଗିରିରେ ମୋତେ ସାହଯ୍ୟ କରିବାକୁ ଆରମ୍ଭ କରିଦିଅନ୍ତି।

ମନେପଡୁଛି ଏଇ ମାସକ ତଳେ ଆମେ ସମସ୍ତେ ସାଙ୍ଗ ହୋଇ ତୋ ଗୁରୁଦେବଙ୍କ ଆଶ୍ରମ ଯାଇଥିଲେ। ବାଟସାରା କେତେ କହୁଥିଲୁ ମନ ଶାନ୍ତି ପାଇଁ ଆଶ୍ରମ ଆସିବା ନିହାତି ଦରକାର, ଏବେ ଆଉ ସେଇଠିକି ପଳେଇଗଲୁ କି ? ତତେ ପରା ବୁଝେଇଥିଲି ଯୁଆଡ଼େ ଯିବୁ ମତେ ସାଙ୍ଗରେ ନବୁ। ନହେଲେ କେଉଠି କାଳେ ତୋ କଛା ଖୋଲିଯିବ, ତୁ ଜାଣିପାରିବୁନି। ହେଲେ ତୁ ତ ଲଂଗଳା ହୋଇ ଚାଲିଗଲୁ। ମାଇଡି ଗଲାପରେ ଖିଆପିଆ ତ ଛାଡ଼ି ଦେଇଥିଲୁ। ମୁଁ ବି ଯାଇଥିଲି ତୋତେ ଦେଖିବାକୁ। କେତେ ବୁଝାଇଲି। ଏମିତି ନିଜକୁ କଷ୍ଟ ଦଉଛୁ କାହିଁକି ? ତୋର ଦାୟିତ୍ୱ ସରି ନଥିଲା। ମାତା ମୁହଁ ତୋର ମନେ ପଡ଼ିଲାନି ହଇରେ, ତୁ କେଡ଼େ ସ୍ୱାର୍ଥପର ହୋଇଗଲୁ କି ରେ ? ମୁଁ ତତେ ମଦ ପିଇବାକୁ ମନାକଲେ ପରା ସବୁବେଳେ ମତେ ଥଟ୍ଟା କରୁ। କହୁ' "ମଲାବେଳେ ବି ମୋ ପାଟିରେ ମଦଢାଳି ପୋଡ଼ିଦବୁ"। ମୋର ମନେ ନଥିଲା। ଟୁଟୁ ମନେପକେଇ ଦେଲା ସେ କଥା। ମୁଁ ତୋ ଉପରେ ମଦ ଢାଳିଛିରେ। କେମିତି ନିଶା ହେଲା କହିଲୁନି ତ ? ନିଜକୁ ସମ୍ଭାଳିବାକୁ ବେଶ୍ କଷ୍ଟ ହେଉଛି। ତୋର ବଂଧୁମାନେ ସମସ୍ତେ ଦେଖୁଥିଲେ, ତୁ ଜଳିଗଲୁ। ମୁଁ ଘରକୁ ଫେରିଲି। ଏଥର ରୋଗୀଦେଖାରେ ବ୍ୟସ୍ତ ରହି ତତେ ପାସୋରି

ଯିବି । କିନ୍ତୁ ସେ ନାନୀମ ! ଯିଏ ତୋ ଦାଉ ସହି ଦାନ୍ତ କାମୁଡ଼ି ସିନ୍ଦୂର ଟୋପାଟା ପାଇଁ ପଡି ରହିଥିଲା, ଶେଷରେ ତାକୁ ବି ପୋଛିଦେଲୁ । ସେ କେମିତି ଭୁଲିବ ? କାହା ମୁହଁ ଚ୍ହିଁ ତା ଦିନ ସରିବ? କ'ଣ କହିବି ତତେ ? ଭାଣ୍ଡ, ସ୍ୱାର୍ଥପର, ମୂର୍ଖ ନାଁ ନିର୍ବୁଦ୍ଧିଆ । ତୁ ପରା ଗୋଟାଏ ଅନୁଷ୍ଠାନ, କେମିତି ତତେ ସ୍ୱାର୍ଥପର କହିବି ? Out of the way ଯାଇ କାହାକୁ କି ସାହାଯ୍ୟ ନ କରିଛୁ ତୁ ? ମୋ ସମୁଦି ଉପରେ ନ ରାଗିବାକୁ ତୋର ଶେଷ ଅନୁରୋଧ ରଖିବି ତ? ସବୁ ଲେଖି ଚିଠି ଦବୁ । ତୁ ଯାଇ ସ୍ୱର୍ଗରେ ଆରାମରେ ରହିଲୁ । ଆମେ କ'ଣ ନିଆଁରେ ଏକ କରିଛୁ କି ? ଏଇଠି ପଡ଼ି ହନ୍ତସନ୍ତ ହଉଥିବୁ । ଶୁଣ, ସେଠି ମୋ ପାଇଁ ଗୋଟେ ଜାଗା ଠିକ୍ କରିଥିବୁ । ତୋ ବନ୍ଧୁମାନଙ୍କୁ ନେଇ ଆସର ଜମେଇଥିବୁ । ମୁଁ ଯାଇ ସେଠି ପହଞ୍ଚିବି । ବୈଠକ ପରେ ତତେ ନେଇ ଘରେ ଛାଡ଼ିବି । ତୁ ମତେ ଆଉଁଷିଦବୁ । କହିବୁ "ଡାକ୍ତର, ତୁ କେଡ଼େ ସୁନ୍ଦର !" ରହିଲି– ତୋ ଦେହପା' ଖବର ଲେଖି ଶୀଘ୍ର ଚିଠି ଦେବୁ ।

|| ଇତି ||

ତୋର ଶଳା

ଜଗା ଡାକ୍ତର

••••

*ଜାତସ୍ୟ ହି ଧ୍ରୁବୋ ମୃତ୍ୟୁର୍ଧ୍ରୁବଂ ଜନ୍ମ ମୃତସ୍ୟ ଚ ।*
*ତସ୍ମାଦପରିହାର୍ୟ୍ୟେଽର୍ଥେ ନ ତ୍ୱଂ ଶୋଚିତମର୍ହସି ॥*
*ଅବ୍ୟକ୍ତାଦୀନି ଭୂତାନି ବ୍ୟକ୍ତମଧ୍ୟାନି ଭାରତ ।*
*ଅବ୍ୟକ୍ତନିଧନାନ୍ୟେବ ତତ୍ର କା ପରିଦେବନା ॥*

# ଜଗଦୀଶ ଭାଇନା ଗ୍ଳିଗଲେ

## ଯୁଗଳ କିଶୋର ପଟ୍ଟନାୟକ

ସେପ୍ଟେମ୍ବର ଦୁଇ ଉଣେଇଶି ଚଉରାନବେ ଶୁକ୍ରବାର । ସେ ସମୟରେ ପ୍ରାୟ ମଧ୍ୟାହ୍ନ ବାରଟାରୁ ଉର୍ଦ୍ଧ୍ୱ ହେବ ହଠାତ୍ ଟେଲିଫୋନ୍‌ରେ ଖବର ଦେଲେ କ୍ଲାଲିଟି ପ୍ରେସ୍‌ରୁ ତ୍ରିପାଠୀବାବୁ । "ଆଜ୍ଞା ଜଗଦୀଶ ପାଣି ଗ୍ଳିଗଲେ" କିଛି ବୁଝିପାରିଲିନି ହଠାତ୍ ବାରମ୍ବାର ପଗ୍ଚରିବାରୁ ଖବର ପାଇଲି ମୋର ପରମ ଆତ୍ମୀୟ ଜଗଦୀଶ ପାଣି ଆଉ ଇହ ଜଗତରେ ନାହାନ୍ତି ।

ସହସା ଯାଇ ପହଞ୍ଚିଲି କ୍ଲାଲିଟି ପ୍ରେସ୍‌ରେ । ଉପର ମହଲାର ବାରଣ୍ଡାରେ ଏକ ଖଟିଆରେ ଶୋଇରହି ସେ ଚିରନିଦ୍ରା ଯାଇଥିଲେ । ଦେଖି ବିଶ୍ୱାସ ହେଲାନି ଯେ ସେ ମୃତ ।

ସବୁଦିନ ପରି ସେହି ନିରଳସ ମୁହଁଟି ସତେଜ ଦେଖାଯାଉଥିଲା ।

ଘରେ ବାହାରେ ପ୍ରବଳ ଜନ ସମାଗମ । ଶବ ଶୋଭାଯାତ୍ରା ପାଇଁ ସମସ୍ତ ପ୍ରକାର ଆୟୋଜନ ସରିଥାଏ ।

ଜଗଦୀଶବାବୁ ମୋର ଅତି ଆପଣାର ଥିଲେ । ମନ୍ତ୍ରୀ ଥିଲାବେଳେ ବି ମୁଁ ତାଙ୍କ ଘରକୁ ଯିବା ଆସିବା କରୁଥିଲି । ସେ ବି କେବେ କେବେ ସେକ୍ରେଟେରିଏଟ୍ ଆସି ସାକ୍ଷାତ କରୁଥିଲେ ।

ସମସ୍ୟାବହୁଳ ଜୀବନରେ ଯେତେବେଳେ ମୁଁ କିଛି ଦୁଶ୍ଚିନ୍ତାରେ ପଡ଼େ ଧାଇଁଯାଏ କ୍ଲାଲିଟି ପ୍ରେସ୍‌କୁ । ତାଙ୍କ ପାଖରେ ବସି– ରହି ବହୁପ୍ରକାରେ ଆଳାପ ଆଲୋଚନା ପରେ ମନଟା ଟିକିଏ ହାଲୁକା ଲାଗୁଥିଲା ।

ସେ ଥିଲେ ମୋର ଜଣେ ପରମ ହିତୈଷୀ । ସବୁବେଳେ ସେ ମତେ ତାଙ୍କ ସାନଭାଇ ଭଳି ସ୍ନେହ କରୁଥିଲେ ଓ ସମୟ ଉପଯୋଗୀ ପରାମର୍ଶ ଦେଉଥିଲେ । ଆତ୍ମୀୟତାରେ ତାଙ୍କର ଥିଲା ଅକପଟ ମମତା ।

ସେ ଥିଲେ ଜଣେ ଦକ୍ଷ ସଂଗଠକ । କଲିକତାରୁ ଆରମ୍ଭ କରି ଭୁବନେଶ୍ୱରଯାଏଁ ସେ ଦକ୍ଷତାର ସହିତ ତାଙ୍କର କର୍ତ୍ତବ୍ୟ ସାଧନ କରୁଥିଲେ ।

କଲିକତାରୁ ସେ "ସମାବେଶ" ପ୍ରତିକା ପ୍ରକାଶ କରି ସଫଳତା ହାସଲ କରିଥିଲେ । ସେଠାରେ ଥିଲାବେଳେ କଲିକତାସ୍ଥିତ ଓଡ଼ିଆମାନଙ୍କ ମଧ୍ୟରେ ସେ ଅତ୍ୟନ୍ତ ଲୋକପ୍ରିୟ ହୋଇପାରିଥିଲେ । ସେଠାରେ ଥିଲାବେଳେ ସେ ଦୈନିକ ପ୍ରଜାତନ୍ତ୍ରର କଲିକତା ପ୍ରତିନିଧି

କାର୍ଯ୍ୟ ଚଳାଉଥିଲେ। ପରେ ସେ କଟକ ବିହାରିବାଗସ୍ଥ "ଦୈନିକ ପ୍ରଜାତନ୍ତ୍ର"ର ଜେନେରାଲ ମ୍ୟାନେଜର ହୋଇ କାର୍ଯ୍ୟ ଚଳାଉଥିଲେ।

ଉତ୍କଳକେଶରୀ ଡଃ ହରେକୃଷ୍ଣ ମହତାବଙ୍କର ସେ ଥିଲେ ଅତ୍ୟନ୍ତ ଆତ୍ମୀୟ । ପ୍ରଜାତନ୍ତ୍ର କାଗଜକୁ ଅଧିକ ଲୋକପ୍ରିୟ କରିବାକୁ ସେ ସବୁବେଳେ ତତ୍ପର ଥିଲେ।

'ସମାବେଶ'କୁ କଲିକତାରୁ ଓଡ଼ିଶାକୁ ସ୍ଥାନାନ୍ତରିତ କରି ତାର ପୁନଃ ପ୍ରକାଶନ ଦାୟିତ୍ୱ ନେଇଥିଲେ। ଓଡ଼ିଶାରେ ଏକ ଆଧୁନିକ ମୁଦ୍ରଣ ଯନ୍ତ୍ର ସ୍ଥାପନ କରିବାକୁ ପ୍ରୟାସୀ ହୋଇ "କ୍ୱାଲିଟି ପ୍ରେସ୍"ର ପ୍ରତିଷ୍ଠା କରି ସେଥିରେ କେତେକାଂଶରେ ସଫଳ ହୋଇପାରିଥିଲେ।

"କ୍ୱାଲିଟି ପ୍ରେସ୍" ତାର ନାମକରଣର ସାର୍ଥକତା ବଜାୟ ରଖିଥିଲା। ତାଙ୍କରି ପ୍ରଗାଢ଼ ଚେଷ୍ଟାରେ "ସମାବେଶ" ନିୟମିତ ଭାବେ ପ୍ରତି ତିନି ମାସରେ ଆତ୍ମପ୍ରକାଶ କରୁଥିଲା।

ସେ ଥିଲେ ଅତ୍ୟନ୍ତ ଶାନ୍ତ, ଗମ୍ଭୀର ଓ ସହନଶୀଳ ବ୍ୟକ୍ତି। ବହୁ ଘାତ ପ୍ରତିଘାତରେ ଆଦୌ ସେ ବିଚଳିତ ହେଉନଥିଲେ। ଅତ୍ୟାଧୁନିକ ପ୍ରେସ୍ ସ୍ଥାପନ କରି, ଋଣଭାର ବଢ଼ି ଗ୍ଲଲିଥିଲେ ମଧ୍ୟ ସେ ଆଦୌ ଭାଙ୍ଗିପଡ଼ୁ ନଥିଲେ। ଯେକୌଣସି ଅସମ୍ଭବ କାର୍ଯ୍ୟରେ ହାତଦେଇ ସଫଳତା ହାସଲ କରିବାକୁ ସେ ଅତ୍ୟନ୍ତ ଶ୍ରେୟ ମନେ କରୁଥିଲେ।

ତାଙ୍କର ଜ୍ୟେଷ୍ଠପୁତ୍ରର ଅକାଳ ନିଧନ ତାଙ୍କୁ ଏକ ଶକ୍ତ ଧକ୍କା ଦେଇଥିଲା। ନିଜେ ହୃଦ୍‌ରୋଗୀ ଥାଇ ମଧ୍ୟ ସେ ପ୍ରତିଦିନ ବହୁ ଲୋକଙ୍କୁ ସାକ୍ଷାତ ଦେଇ ତାଙ୍କର ଦୁଃଖସୁଖରେ ଭାଗୀଦାର ହୋଇପାରୁଥିଲେ।

ସେ ଥିଲେ ସମସ୍ତଙ୍କର ଅତି ଆପଣାର। ସବୁ ଦଳର ରାଜନୈତିକ ନେତାଙ୍କ ସହ ତାଙ୍କର ବେଶ୍ ଭଲ ସଂପର୍କ ରହିଥିଲା।

ତାଙ୍କରି ଆକସ୍ମିକ ତିରୋଧାନ ଆଜି କେବଳ ମତେ କାହିଁକି ବହୁ ଲୋକଙ୍କୁ ମର୍ମାହତ କରିଛି।

ମୁଁ ଅନୁଭବ କରିଛି ମୋର ଜଣେ ବଡ଼ ଭାଇଙ୍କୁ ମୁଁ ଆଜି ହରାଇ ବସିଛି।

ସେ ଆଜି ଆଉ ନାହାନ୍ତି। ସେପ୍ଟେମ୍ବର ଦୁଇ ତାରିଖ ପ୍ରତ୍ୟୁଷରୁ ସେ ଆଉ ବିଛଣାରୁ ଉଠି ନାହାନ୍ତି।

ଭଗବାନ କରନ୍ତୁ, ତାଙ୍କରି ଅମର ଆତ୍ମା ସଦ୍‌ଗତି ପ୍ରାପ୍ତ ହେଉ।

••••

# ଅନୁଷ୍ଠାନଟିଏ ଗ୍ଳିଗଲା

## ଗୋପାଳ ମିଶ୍ର

କଲିକତା ବହୁବଜାର ଷ୍ଟ୍ରୀଟ୍‌ଠାରୁ ଆରମ୍ଭ କରି ହିଦାରାମ ବାନାର୍ଜୀ ଲେନ୍ ଏବଂ ଭୁବନେଶ୍ୱରର ଲେବର କଲୋନୀଠାରୁ ଖାରବେଳନଗର କଳ୍ପନା ପର୍ଯ୍ୟନ୍ତ ସୁଦୀର୍ଘ ୩୭।୩୮ ବର୍ଷର ଘନିଷ୍ଠ ସଂପର୍କ। ବହୁ ରାଗ ଅନୁରାଗ, ମାନ ଅଭିମାନ, ସ୍ନେହ ଶ୍ରଦ୍ଧାର ସ୍ମୃତିରେ ପରିପୂର୍ଣ୍ଣ।

ସେଦିନ ସକାଳେ ଜଗନ୍ନାଥ (ଡାକ୍ତର ବଂଧୁ) ଠାରୁ ଖବର ପାଇ ଯେତେବେଳେ ଦେବେନ୍ଦ୍ର (ଦେବେନ୍ଦ୍ର ମିଶ୍ର) ମତେ ଫୋନ୍‌ରେ ଖବର ଦେଲେ ବିଶ୍ୱାସ କରି ହେଲା ନାହିଁ ଯେ ଜଗଦୀଶ ଆଉ ନାହିଁ। ତାର ମରଶରୀରରେ ଫୁଲ ପେନ୍ଥାଟିଏ ଥୋଇଦେବା ବେଳେ ସବୁଗୁଡ଼ାକ ସ୍ମୃତି ଯେମିତି ଏକାବେଳେକେ ଜୀବନ୍ତ ହେବାପାଇଁ ପରସ୍ପର ସହିତ ରୀତିମତ ଯୁଦ୍ଧ ଆରମ୍ଭ କରିଦେଲେ। ଲେଖିବସିଲେ ପୋଥିଏ ହେବ।

କଲିକତା, ଭୁବନେଶ୍ୱର ଏବଂ ପ୍ରଜାତନ୍ତ୍ର–ସବୁଠି ଅନେକ ଘାଟରେ ଦିହେଁ ଏକାଠି ପାଣି ପିଇଛୁ। ଏପରି କି ମତେ ଓ ଜଗଦୀଶକୁ କେନ୍ଦ୍ର କରି ସେ ସମୟରେ ନିଆଁଖୁଣ୍ଟାରେ ସ୍ୱର୍ଗୀୟ ଗୋଦାବରୀଶ ମହାପାତ୍ର ଏକ ବ୍ୟଙ୍ଗ କବିତା ଲେଖିବା ପର୍ଯ୍ୟନ୍ତ କଥା ଯାଇଥିଲା।

ବ୍ୟକ୍ତିଗତ ଜୀବନରେ ଜଗଦୀଶର ବଂଧୁବତ୍ସଳତାର ପଟାନ୍ତର ନ ଥିଲା। ଆପଣାର କରିନେବାର ସେ ଥିଲା ଧୁରନ୍ଧର। ଥରେ ତା'ର ନିଷ୍କପଟ ବଂଧୁତାର ଫାଶରେ ଯିଏ ପଡ଼ିଛି ସବୁଦିନ ପାଇଁ ସେ ବଂଧା ହୋଇ ରହିଯାଇଛି। କେହି ଜଣେ ବଂଧୁ ଗ୍ଳିଗଲେ ଦିନ ଦିନ ଧରି ଅଖିଆ ଅପିଆ ଆଖିରୁ ଲୁହ ଗଡ଼ଉଥିବ। କିପରି ତାର ସ୍ମୃତି ରଖାଯାଇ ପାରିବ ସେଥିପାଇଁ ଆଗଭର ହୋଇ ମାତିଯିବ। ଅଖିଳବାବୁଙ୍କ (ଗାଳ୍ପିକ ଅଖିଳ ମୋହନ ପଟ୍ଟନାୟକ) ଆକସ୍ମିକ ବିୟୋଗ ପରେ ଯିଏ ତାକୁ ଦେଖିଛନ୍ତି ସେ ନିଶ୍ଚିତ ଭାବରେ ସ୍ୱୀକାର କରିବ ଜଗଦୀଶର ଭିତରଟା କ'ଣ ?

ଗୋଟିଏ କଥା ମନେପଡୁଛି। ମୋର ଏକମାତ୍ର ଝିଅର ବାହାଘର ବ୍ୟବସ୍ଥା ହେଉଥାଏ। ହଠାତ୍ ଆସି ପହଞ୍ଚିଗଲା। ଜିଦ୍ ଧରିଲା ବାହାଘର ଭୋଜି ପାଇଁ କଲିକତାରୁ ତା'ର ଜଣାଶୁଣା ଭଲ ରାଂଧୁଣିଆ ଦଳଟିଏ ଅଣାଯିବ। "ଆରେ ତୋର ତ ଗୋଟିଏ ବୋଲି ଝିଅ। ବାହାଘର ଧୁମ୍‌ଧାମ୍‌ରେ ହେବ"। ସେ ଏକଥା କହୁଥିବାବେଳେ ମତେ ଟିକିଏ ଅଦୁଆ ଲାଗୁଥାଏ। କିନ୍ତୁ ଚୁପ୍ ରହିଲି। ମୋର ମନେହେଲା ସେ ଯେପରି ବାପା ସମାନ ଗୋଟିଏ

ଭୂମିକା ଗ୍ରହଣ କରିବାକୁ ଆଗେଇ ଆସିଛନ୍ତି । ମନାକଲେ ତା ମନରେ ଲାଗିବ । ତାରି କଥା ରହିଲା । ସେ ନିଜେ ଯୋଗାଡ଼କରି କଲିକତାରୁ ରାଂଧୁଣିଆ ଦଳ ଅଣେଇଲା, ଅବଶ୍ୟ ବାହାଘର ଦିନର ଅଚାନକ ବାତ୍ୟା ଓ ବର୍ଷା ଯେଉଁ ପରିତାତି ସୃଷ୍ଟି କରିଥିଲା ତାହା ଭିନ୍ନ ପ୍ରସଂଗ ।

ମହତାବଙ୍କର ଖୁବ୍ ଅନୁରକ୍ତ ଥିଲା ଜଗଦୀଶ । ଥରେ ଯାଇ ମହତାବବାବୁଙ୍କୁ କହିଲା "ଗୋପାଳ ପାଇଁ ଗୋଟିଏ ସ୍କୁଟର ବନ୍ଦୋବସ୍ତ କରି ଦିଅନ୍ତୁ । ରିକ୍‌ସା ଓ ସାଇକେଲ୍‌ରେ ବୁଲି ରିପୋର୍ଟର୍ କାମ କରିବା ସମ୍ଭବ ନୁହେଁ ।" ଅବଶ୍ୟ ତା' ପ୍ରସ୍ତାବ ଚୂଡ଼ାନ୍ତ ରୂପରେଖ ନେବା ବେଳକୁ ମୁଁ ପ୍ରଜାତନ୍ତ୍ର ଛାଡ଼ି ପତ୍ରିକାରେ ଯୋଗଦେଇ ସାରିଥିଲି । ଏମିତି ଅନେକ କଥା ।

ଖାଲି ମଣିଷପରି ମଣିଷଟିଏ ନଥିଲା ଜଗଦୀଶ । ସେ ଥିଲା ଏକରକମ ଗୋଟିଏ ଅନୁଷ୍ଠାନ । ସାହିତ୍ୟ ପ୍ରତି ଆନ୍ତରିକ ଅନୁରାଗ ବଳରେ ଓଡ଼ିଶାର ସମଗ୍ର ସାହିତ୍ୟିକ ଓ ଲେଖକ ସଂପ୍ରଦାୟକୁ ବାଂଧି ରଖିଥିଲା "ସମାବେଶ"ର ଡୋରିରେ । ସେ ସଂପର୍କ ସଂପାଦକ–ଲେଖକର ସଂପର୍କ ନୁହେଁ । ପ୍ରତ୍ୟେକଙ୍କ ସହିତ ସୁଖଦୁଃଖ ବ୍ୟକ୍ତିଗତ ସଂପର୍କ । ବହୁ ରାଜନୈତିକ ନେତା ଓ ପଦସ୍ଥ ବ୍ୟକ୍ତି ତାର ଅତ୍ୟନ୍ତ ନିକଟତମ ଥିଲେ । କ୍ୱାଲିଟି ପ୍ରେସ୍ ଓ "ସମାବେଶ" ତାକୁ ଜଣେ ବ୍ୟବସାୟୀ ଭାବରେ ନୁହେଁ, ଗୋଟିଏ ଅନୁଷ୍ଠାନ ଭାବରେ ଠିଆ କରି ଦେଇଥିଲା । ବୋଧହୁଏ ତା' ନିଜର ଅଜାଣତରେ ।

ବ୍ୟକ୍ତିଗତ ଜୀବନରେ ଅନେକ ଦୁଃଖ ଭୋଗିଛି ଜଗଦୀଶ । ତା ଜାଗାରେ ଯେ କେହି ଥିଲେ ଭାଂଗି ପଡ଼ିଥାନ୍ତା । କିନ୍ତୁ ସମସ୍ତ ଯନ୍ତ୍ରଣା ଓ ଦୁଃଖ ତାର ବନ୍ଧୁବତ୍ସଳତାକୁ କ୍ଷୁଣ୍ଣ କରିପାରି ନଥିଲା । କଲିକତାଠାରୁ ଭୁବନେଶ୍ୱର ପର୍ଯ୍ୟନ୍ତ ମାଇତିବାବୁ କାୟା ସହିତ ଛାୟା ପରି ତା ସହିତ ଥିଲେ । ହଠାତ୍ ମାଇତିବାବୁ ଚାଲିଯିବାରେ ସେ ଅତ୍ୟନ୍ତ ମ୍ରିୟମାଣ ହୋଇପଡ଼ିଥିଲା । ତା'ର ଦିନ କେତେଟା ଭିତରେ ସେ ମଧ୍ୟ ଚାଲିଗଲା । ଯେମିତି ଦିହେଁ ଡକାଡକି ହୋଇ ଚାଲିଗଲେ ।

ବାସ୍ତବିକ୍ ଜଗଦୀଶର ବିୟୋଗରେ ଅନୁଷ୍ଠାନଟିଏ ଚାଲିଗଲା । ସାହିତ୍ୟିକ ସଂପ୍ରଦାୟର, ଅଗଣିତ ବଂଧୁଙ୍କର, ମାଳି ଶ୍ରମିକ ପରି ବହୁ ମୁଖାନଥିବା ଲୋକଙ୍କର । ଆଉ ଲେଖିବାକୁ କଲମ ଚଳୁନାହିଁ । ଶ୍ରୀମତୀ ପାଣି,, ପୁଅ ଟୁଟୁ ପରିବାର ତଥା କ୍ୱାଲିଟ୍ ପ୍ରେସ୍‌ର ସହକର୍ମୀମାନଙ୍କୁ ଜଗନ୍ନାଥ ଦମ୍ଭ ଦିଅନ୍ତୁ । ଆମ ଜଗନ୍ନାଥ (ଡାକ୍ତର ଜଗନ୍ନାଥ ମହାପାତ୍ର) ତ ମତେ କଥା ଦେଇଛି ସମାବେଶ ଓ କ୍ୱାଲିଟି ପ୍ରେସ୍‌କୁ ଦୃଢ଼ରୁ ଦୃଢ଼ତର କରି ବଂଚେଇ ରଖିବା ପାଇଁ ସମସ୍ତ ଉଦ୍ୟମ କରିବ ଯେପରି ବଂଧୁ– ବତ୍ସଳ ଅନୁଷ୍ଠାନ ଜଗଦୀଶର ସ୍ମୃତି ସବୁଦିନ ପାଇଁ ବଂଚିରହିବ ।

••••

# 'ସମାବେଶ'ର ମୃତ୍ୟୁ ନାଇ

## ପ୍ରଫେସର ନିତ୍ୟାନନ୍ଦ ଶତପଥି

ବଂଧୁ ଜଗଦୀଶଙ୍କ ମହାପ୍ରୟାଣ ତିଥି ଏତେ ଶୀଘ୍ର ସମାଗତ ହୋଇଯିବ ବୋଲି ମୁଁ ଭାବୁନଥିଲି। ସେଦିନ ସକାଳୁ ସକାଳୁ ଆମ ଓଡ଼ିଆ ବିଭାଗର ରିଡ଼ର ଡକ୍ଟର ଶ୍ରୀମତୀ ସଂଘମିତ୍ରା ମିଶ୍ର ଏ ଖବରଟି ଦେଲେ – ମୁଁ ପ୍ରଥମେ ବିଶ୍ୱାସ କରିପାରିଲି ନାହିଁ। କିଂତୁ ତାଙ୍କ ଥରିଲା ଥରିଲା କଂଠ ଓ କାନ୍ଦୁରା କାନ୍ଦୁରା ଉଚ୍ଚାରଣରୁ ଜାଣିପାରିଲି ବୋଧହୁଏ ସେ କାଳବେଳା ଉପସ୍ଥିତ ହୋଇଗଲା। ମୁଁ ତା ପୂର୍ବଦିନ ତାଙ୍କ ସହିତ ଟେଲିଫୋନ୍‌ରେ କଥା ହୋଇଥିଲି। ସେ ଟେଲିଫୋନ୍ ଧରିବା ମାତ୍ରେ ମୋତେ କହିଲେ– "ମାଇତିବାବୁ ଚାଲିଗଲେ, ମୋତେ ଆଉ କିଛି ଭଲ ଲାଗୁନାହିଁ"। ମୁଁ ସ୍ୱାଭାବିକ ଭାବେ ତାଙ୍କୁ ଆଶ୍ୱାସନା ଦେଇଥିଲି ଓ ଶେଷକୁ କହିଥିଲି "ଅନ୍ତତଃ ସମାବେଶ ପାଇଁ ଆପଣଙ୍କୁ ସବୁ ଭୁଲି କାମ କରିବାକୁ ହେବ। ଓଡ଼ିଆ ସାହିତ୍ୟରେ 'ସମାବେଶ'ର ସ୍ଥାନ ଅତୁଳନୀୟ। ଆପଣ ଏତେ ଭାଂଗିପଡ଼ିଲେ ଚଳିବ କି ? ଏଇ ଅଗଷ୍ଟ ସଂଖ୍ୟାରେ ମାଇତିବାବୁଙ୍କ ଫଟୋ ଓ ତାଙ୍କ ଜୀବନଲିପିରୁ କିଛି ଦିଅନ୍ତୁ। ଆଉ ଦିନେ ଦି'ଦିନ ପଛେ ଡ଼େରି ହେଉ କିଂତୁ ଏଇଟା ଅତି ଜରୁରୀ"। ଜଗଦୀଶବାବୁ ଭଂଗା ଭଂଗା ସ୍ୱରରେ କ'ଣ କହୁଥିଲେ ମୁଁ ବାରି ପାରୁନଥିଲି। ତା'ପରେ ବୋଧହୁଏ ସେ ଶୋଇଗଲେ।ଆଉ ଥରେ ଦୁଇମିନିଟ୍ ବ୍ୟବଧାନରେ ମୁଁ ଟେଲିଫୋନ୍ କଲେ ବି ରିସିଭର୍ ଉଠାଇ ପାରିଲେନି। ମୁଁ ତେଣୁ ଅବଶିଷ୍ଟ କହିବା କଥା ସରୋଜବାବୁଙ୍କୁ ଫୋନ୍ କରିଜଣାଇଥିଲି। ସରୋଜବାବୁ କହିଲେ –"ହଁ, ମାଇତିବାବୁଙ୍କ ବିଷୟରେ କିଛି ଏଇ ସଂଖ୍ୟାରେ ନିହାତି ଦେବା କଥା। ମୁଁ ସିନା କହିଦେବି କିଂତୁ ଲେଖି ତ ପାରିବିନି। ହରିବାବୁଙ୍କୁ ଖବର ଦେଇ ଡ଼କେଇଲେ ଡ଼େରି ହେବ"। ମୁଁ ତାଙ୍କୁ ପ୍ରତିଶ୍ରୁତି ଦେଇଥିଲି– ଆପଣ ତଥ୍ୟ ଦିଅନ୍ତୁ ମୁଁ ଭାଷା ଦେଇ ଲେଖାଟି ପ୍ରସ୍ତୁତ କରିଦେବି। ସତରେ ସେତେବେଳେ କ'ଣ ମୁଁ ଜାଣିଥିଲି କୁଟିଳ କାଳ ଅନ୍ତରାଳରେ ରହି ଅଟ୍ଟହାସ୍ୟ କରୁଛି– "କାହାପାଇଁ ଲେଖିବାକୁ କହୁଚ– ମାଇତିବାବୁ ଆଉ ଜଗଦୀଶବାବୁ ପରା ଅଭିନ୍ନ ଆତ୍ମା! ସେମାନେ ଦେହରେ ଦୁଇଜଣ ହେଲେ ବି ପ୍ରାଣ, ମନ ଓ ଆତ୍ମାରେ ଜଣେ ମାତ୍ର"।

ଅଥଚ ତା' ପରଦିନ ସକାଳ ସାଢ଼େ ଛ'ଟା ବେଳକୁ ଏଇ ଦାରୁଣ ଦୁଃସମ୍ବାଦ । ସଂଘମିତ୍ରା କହିଲେ – ସେ ଦୁଇ ତିନିଦିନ ହେବ ମାଇତିବାବୁଙ୍କ ପାଇଁ ଖାଇବା ପ୍ରାୟ ଛାଡ଼ି ଦେଇଥିଲେ। ରାତି ସାଢ଼େ ଚାରିଟାରେ ବାଥ୍‌ରୁମ୍‌କୁ ଯିବାକୁ ଉଠିଥିଲେ। ତା' ପରେ

ପରେ ଶୋଇଯାଇଛନ୍ତି ଯେ ଆଉ ଉଠିନାହାନ୍ତି । ଆଶ୍ଚର୍ଯ୍ୟ କଥା ଘଣ୍ଟାଏ ଦେଢଘଣ୍ଟା ଭିତରେ କିପରି ଜଣେ ମହାନିଦ୍ରାରେ ଶୋଇଯାଇପାରିଲା ? ଯନ୍ତ୍ରଣା ନାହିଁ, ଆର୍ତ୍ତନାଦ ନାହିଁ, ବ୍ରାହ୍ମମୁହୂର୍ତ୍ତର ଶାନ୍ତ ଶୀତଳ ମୁହୂର୍ତ୍ତକୁ କୋଳାହଳରେ ବିଚଳିତ କରିବାର ନାହିଁ। ହୃଦ୍‌ଯନ୍ତ୍ରକ୍ରିୟା ବନ୍ଦ ହୋଇଯିବାର ଅସ୍ୱସ୍ତିକର କିଛି ଚିହ୍ନ ନାହିଁ - ଅଥଚ ଜଗଦୀଶବାବୁ ସବୁଦିନ ପାଇଁ ଆଖିବୁଜି ଦେଇଛନ୍ତି ।

ମୁଁ ଓ ପ୍ରତିଭା ଗଲାବେଳକୁ ଶବାଧାର ବହୁ ମୂଲ୍ୟବାନ୍ ଫୁଲତୋଡ଼ା ଓ ମାଳରେ ମଣ୍ଡିତ ହୋଇ ସାରିଥାଏ । ଶୋଇବା ଘରୁ ତାଙ୍କୁ ଆଣି ଶେଷ ଦର୍ଶନ ପାଇଁ ରଖାଯାଇଥାଏ ବାରଣ୍ଡାରେ । ତାଙ୍କ ଶବାଧାରକୁ ଘେରି ଶୋକାକୁଳ ମହିଳାମାନେ ଅଶ୍ରୁବିଗଳିତ ହୋଇ ପଡୁଥା'ନ୍ତି । ବହୁ ସାହିତ୍ୟିକ ବଂଧୁ ସେତେବେଳକୁ ଶେଷ ଦର୍ଶନ ସାରି ବଗିଚାରେ ପରସ୍ପର ମଧ୍ୟରେ ବାର୍ତ୍ତାଳାପ କରୁଥା'ନ୍ତି । ସମସ୍ତଙ୍କ ମୁହଁ ବିଷଣ୍ଣ ଓ ବିଧୁର । ମନେହେଉଥାଏ ଯେପରି କେହିହେଲେ ପ୍ରିୟଜନର ଏ ଅପ୍ରତ୍ୟାଶିତ ପ୍ରତ୍ୟାବର୍ତ୍ତନକୁ ସହିବାକୁ ପ୍ରସ୍ତୁତ ନଥା'ନ୍ତି । କେହି ଜଣେ ଅନବରତ ଆଖିରୁ ଲୁହ ବୁହାଇ ମୋ ସହିତ ଦି'ପଦ କଥାହେଲେ । ଚିହ୍ନିଲା ଚିହ୍ନିଲା ପରି ଲାଗିଲା । କିନ୍ତୁ ହଠାତ୍ ଠଉରେଇ ପାରିଲି ନାହିଁ । ରାଜସ୍ୱ ମନ୍ତ୍ରୀଙ୍କଠାରୁ ସାମ୍ବାଦିକମାନଙ୍କ ପର୍ଯ୍ୟନ୍ତ । ସକାଳର ଏଇ ଶୀତଳ ପ୍ରହରରେ ରାଜଧାନୀ ସାରା କିପରି ଏ ଖବର ପରିବ୍ୟାପ୍ତ ହୋଇଗଲା - ଏତେ ଲୋକ ଆସି ପହଂଚି ପାରିଲେ ? ଜୀବଦ୍ଦଶାରେ ଯାହାର ମଧୁର ବ୍ୟବହାର ଏତେ କିସମର ଲୋକଙ୍କୁ ମମତାର ବଂଧନରେ ବାଂଧି ରଖିପାରିଥିଲା ମୃତ୍ୟୁପରେ ବି ତାର ଆକର୍ଷଣ ତଥାପି ଅବିଚ୍ଛିନ୍ନ ଓ ଅତୁଟ ରହିଛି - ଏପରି କେତେଜଣ ବ୍ୟକ୍ତିତ୍ୱ ଏ ରାଜଧାନୀରେ ଅଛନ୍ତି ?

ଜଗଦୀଶବାବୁ ଓ ମୁଁ ଦିନେ କଥା ହେଉଥିଲୁ ପତ୍ରପତ୍ରିକାର ପ୍ରକାଶନର ଆର୍ଥିକ ଦୁରବସ୍ଥାକୁ କିପରି ଅତିକ୍ରମ କରିପାରିବୁ । ମୁଁ ଯେଉଁଠିକୁ ବିଜ୍ଞାପନ ପାଇଁ ଯାଉଥିଲି 'ସମାବେଶ' କୁ ବିଜ୍ଞାପନଟିଏ ଦିଅ ବୋଲି ଅନୁରୋଧ କରୁଥିଲି-କାରଣ ଝଙ୍କାର, ସମାବେଶ, ଇସ୍ତାହାର , ନବପତ୍ର ପରି ନିରୁତା ସାହିତ୍ୟ ପତ୍ରିକା ଆର୍ଥିକ ଦୁରବସ୍ଥାରୁ ବନ୍ଦ ହୋଇଗଲେ ଓଡ଼ିଆ ସାହିତ୍ୟର ଅପୂରଣୀୟ କ୍ଷତି ଘଟିବ । ସେ ମଧ୍ୟ 'ଇସ୍ତାହାର' ପାଇଁ କହୁଥିଲେ ବୋଲି ମୁଁ ଶୁଣିଛି । ତଥାପି ଆମେ ପତ୍ରିକା ସଂପାଦକମାନେ କ୍ଷତିସହ ଗୋଟାଏ ମାତଲାମୀରେ ପତ୍ରିକା ଛାପି ଚାଲିଛୁ - ତାଙ୍କ ମତରେ ଏ ଆମପାଇଁ ଜାତୀୟ କର୍ମ । ଜାତି ବୁଝୁ ବା ନବୁଝୁ ଆମକୁ ଆମ କର୍ତ୍ତବ୍ୟ କରିଯିବାକୁ ହେବ । ଓଡ଼ିଶା ସରକାରଙ୍କ ବିଜ୍ଞାପନ ନୀତି ଆମମାନଙ୍କ ପତ୍ରିକା ପାଇଁ ଯେ ଏକାନ୍ତ ଅନୁଶୋଚନାମୂଳକ - ଏକଥା ସେ ଉପଲବ୍ଧି କରି କିଛି ଗୋଟାଏ ପନ୍ଥା ନିରୂପଣ ପାଇଁ ମୋତେ ବାରମ୍ବାର କହୁଥିଲେ । ଆମେ ଏକାଠି ହୋଇ ମୁଖ୍ୟମନ୍ତ୍ରୀଙ୍କୁ ଭେଟି ଏସବୁ ସମସ୍ୟା ବିଷୟରେ ଆଲୋଚନା କରିବୁ ବୋଲି ସ୍ଥିର କରିଥିଲୁ । କିଂତୁ ସବୁ ଯୋଜନା ଅଧାରେ ରଖି ସେ ସମସ୍ତଙ୍କୁ ଭଣ୍ଡିଦେଇ

ଗ୍ଳିଗଲେ । 'ସମାବେଶ' ତାଙ୍କ ନିଜ ପୁଅଝିଅମାନଙ୍କ ପରି ଏବେ ଛେଉଣ୍ଡ ହୋଇଗଲା – ସମାବେଶ ତାଙ୍କର ସାରସ୍ୱତ ସନ୍ତାନ । କି କଷ୍ଟରେ ଓ ମାନସିକ ଅଙ୍ଗୀକାରରେ ଗ୍ଳିଶ ବର୍ଷଧରି କଲିକତାରୁ ଭୁବନେଶ୍ୱର ପର୍ଯ୍ୟନ୍ତ ଯାତ୍ରାପଥରେ ସେ ତାକୁ ଚଳାଇ ଆସିଥିଲେ – ତାହା ତାଙ୍କ ଜୀବନୀ ଲେଖା ହୋଇଥିଲେ ଜଣା ପଡ଼ିଥାନ୍ତା । ମାଇତିବାବୁ ସବୁଦିନେ ପାଖେ ପାଖେ । ଶୁଭ୍ର ଖଦଡ଼ଧାରୀ ବଙ୍ଗାଳୀ ଭଦ୍ରଲୋକ – ଆଚରଣରେ ଓ ଚଳଣିରେ ପ୍ରାୟ ଓଡ଼ିଆମାନଙ୍କ ପରି ଖୁବ୍ ମେଳାପୀ ଓ ଉଦାର । ପ୍ରେସ୍‌ରେ ତାଙ୍କ ସହିତ ଦେଖାହୁଏ – ଜଗଦୀଶବାବୁ ତାଙ୍କୁ ଏତେ ସ୍ନେହ ଓ ସମ୍ମାନ କରୁଥିଲେ ନ ଦେଖିଲେ କେହି ବିଶ୍ୱାସ କରିବେନି ? ଅଥଚ ସନ୍ତାନହୀନ ସ୍ୱାଧିନତା ସଂଗ୍ରାମୀ ଭଦ୍ରଲୋକ ଜଣକ ଅନ୍ତରାଳରେ ଥାଇ କ୍ୱାଲିଟି ପ୍ରେସ୍‌କୁ ମନ ଓ ପ୍ରାଣରେ ନିଜର ସନ୍ତାନଭାବେ ଲାଳନ କରିଆସିଥିଲେ । ତାଙ୍କୁ ଦେଖିଲେ ମନେହେଉଥିଲା ଭିତରେ ପ୍ରଚଣ୍ଡ ପ୍ରତ୍ୟୟ (conviction) ଥିବା ମଣିଷଟିଏ । ମୋର କର୍ମଜୀବନର ବ୍ୟସ୍ତତା ଭିତରେ ମୁଁ ଏମାନଙ୍କ ପାଖରେ ବସିବା ପାଇଁ ବେଶୀ ବେଳ ପାଇନଥିଲେ ବି ଯେତେବେଳେ କ୍ୱାଲିଟି ପ୍ରେସ୍‌କୁ ଯାଇଛି ତାଙ୍କ ବ୍ୟକ୍ତିତ୍ୱରେ ସ୍ୱତଃ ଆକୃଷ୍ଟ ହୋଇପଡ଼ିଚି । ଦୁଇଜଣ ଚଳନ୍ତି ପୁରୁଷ – ସମାବେଶ ଓ କ୍ୱାଲିଟି ପ୍ରେସ୍‌ର ପ୍ରାଣ ଓ ଆତ୍ମା । ଅଥଚ ଉଭୟଙ୍କର କେତେ ସାଂସାରିକ ଅକୁଳାନପଣିଆ । ଜଣେ ନିଃସନ୍ତାନ ଓ ଆଉ ଜଣେ ବାରମ୍ବାର ସନ୍ତାନ କଷ୍ଟରେ ମନମରା ଓ କ୍ଷତାକ୍ତ ଜଗଦୀଶବାବୁଙ୍କୁ ଭଗବାନ ଯେ ଏତେ ପାରିବାରିକ ଦୁଃଖ ଦେଇଥିଲେ । ସେଥିରେ ଯେକୌଣସି ଲୋକ ବହୁଆଗରୁ ଭାଂଗିପଡ଼ିଥାନ୍ତା । କିଂତୁ ବୋଧହୁଏ 'ସମାବେଶ' ହିଁ ତାଙ୍କୁ ବଂଚେଇ ରଖିଥିଲା । ତାଙ୍କ ମନକୁ ଖୁବ୍ ଆସକ୍ତ ଓ ଜୀବନକୁ କର୍ମଚଂଚଳ କରି ରଖିଥିଲା । କେତେ ଲେଖକଙ୍କୁ ସେ ଏକାଠି କରିପାରିଥିଲେ ଓ ତାଙ୍କୁ ଲେଖକମାନେ କେତେ ଶ୍ରଦ୍ଧା କରୁଥିଲେ 'ସମାବେଶ'ହିଁ ତାର ମୂକସାକ୍ଷୀ ହୋଇ ରହିଯିବ ।

କ୍ୱାଲିଟି ପ୍ରେସ୍ ପାଇଁ ଜଗଦୀଶବାବୁ ଋଣଭାରରେ ବୁଡ଼ିଯାଇଥିବା କଥା ଦିନେ ଖୁବ୍ ଦୁଃଖରେ କହୁଥିଲେ । ପୁଣି କହିଲେ କେତେଥର ପ୍ରେସ୍ ସିଜ୍ କରିବାକୁ ଋଣଦାତାମାନେ ଆସିଚନ୍ତି – କିନ୍ତୁ 'ସମାବେଶ' କେତେ କପି ଦେଖି ଏତେ ଖୁସି ହୋଇ ଯାଇଛନ୍ତି ଯେ ଋଣ ଆଦାୟ ପଛେ ନହେଉ ଏପରି ବଳିଷ୍ଠ ସାହିତ୍ୟ ପତ୍ରିକାଟିଏ ବଂଚିରହୁ– ଏହିପରି କିଛି ମନ୍ତବ୍ୟ ମଧ୍ୟ ଦେଇଯାଇଛନ୍ତି । ଏବେ ଭାବିବାର କଥା ସରକାର କେତେ କାହାକୁ ଋଣ ଛାଡ଼ ନ କରୁଛନ୍ତି । 'ସମାବେଶ'କୁ ଆଖିରେ ରଖି ଏ ପ୍ରେସର ଅଧାଅଧି ଋଣକୁ ଯଦି କୋହଳ କରି ଦେଇ ପାରନ୍ତେ କେତେ ବଡ଼ ଉଦାର ଘଟଣାଟିଏ ନ ହୁଅନ୍ତା । ମୁଖ୍ୟମନ୍ତ୍ରୀ ଏ କଥା ବିଗ୍ଭର କଲେ ଜଗଦୀଶବାବୁଙ୍କ ଆତ୍ମା ଖୁବ୍ ଆଶ୍ୱସ୍ତି ଲାଭ କରିପାରନ୍ତା ।

ଏଇ ୪/୫ ମାସ ତଳର କଥା । ଓଡ଼ିଶାର ଅନ୍ୟତମ ସାରସ୍ୱତ ଦୀପଦଣ୍ଡି ଲୋକରତ୍ନ କୁଂଜବିହାରୀ ଦାଶ ଗ୍ଳିଗଲେ । ଜଗଦୀଶବାବୁ ମୁଁ ଓ ଓଡ଼ିଶା ବୁକ୍ ଷ୍ଟୋର୍‌ର ମାଲିକ

ଗୋବିନ୍ଦବାବୁ ମିଶି ଶୋକପୁସ୍ତିକାଟିଏ ଛାପିଲୁ ଏଇ କ୍ୱାଲିଟି ପ୍ରେସ୍‌ରେ । ଜଗଦୀଶବାବୁ ସେଥିପାଇଁ ଅନ୍ତତଃ ଦୁଇଟି ରାତି ପୂରା ଅନିଦ୍ରା ହୋଇ ରହିଛନ୍ତି । କାରଣ ଦୁଇଜଣ ଝିଅ କର୍ମଚାରୀଙ୍କ ସହିତ ପ୍ରାୟ ଦଶଜଣ ଏଥିପାଇଁ ସାରା ରାତି କାମ କଲାବେଳେ ସେ ବା କିପରି ଶୋଇପାରିଥାନ୍ତେ ? କାମ ସରେ । ଯେତେ ରାତି ହେଲେ ବି ସେ ମହିଳା କର୍ମଚାରୀ ଦୁହିଁଙ୍କୁ ଗାଡ଼ିରେ ନେଇ ତାଙ୍କ ଘରେ ଛାଡ଼ି ଆସନ୍ତି । ଖାଇବାର ବ୍ୟବସ୍ଥା ଆଗରୁ ହୋଇଥାଏ । ବାରମ୍ବାର ଫୋନ୍‌କରି ସେମାନଙ୍କ ବାପଭାଇଙ୍କୁ ସେ ଆଶ୍ୱାସନା ଦେଉଥାନ୍ତି – ମୁଁ ଅଛି – ଆପଣମାନେ ବ୍ୟସ୍ତ କାହିଁକି ? ସେମାନେ କ'ଣ ମୋ ଝିଅ ନୁହଁନ୍ତି ? ପ୍ରକୃତରେ ପ୍ରେସ୍ କର୍ମଚାରୀମାନଙ୍କ ସହିତ ତାହାହିଁ ତାଙ୍କର ସଂପର୍କ ଥିଲା । ତେଣୁ ସମସ୍ତେ ତାଙ୍କ କଥାରେ ବଶୀଭୂତ ହୋଇ ରହୁଥିଲେ ଓ ବିନାଦ୍ୱିଧାରେ କାମ କରିଯାଉଥିଲେ । ତଥାପି ମୋହମତରେ ଲକ୍ଷ ଲକ୍ଷ ଟଙ୍କା ବହୁ ସରକାରୀ ଓ ବେସରକାରୀ ସଂସ୍ଥାରେ ପଡ଼ିରହୁଥିବାରୁ ପ୍ରକୃତରେ କ୍ୱାଲିଟି ପ୍ରେସ୍‌ର ଭିତର ଅବସ୍ଥାଟି ସେତେ ଭଲ ନଥିଲା । ଏପରିକି ବେଳେ ବେଳେ ପାଞ୍ଚଟଙ୍କା ପାଇଁ ଦରାଣ୍ଡି ଦରାଣ୍ଡି ଜଗଦୀଶବାବୁ ତାଙ୍କ ପକେଟ୍‌ର କାଗଜ ମେଂଚି ଭିତରୁ ଦୁଇଟି ଟଙ୍କାର ନୋଟ୍‌ଟିଏ ଆବିଷ୍କାର କରୁଥିଲେ ଓ କୌଣସି କର୍ମଚାରୀକୁ ସେତକ ଦେଇ କାମଚଳେଇ ଦେବାକୁ ଅନୁରୋଧ କରୁଥିଲେ ।

ଆମେ ଡକ୍ଟର କୁଂଜବିହାରୀ ଦାଶଙ୍କ ପାଇଁ ସେଦିନ ଶୋକପୁସ୍ତିକାଟି ପ୍ରସ୍ତୁତ କଲାବେଳେ ଜଗଦୀଶବାବୁଙ୍କ ପାଇଁ ଏହିପରି ଗୋଟିଏ ଉଦ୍ୟମ ମାତ୍ର ପାଞ୍ଚମାସ ମଧ୍ୟରେ ହେବ ବୋଲି କାହା ମନରେ ବା ଥିଲା ! ସେ ବିଶ୍ୱାସ କରୁଥିବା ଆଗତ ବିବରଣୀ–ଦାତା (ଯାହାଙ୍କ ଆଶ୍ରମକୁ ସେ ଓ ତାଙ୍କ ପତ୍ନୀ ବାରମ୍ବାର ଯାଉଥିଲେ) ତ କେବେ କହିନଥିବେ ଯେ କାଳ ଆସି ଘରର ଦରଜା ପାଖରେ ଉଙ୍କିମାରିଗଲାଣି । ଆଉ ବେଶୀ ଡେରି ନୁହେଁ । ତା' ହେଲେ କାହିଁକି ତାଙ୍କର ଏପରି ଆଗତଭବିଷ୍ୟ ବାଣୀ ଉପରେ ଏତେ ବିଶ୍ୱାସ ? ଅଥଚ ନିଜପ୍ରତି ? ଚିର ଉଦାସୀନ ଅଥଚ ଏକାନ୍ତ ଉଦାର ଏଇ ବ୍ୟକ୍ତିଟିକୁ ମହାକାଳ ଓଡ଼ିଆ ସାହିତ୍ୟର ବୃହତ୍ତର ସ୍ୱାର୍ଥପାଇଁ କ'ଣ ଆଉ କିଛିଦିନ ପାଇଁ ଛାଡ଼ିଦେଇ ପାରିନଥାନ୍ତା ? ଅବଶ୍ୟ କାଳ ତାଙ୍କୁ ନେଇଯାଇପାରିଲା – କିନ୍ତୁ ତାଙ୍କ ସାରସ୍ୱତ ସନ୍ତାନ 'ସମାବେଶ' ତାର କ'ଣ ମୃତ୍ୟୁ ଥାଇପାରେ ? ସେଥିପାଇଁ ଜଗଦୀଶବାବୁ ଆମ ସମସ୍ତଙ୍କ ଭିତରେ ଅଛନ୍ତି ଓ ରହିବେ ଅନେକ ଅନେକ କାଳଯାଏ । ତାଙ୍କ ସଂପର୍କରେ ଆସିଥିବା କେହିହେଲେ ତାଙ୍କୁ ଭୁଲି ପାରିବେ ନାହିଁ । 'ସମାବେଶ'ର ମୃତ୍ୟୁ ନାଇ– ମୃତ୍ୟୁ ହୋଇ ନପାରେ ମଧ୍ୟ ।

●●●●

# ଭାଇନା

## ବିଭୂତି ପଟ୍ଟନାୟକ

ସେ ଥିଲେ ମୋର ଭାଇନା, ମୁଁ ଥିଲି ତାଙ୍କର ଭାଇ। ହଁ, ମୋର ନାମ ଶେଷରେ 'ଭାଇ' ସମ୍ବୋଧନ ଯୋଗ କରି ସେ ମତେ ଡାକୁଥିଲେ ଆଉ ଚିଠି ଲେଖୁଥିଲେ।

ଜଗଦୀଶ ଭାଇନା।

ତାଙ୍କ ସହ ଚାଳିଶି ବର୍ଷର ସଂପର୍କ। ଆତ୍ମୀୟତା। ସୁଖରେ, ଦୁଃଖରେ, ଆନନ୍ଦ ଉତ୍ସବରେ-ସବୁବେଳେ ଏକାଠି ହେଉଥିଲୁ।

ଏ ଶତାବ୍ଦୀର ପଞ୍ଚମ ଦଶକରେ କେନ୍ଦ୍ରାପଡ଼ା, ପଟ୍ଟାମୁଣ୍ଡାଇ ଅଞ୍ଚଳରୁ ଶୁକଦେବ ସାହୁ, କସ୍ତୁରି ଚରଣ ଦାସ, ହୃଦାନନ୍ଦ ମଲ୍ଲିକ, ଆଉ ଜଗଦୀଶ ପାଣି ପ୍ରମୁଖ ଯାଇଥିଲେ କଲିକତା-ଜୀବିକା ଅନ୍ୱେଷଣରେ। ପ୍ରଥମ ଯୌବନରେ, କଲିକତାରେ ସେତେବେଳେ ଲକ୍ଷ ଲକ୍ଷ ଓଡ଼ିଆମାନଙ୍କର ଭିଡ଼। ପ୍ରବାସୀ ଓଡ଼ିଆମାନଙ୍କୁ ସଂଗଠିତ କରିବା ପାଇଁ ଆକୁଳି ମିଶ୍ରଙ୍କ ଉଦ୍ୟମରେ ଯେଉଁ କେତେଜଣ ଭାଷା ସାହିତ୍ୟପ୍ରେମୀ ଓଡ଼ିଆ ଯୁବକ ଲାଗିପଡ଼ିଥିଲେ ଜଗଦୀଶ ପାଣି ସେମାନଙ୍କ ମଧ୍ୟରେ ଥିଲେ ଅନ୍ୟତମ। ସେଇମାନଙ୍କ ସମ୍ମିଳିତ ଉଦ୍ୟମରେ କଲିକତାରେ ଓଡ଼ିଆ ସାହିତ୍ୟର ନୂତନ ଅଭ୍ୟୁଦୟ ଘଟିଥିଲା। ପ୍ରଥମେ କସ୍ତୁରି ଚରଣ ଦାସ, ହୃଦାନନ୍ଦ ମଲ୍ଲିକ ଯଦୁନାଥ ଦାଶ ମହାପାତ୍ର, ଆଉ ରାମଚନ୍ଦ୍ର ହରିଚନ୍ଦନଙ୍କ ସହଯୋଗରେ କଲିକତାରୁ 'ଆସନ୍ତାକାଲି' ପ୍ରକାଶିତ ହୋଇ ବିପୁଳ ଲୋକପ୍ରିୟତା ଅର୍ଜନ କରିଥିଲା। ପରେ ଜଗଦୀଶ ଭାଇନାଙ୍କ ସଂପାଦନାରେ 'ସମାବେଶ' କସ୍ତୁରି ଚରଣ ଦାସଙ୍କ ସଂପାଦନାରେ 'କଳନା' ଓ ହୃଦାନନ୍ଦ ମଲ୍ଲିକଙ୍କ ସଂପାଦନାରେ 'ଅଗ୍ରଣୀ' ପ୍ରକାଶିତ ହୋଇ ମୋ ଭଳି ଅନେକ ଲେଖକଙ୍କୁ ପ୍ରତିଷ୍ଠିତ ହେବାରେ ସାହାଯ୍ୟ କରିଥିଲା।

ମନେପଡୁଛି, ମୁଁ ସେତେବେଳେ କଟକରେ ପଢ଼ିବାକୁ ଆସିଲା ପରେ ସୋସାଲିଷ୍ଟ ସାପ୍ତାହିକୀ "କୃଷକ" ଅଫିସ୍‌କୁ ନିୟମିତ ଯିବା ଆସିବା କରୁଥିଲି। କଟକ ଗଙ୍ଗାମନ୍ଦିର 'କୃଷକ' ଅଫିସରେ ରହୁଥାନ୍ତି। ଗୋରାଗୃନ୍ଦ ମିଶ୍ର,-'କୃଷକ' ସଂପାଦନା ଦାୟିତ୍ୱରେ ସେ ଥାଆନ୍ତି। ଜଗଦୀଶବାବୁଙ୍କ ସାଙ୍ଗରେ ତାଙ୍କର ଘନିଷ୍ଠ ବନ୍ଧୁତ୍ୱ, ଗୋରାଚାନ୍ଦବାବୁଙ୍କ ଜରିଆରେ 'ସମାବେଶ' ପାଇଁ ଗୋଟିଏ ଗଳ୍ପ ପଠାଇବା ପାଇଁ ସେ ମତେ ଅନୁରୋଧ

କରିଥିଲେ । ଗୋରାଚାନ୍ଦ ବାବୁଙ୍କ ଜୀବନ କାହାଣୀ ଅବଲମ୍ବନରେ ମୁଁ ଗୋଟିଏ ଗଳ୍ପ ଲେଖିଥିଲି "କଳଗୃନ୍ଦ ମିଶ୍ର" । ସେଇଟି "ସମାବେଶ"ରେ ପ୍ରକାଶିତ ମୋର ପ୍ରଥମ ଗଳ୍ପ ।

ତା'ପରେ କଲିକତା ଛାଡ଼ି ଭାଇନା ଆସିଲେ ଓଡ଼ିଶା । ପ୍ରଜାତନ୍ତ୍ର ପ୍ରେସ୍‌ର ମ୍ୟାନେଜର ଦାୟିତ୍ୱ ତୁଲାଉଥିଲେ ଡଃ ମହତାବଙ୍କ ଅନୁରୋଧରେ । ସେତିକିବେଳେ ଗଢ଼ିଉଠିଲା ତାଙ୍କ ସହିତ ପ୍ରତ୍ୟକ୍ଷ ସମ୍ପର୍କ । କଲିକତାରେ 'ସମାବେଶ' ବାହାର କରୁଥିବାବେଳେ କିପରି ଦିନେ ଦିନେ ରାତିରେ ପ୍ରେସ୍‌ର ସେଇ ଟ୍ରେଡଲ୍ ମେସିନ୍ ଉପରେ ଶୋଇଯାଆନ୍ତି, ବିଜ୍ଞାପନ ସଂଗ୍ରହ କରିବାକୁ ଯାଇ କିଭଳି ଅନିୟମିତ 'ସମାବେଶ'ର କଭର ପୃଷ୍ଠା କେବଳ ବଦଳାଇ ନିୟମିତ ପ୍ରକାଶିତ ହେଉଥିବାର ପ୍ରତ୍ୟୟ ବିଜ୍ଞାପନ ଦାତାଙ୍କ ମନରେ ସୃଷ୍ଟି କରନ୍ତି; ସେ କଥା ବର୍ଣ୍ଣନା କଲାବେଳେ ଭାବପ୍ରବଣତାରେ ତାଙ୍କର କଣ୍ଠରୁଦ୍ଧ ହୋଇ ଆସେ । ପୁଣି 'ସମାବେଶ' ପ୍ରକାଶ କରିବାର ସଂକଳ୍ପ ନେଇ 'ପ୍ରଜାତନ୍ତ୍ର' ପ୍ରେସ୍ ଛାଡ଼ି ଭୁବନେଶ୍ୱରରେ ପ୍ରତିଷ୍ଠା କରନ୍ତି କ୍ୱାଲିଟି ପ୍ରେସ୍ । ତାପର ଇତିହାସ ପ୍ରାୟ ସମସ୍ତଙ୍କୁ ଜଣା । ସୁଦୃଶ୍ୟ, ପରିଚ୍ଛନ୍ନ ମୁଦ୍ରଣ ପାଇଁ କ୍ୱାଲିଟି ପ୍ରେସ୍‌ର କୃତିତ୍ୱ ଏବଂ ଉଚ୍ଚମାନର ସାହିତ୍ୟ ପରିବେଷଣ କ୍ଷେତ୍ରରେ 'ସମାବେଶ'ର ଭୂମିକା ହେଉଛି ତାଙ୍କ ବ୍ୟକ୍ତିତ୍ୱ ଓ ନିଷ୍ଠାର ପ୍ରମାଣପତ୍ର ।

ତାଙ୍କ ଜୀବନରେ ନାନା ବିପର୍ଯ୍ୟୟ ଆସିଛି । ବଡ଼ପୁଅର ଆକସ୍ମିକ ବିୟୋଗ ପରେ ସେ ଭିତରେ ଭିତରେ ଭାଙ୍ଗି ପଡ଼ିଥିଲେ । ଦେଖାହେଲେ ହସୁଥିଲେ, କିନ୍ତୁ, ସେ ହସ ଥିଲା ଅଶ୍ରୁର ରୂପାନ୍ତର । ପ୍ରେସ୍ ଓ ପତ୍ରିକା ପରିଚାଳନାରେ ମାଇତିବାବୁ ଥିଲେ ତାଙ୍କର ପରମାତ୍ମୀୟ ସହଯୋଗୀ । ଅଳ୍ପଦିନ ଆଗରୁ ମାଇତି ବାବୁଙ୍କ ମୃତ୍ୟୁ ତାଙ୍କ ମନରେ ଯେଉଁ ଆଘାତ ଦେଇଥିଲା ସମ୍ଭବତଃ ତାହା ହିଁ ତାଙ୍କ ବଞ୍ଚିରହିବାର ଇଚ୍ଛାଶକ୍ତିକୁ ଭାଙ୍ଗି ଚୂର୍ଣ୍ଣବିଚୂର୍ଣ୍ଣ କରିଦେଲା ।

ପ୍ରତିବର୍ଷ ପୂଜାସଂଖ୍ୟା 'ସମାବେଶ' ପାଇଁ ଗଳ୍ପ ପଠାଇବା ଲାଗି ତାଙ୍କରି ଚିଠି ପଠାନ୍ତି । ତା'ପରେ ଆସେ ଟେଲିଫୋନ୍ । ଗତ ବର୍ଷ ଦୁଇ ଦୁଇଟି ଓଡ଼ିଆ ପତ୍ରିକାର ପୂଜାସଂଖ୍ୟା ପାଇଁ ସଂପୂର୍ଣ୍ଣ ଉପନ୍ୟାସ ଲେଖିବାର ପ୍ରତିଶ୍ରୁତି ପାଳନ କରିବାକୁ ପଡୁଥିବାରୁ 'ସମାବେଶ' ପାଇଁ ସେ ବର୍ଷ ଲେଖିପାରିବି ନାହିଁ ବୋଲି ଟେଲିଫୋନ୍‌ରେ କହିଥିଲି । ତା'ର ଦୁଇଦିନ ପରେ ଦିନେ ସକାଳୁ ଆସି ସେ ପହଞ୍ଚିଗଲେ ଆମ ଘରେ । ହାତରେ ପୂଜାସଂଖ୍ୟା 'ସମାବେଶ'ର ପ୍ରୁଫ୍ ।

ପ୍ରୁଫ୍ ଦେଖାଇ ମତେ କହିଲେ– ଏଇ ଦେଖ, ଛାପାକାମ ଶେଷ ହୋଇ ଆସିଲାଣି । କେବଳ ଫର୍ମକୁ ଅପେକ୍ଷା । ଗଳ୍ପ ନହେଲେ ମଧ୍ୟ ଗଳ୍ପଭଳି ଅନ୍ୟ କିଛି ଗୋଟାଏ ଲେଖି ଦେବାକୁ ହେବ ।

ଲେଖି ଦେଇଥିଲି –'ଗଳ୍ପ ନୁହେଁ ଗବେଷଣା'।

ଏ ବର୍ଷ ଅପେକ୍ଷା କରିଥିଲି–କେବେ 'ସମାବେଶ' ପୂଜା ସଂଖ୍ୟା ପାଇଁ ଲେଖା ଦେବାକୁ ଚିଠି ଆସିବ। କେବେ ଆସିବ ଟେଲିଫୋନ୍!

ନା, ଚିଠି ନାହିଁ। ଟେଲିଫୋନ୍ ନାହିଁ।

ଗତ ୨ ତାରିଖ ସକାଳୁ ସକାଳୁ ବରେନ୍ଦ୍ର କୃଷ୍ଣ ଧଳଙ୍କ ଟେଲିଫୋନ୍ ଆସିଲା। ଜଗଦୀଶ ଭାଇନା ଚାଲିଗଲେ।

ତାଙ୍କ ସହ ଶେଷ ଦେଖା ହୋଇଥିଲା ବିଷୁବ ସଂକ୍ରାନ୍ତି ଦିନ, 'ସ୍ରଷ୍ଟା' ତରଫରୁ ଆୟୋଜିତ ଭୁବନେଶ୍ୱର ରୋଟାରି କ୍ଲବ୍‌ରେ ଆୟୋଜିତ ସାହିତ୍ୟିକ ବନ୍ଧୁ ମିଳନ ଉତ୍ସବରେ। ବିଷୁବ ପୁରସ୍କାର ପାଇଥିବା ହେତୁ 'ସ୍ରଷ୍ଟା' ତରଫରୁ ମତେ ଫୁଲତୋଡ଼ା ଦେଇ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା। ମୁଁ ମଞ୍ଚରୁ ଫେରିଲା ପରେ ହଲ୍ ବାହାରେ ମତେ ସେ କୁଣ୍ଢାଇ ଧରିଥିଲେ। ସେଇ ଛାୟାଚ୍ଛନ୍ନ ଅନ୍ଧକାର ମଧ୍ୟରେ ତାଙ୍କ ଛାତିର ଉଷ୍ମତା ସଂଚରି ଯାଇଥିଲା ମୋ ସାରା ଦେହରେ।

ଅକୃତ୍ରିମ ବନ୍ଧୁତ୍ୱ, ଅସାମାନ୍ୟ ସାହିତ୍ୟ ପ୍ରୀତିର ପ୍ରତୀକ ଥିଲେ ଜଗଦୀଶ ପାଣି। ତାଙ୍କର ବିୟୋଗରେ ମୁଁ ହରାଇଲି ଜଣେ ପରମାତ୍ମୀୟ ବନ୍ଧୁ, ଓଡ଼ିଆ ସାହିତ୍ୟ ହରାଇଲା ଜଣେ ଶ୍ରେଷ୍ଠ ସାହିତ୍ୟ ପତ୍ରିକାର ପ୍ରକାଶକ ଓ ସଂପାଦକଙ୍କୁ।

••••

*ଉତ୍ତମ ଖାଦ୍ୟ ଖାଇଲେ ତଥା ବିଶୁଦ୍ଧ ଜଳପାନ କଲେ ଶରୀର ଯେପରି ବଳିଷ୍ଠ ହୁଏ, ଭଗବାନଙ୍କୁ ପ୍ରାର୍ଥନା କଲେ ଆତ୍ମା ସେପରି ବଳିଷ୍ଠ ହୁଏ।*

# ଜଗଦୀଶ ଭାଇନାଙ୍କ ସ୍ମୃତିରେ ......

**ବରେନ୍ଦ୍ର କୃଷ୍ଣ ଧଳ**

ଜଗଦୀଶ ପାଣି ଚାଲିଗଲେ । ବୟସ ହୋଇଥିଲା ଠିକ୍ ନୁହେଁ । ମାତ୍ର ୬୭ ବର୍ଷ । ପଛରେ ଛାଡ଼ିଗଲେ ତାଙ୍କ ପରିବାର ଆଉ ଅଜସ୍ର ବନ୍ଧୁ । ଅଳ୍ପଦିନ ପୂର୍ବରୁ ତାଙ୍କର ଅନ୍ତରଙ୍ଗ ବନ୍ଧୁ ମାଇତିବାବୁ ଚାଲିଯାଇଥିଲେ । ତାଙ୍କୁ ଝୁରିକରି କିମ୍ବା ତାଙ୍କ ଡାକରାରେ ଯେ ଜଗଦୀଶ ଭାଇନା ଚାଲିଯିବେ ଏହା ଘୁଣାକ୍ଷରରେ କେହି ଚିନ୍ତା କରିପାରି ନଥିଲେ ।

ଅନେକ ବନ୍ଧୁ ଅଛନ୍ତି ଯେଉଁମାନଙ୍କ ସହ କ୍ୱଚିତ ସାକ୍ଷାତ ହେଲେ ମଧ୍ୟ ଅନ୍ତରଙ୍ଗତା କେବେ ଊଣା ହୁଏନାହିଁ । ଅତ୍ୟନ୍ତ ଘନିଷ୍ଠ ଆଉ ନିବିଡ଼ ସେଇ ଆତ୍ମୀୟତା । ଦେଖାହେଲେ ମନେହୁଏ ଅନେକ, ଅନେକ ଦିନର ବନ୍ଧୁ । ଜଗଦୀଶ ଭାଇନା ସେଇ ପର୍ଯ୍ୟାୟର ଜଣେ ମଣିଷ । ତେଣୁ ଶୁକ୍ରବାର ସକାଳେ ଯେତେବେଳେ ମୁଁ କ୍ୱାଲିଟି ପ୍ରେସ୍‌ରୁ ଏ ଦୁଃସମ୍ବାଦ ପାଇଲି ବିଶ୍ୱାସ କରିପାରିଲିନି ଯେ ଏଭଳି ଏକ ଅଘଟନ ଘଟିପାରେ ଏତେଶୀଘ୍ର ! କିନ୍ତୁ ଜୀବନ ଭଳି ମୃତ୍ୟୁ ମଧ୍ୟ ସତ୍ୟ । ପୃଥିବୀର ସମସ୍ତ ଜୀବଜଗତ୍ ସେଇ ସତ୍ୟର ଅକ୍ଟୋପାସ ଭିତରେ ନିଜକୁ ସମର୍ପଣ କରିଛନ୍ତି । ତେଣୁ ଆଜି ହେଉ କାଲି ହେଉ ସମସ୍ତେ ଯିବେ । ତେବେ ଏଇ ଯିବା-ଆସିବା ଭିତରେ ଅନେକ ସମୟରେ କିଛି ମଣିଷ, ମଣିଷ ଭଳି ଏବଂ ଆଉ କିଛି ବନ୍ୟପ୍ରାଣୀ ଭଳି ଜୀବନଯାପନ କରି ବିଲୟ ଲାଭ କରନ୍ତି ।

ଅଦ୍ଭୁତ ଚରିତ୍ରର ଏହି ବ୍ୟକ୍ତି ଜଗଦୀଶ ପାଣି । ମାସ ମାସ ଧରି ଦେଖା-ସାକ୍ଷାତ ହେବନାହିଁ । ଅଥଚ ହଠାତ୍ ଦିନେ ଟେଲିଫୋନ୍ ଆସିବ-ଭାଇ-ପଡ଼ୁଛନ-ସବୁ ଖବର ତମର କିନ୍ତୁ ମୁଁ ରଖୁଛି । କ'ଣ କରୁଛ ? ଆସ ଟିକେ ବସିବା ମନଟା ଭାରି ଖରାପ, ତମ ସହ କଥାବାର୍ତ୍ତା ହେଲେ ମନଟା ହାଲୁକା ହେବ । ଏ ଟେଲିଫୋନ ପରେ ତୁମେ ନଯାଇ ଗତି ନାହିଁ । ନା-ବାଧ୍ୟ ବାଧକତାରେ ନୁହେଁ-ମନ ଭିତରେ ଏକ ଅପରାଧ ତାଡ଼ନାରେ ଏତେଦିନ ପର୍ଯ୍ୟନ୍ତ କିଛି ଖବର ନେଇନଥିବାର ବିବେକର ଦଂଶନରେ । ଏଇ ହେଉଛନ୍ତି ଜଗଦୀଶ ପାଣି ।

କଲିକତାଠାରୁ ଆରମ୍ଭ କରି କଟକ ପର୍ଯ୍ୟନ୍ତ ରାଉରକେଲା ଠାରୁ ସୁନାବେଡ଼ା ପର୍ଯ୍ୟନ୍ତ-ସବୁଠି ସବୁ ଜାଗାରେ ତାଙ୍କର ଅନେକ ବନ୍ଧୁ । ଥରେ ପରିଚୟ ହେଲେ ତାହା ଦାଗ କାଟି ରହିଯାଏ । ତେଣୁ ବର୍ଷ୍ବବର୍ଷ ପରେ ଦୈବାତ୍ ଦେଖା ହୋଇଗଲେ ସେଇ

ଦାଗ ପୁଣି ସତେଜ ହୋଇଯାଏ । ଜଗଦୀଶ୍ ଭାଇନା ଆରମ୍ଭ କରି ଦିଅନ୍ତି–'ସମାବେଶ' ଦେଖୁଛ ? କିଛି ସାହାଯ୍ୟ କର ? ତୁମ ଅଞ୍ଚଳରେ ଭଲ ଲୋକ ଠିକ୍ କରି ଦିଅ । ପଢ଼ ଦେଖ କିପରି ହେଉଛି ?

'ସମାବେଶ' ତାଙ୍କ ପ୍ରାଣ ଅତି ଆଦରର ଅତି ସ୍ନେହର ସନ୍ତାନ । ପ୍ରତି ପୃଷ୍ଠାରେ ଜଗଦୀଶ ପାଣିଙ୍କର ହାତର ଛାପ । ପରିଷ୍କାର–ନିର୍ଭୁଲ ଝକ୍ ଝକ୍ ଛାପା । ଜଗଦୀଶ ଭାଇନା ନିଜେ ସାହିତ୍ୟିକ ନଥିଲେ । କିନ୍ତୁ ସାହିତ୍ୟର ଭାଷା ପରିଭାଷା, ସାହିତ୍ୟର ଆତ୍ମା ଆଉ ସାହିତ୍ୟର ମର୍ଯ୍ୟାଦାବୋଧ ସବୁ କିଛି ତାଙ୍କ ଭିତରେ ପରିପୂର୍ଣ୍ଣ ଥିଲା– ଆଉ ତାହାହିଁ ସମାବେଶ'କୁ ଟାଣି ନେଇଥିଲା ଉପରକୁ ଉପରକୁ ଅନେକ ଉପରକୁ । ଯେଉଁଠିକୁ ଚ୍ଚହିଁ ଅନେକେ ଈର୍ଷା କରୁଥିଲେ ଅନେକ ତଳକୁ ଟାଣୁଥିଲେ ଆଉ ଅନେକ ସ୍ନେହ, ଶ୍ରଦ୍ଧା, ସଦିଚ୍ଛାର ହାତ ବଢାଇଦେଇ କହୁଥିଲେ ଆଗକୁ ଚ୍ଚଲ ଆହୁରି ଆଗକୁ ଚ୍ଚଲ । The sky is the limit.

ଅନେକ କ୍ଷେତ୍ରରେ ଦିବ୍ୟଦର୍ଶୀ ନାମଧାରୀ ବ୍ୟକ୍ତି ବାହ୍ୟଦର୍ଶନ ପାଇଁ ମଧ୍ୟ ସମର୍ଥ ହୋଇପାରନ୍ତି ନାହିଁ । କିନ୍ତୁ ଜଗଦୀଶ ପାଣିଙ୍କର କ୍ୱାଲିଟି ପ୍ରେସ୍ ସହ କ୍ୱାଲିଟି ପ୍ରିଣ୍ଟିଂର ଅଦ୍ଭୁତ ଯୋଗାଯୋଗ । ଆଜି ଏ ପ୍ରେସ୍ ଅନେକ ବଡ ହୋଇଛି । ମାତ୍ର ଆରମ୍ଭରେ ଟ୍ରେଡଲ ମେସିନ୍‌ରେ ସେ ଯେଉଁ ଛାପାକାମ କରୁଥିଲେ ତା' ଅଫସେଟ୍ ପ୍ରିଣ୍ଟିଂର କାନକାଟି ଦେଉଥିଲା । କିନ୍ତୁ ତାଙ୍କର ବଦ୍‌ନାମ ଥିଲା ଠିକ୍ ସମୟରେ ଅର୍ଡର ଦେଉନଥିବା ଯୋଗୁଁ । ଯେଉଁମାନେ ବାରମ୍ବାର ଆସି ବିରକ୍ତ ହୋଇ ଫେରନ୍ତି–କାନମୋଡି ହୁଅନ୍ତି ଆଉ କ୍ୱାଲିଟି ପ୍ରେସ୍ ନୁହଁ ସେଇମାନେ ପୁଣି ଆସନ୍ତି–ପୁଣି ଅର୍ଡ଼ର ଦିଅନ୍ତି । ଜଗଦୀଶ ଭାଇନାଙ୍କ ସ୍ନେହବୋଳା କଥା ଶୁଣନ୍ତି–ଚ୍ଚ' ଖା'ନ୍ତି । କାରଣ ସେମାନେ ଜାଣନ୍ତି ଗୋଟିକୁ କମ୍ପ୍ରୋମାଇଜ କରିବାକୁ ପଡ଼ିବ–କ୍ୱାଲିଟି କିମ୍ବା ସମୟ....................

ଆଜି ଜଗଦୀଶ ଭାଇନା ନାହାଁନ୍ତି । କ୍ୱାଲିଟି ପ୍ରେସ୍‌ରେ ପଶୁ ପଶୁ ବାଁପଟ ଘରେ ତାଙ୍କ ଚେୟାର ଆଉ ତାଙ୍କ ସାମ୍‌ନା ଚେୟାର ଦୁଇଟିଯାକ ଖାଲି ହୋଇଗଲା । ଜଗଦୀଶ ଭାଇନା ଅକାଳରେ ଚ୍ଚଲିଗଲେ । ଆଡ୍‌ଡ଼ା ଭାଙ୍ଗିଗଲା । ଯୋଉ ଆଡ୍‌ଡାକୁ ଜମାଇବାବାଲା ତାଙ୍କ ଭଳି ଖୁବ୍ କମ୍ ଲୋକ ଅଛନ୍ତି ।

ତାଙ୍କ ଆତ୍ମା ଶାନ୍ତି ଲାଭ କରୁ ଆଜି ଏତିକି ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ।

••••

# ବଂଧୁ ବିଚ୍ଛେଦ

ଇଂ ମଧୁସୂଦନ ଦାଶ

କଥାରେ ଅଛି – ବିପଦ ତୁହାତୁହି ହୋଇ ଆସେ Misfortune never comes alone – ଜଣେ ବଂଧୁ ଡଃ ଶ୍ରୀରାମ ଚନ୍ଦ୍ର ଦାଶଙ୍କ ମୃତ୍ୟୁର ଧକ୍‌କା ନ ଲିଭୁଣୁ, ଆଉ ଜଣେ ବଂଧୁ ଶ୍ରୀ ଜଗଦୀଶ ପାଣିଙ୍କ ଅକସ୍ମାତ ମୃତ୍ୟୁ ସମ୍ବାଦ ମିଳିଲା– ସେ ହୃଦ୍‌ରୋଗରେ ହଠାତ୍ ୨ ତାରିଖ ସକାଳ ୫ଟାରେ ଚଳିପଡ଼ିଲେ । ପାଣିବାବୁ ପ୍ରଥମେ ଆମ ଘର ନିକଟରେ ରହୁଥିଲେ ଓ ଛୋଟ ପ୍ରେସ୍‌ଟିଏ ଚଳାଉଥିଲେ । ସେଥିରେ ଆମ ପିଲାଏ ଛପାଇଥିଲେ

Bijay - Son of Eng. M.S.Das, Chief Engineer R.E

Weds

Pramila - daughter of Eng. A.C. Padhi, Chief Engineer R & B

ତା'ର ଅଳ୍ପଦିନ ପରେ 'Kwality Press' ନାମରେ ଏକ ବିରାଟ ପ୍ରେସ୍ ଗଢ଼ିଉଠିଲା ଏଠା ଇଣ୍ଡଷ୍ଟ୍ରିଆଲ୍ ଏରିଆରେ । ଏଠାରୁ 'ସମାବେଶ' ନାମରେ ଏକ ସାହିତ୍ୟିକ ପତ୍ରିକା ପ୍ରକାଶ ପାଇଥିଲା । ୧୦୦ ଟଙ୍କା ଦେଇ ମୁଁ ଏହାର ଆଜୀବନ ଗ୍ରାହକ ହେଲି ଏବଂ ପଣ୍ଡିତ ନୀଳକଣ୍ଠ ସ୍ମୃତି ସମିତିର ସଂପାଦକ ଭାବରେ ରହି ଆମର ପ୍ରକାଶ ପାଇଥିବା ୧୫ଟି ପୁସ୍ତକରୁ ୧୩ଟି ଏଇ କେତେଦିନ ଭିତରେ, ଏହି ପ୍ରେସ୍‌ରୁ ପ୍ରକାଶ ପାଇଲା । ଏ ମଧ୍ୟରେ ଏହାର ମାଲିକ ଶ୍ରୀ ଜଗଦୀଶ ପାଣିଙ୍କ ସହ ଘନିଷ୍ଠ ସମ୍ପର୍କ ପ୍ରତିଷ୍ଠିତ ହେଲା । ତାଂକର ସୌହାର୍ଦ୍ଦ୍ୟପୂର୍ଣ୍ଣ ବ୍ୟବହାର ବ୍ୟତୀତ ପରିଗ୍ଳନାଗତ ଦକ୍ଷତା ମୋ ପରି ବହୁ ବ୍ୟକ୍ତିଂକୁ ଆକୃଷ୍ଟ କଲା । ମୋ ସହିତ ସମ୍ପର୍କର ବିଶେଷ କାରଣ ହେଲା ପାଣିବାବୁ ଯେତେବେଳେ କଲିକତାରେ ରହୁଥିଲେ ପଣ୍ଡିତ ନୀଳକଣ୍ଠଙ୍କ କଲିକତା ଗସ୍ତବେଳେ ତାଂକୁ ବହୁତ ସାହାଯ୍ୟ କରୁଥିଲେ । ସେଠାରେ ଅନୁଷ୍ଠିତ ସଭାସମିତି ବ୍ୟତୀତ ତାଂକୁ ବହୁ ବଂଧୁଙ୍କ ସହିତ ପରିଚିତ କରାଇ ଦେଉଥିଲେ ଓ ପଣ୍ଡିତଜୀଂକର ମାଛ ଖାଇବାର ପ୍ରଶସ୍ତ ପଥ ସୃଷ୍ଟି କରୁଥିଲେ । ଏଠି ପଣ୍ଡିତ ନୀଳକଣ୍ଠ ସ୍ମୃତିସମିତି ଗଠିତ ହେବାପରେ ପାଣିବାବୁ ଆମର ପୁସ୍ତକମାନ ପ୍ରକାଶ କରିବାରେ ବିଶେଷ ଆଗ୍ରହ ଦେଖାଇଥିଲେ । ଏଥିପାଇଁ ସେ କେବଳ ଛପାଖର୍ଚ୍ଚ କମାଇ ଦେଉଥିଲେ ତା ନୁହେଁ, ଯଥା ସମୟରେ ସେଗୁଡ଼ିକ ଛପାଇ ଦେଉଥିଲେ । ତାଂକୁ କହିଦେବାରେ ସେ ନିଜେ ପ୍ରେସ୍ ଭିତରକୁ ଯାଇ ସଂପୃକ୍ତ କର୍ମଗ୍ଚରୀଙ୍କୁ ଆବଶ୍ୟକୀୟ ଆଦେଶ ଦେଇ ଆସୁଥିଲେ । ଆଜିକାଲି ଯୁଗରେ କର୍ମଗ୍ଚରୀମାନେ ତାଂକ ଇଚ୍ଛାମୁତାବକ ଅନୁପସ୍ଥିତ ହୁଅନ୍ତି । ତେଣୁ ଯଥାସମୟରେ

ପୁସ୍ତକଟି ପ୍ରକାଶ ପାଇବା ସମ୍ଭବପର ହେଉନଥାଏ। ସେ ତାଂକୁ ଯଥାରୀତି ଆଦେଶ ଦେଇଥାନ୍ତି। ଏପରି ଘଟେ ଯେ ନୀଳକଣ୍ଠଙ୍କ ଶ୍ରାଦ୍ଧ ଦିବସ ବା ଜନ୍ମ ଜୟନ୍ତୀରେ ସଭାକୁ ଯିବାବେଳକୁ, ଏପରିକି ସଭା ଆରମ୍ଭ ହେବାବେଳକୁ ଆବଶ୍ୟକୀୟ ୧୫/୨୦ ଖଣ୍ଡ ପୁସ୍ତକ ତାଂକ କର୍ମଚାରୀଙ୍କ ହାତରେ ସଭାସ୍ଥଳକୁ ପଠାଇ ଦେଉଥିଲେ। ନୀଳକଣ୍ଠ ଦାଶଙ୍କ ସହ ବିଶେଷ ପରିଚୟ ଥିବାହେତୁ କେତେକ କ୍ଷେତ୍ରରେ ଆବଶ୍ୟକୀୟ ସଂଶୋଧନ ମଧ୍ୟ କରି ଦେଉଥିଲେ। ମୁଁ ଲକ୍ଷ୍ୟ କରିଚି ତାଂକର ସାହିତ୍ୟିକ ଜ୍ଞାନ ମଧ୍ୟ ଖୁବ୍ ଭଲ ଥିଲା।

ଆଉ ଗୋଟିଏ କଥା – ସେ କେତେକ ବଂଗାଳୀ ଶ୍ରମିକ, କର୍ମଚାରୀ ଓ ସହାୟକମାନଙ୍କୁ କଲିକତାରୁ ନେଇଆସିଥିଲେ ଏବଂ ତାଂକୁ ବଡ଼ ଶ୍ରଦ୍ଧା କରୁଥିଲେ। ସାମାନ୍ୟ କାର୍ଯ୍ୟ ଥିଲେ ମଧ୍ୟ ଉପଯୁକ୍ତ ଦରମା ଦେଇ ସେମାନଙ୍କୁ ପୋଷୁଥିଲେ କହିଲେ ଅତ୍ୟୁକ୍ତି ହେବ୍‌ନାହିଁ।

ଏହିପରି ଜଣେ ବ୍ୟକ୍ତିଙ୍କର ଦେହାବସାନ ହେବାର ୮ ଦିନ ମଧ୍ୟରେ ସେ ତାଂକ ପରଲୋକ ହେବାର ଦୁଃଖ ସହି ନପାରି ଦେହତ୍ୟାଗ କରିଗଲେ। ଏବେ ତାଂକ ପୁତ୍ର ମଧ୍ୟ ପ୍ରେସ୍‌ର କାମ ଦେଖୁଛନ୍ତି।

ସମିତିର ପ୍ରକାଶିତ ୧୫ ଖଣ୍ଡି ପୁସ୍ତକରୁ ଦୁଇଖଣ୍ଡି ମାତ୍ର ଅନ୍ୟତ୍ର ଛପାଇବାକୁ ହୋଇଥିଲା ଓ ଏଥିଲାଗି ତାଙ୍କର ଅନୁମତି ମୁଁ ନେଇଥିଲି।

**ପାଣିବାବୁଙ୍କ ସଂବର୍ଦ୍ଧନା** :– ସମିତି ତରଫରୁ ନୀଳକଂଠଙ୍କ ଜନ୍ମ ଶତବାର୍ଷିକୀ ଉପଲକ୍ଷେ ଯେଉଁ ବିଶିଷ୍ଟ ବ୍ୟକ୍ତିମାନେ ଶତବାର୍ଷିକୀ ପାଳନରେ ବିଶେଷ ସହାୟତା କରିଥିଲେ ସେମାନଙ୍କୁ ଏକ ସାଧାରଣ ସଭାରେ ସଂବର୍ଦ୍ଧନା କରାଯାଇଥିଲା। ମାତ୍ର ପାଣିବାବୁଙ୍କ ପାଇଁ ଏକ ସ୍ୱତନ୍ତ୍ର ଉତ୍ସବର ଆୟୋଜନ କରାଯାଇଥିଲା। ଏଥିଲାଗି ତାଂକ ପ୍ରେସ୍‌ର କର୍ମକର୍ତ୍ତା ଓ କର୍ମଚାରୀମାନଂକୁ ଏଥିସହ ସଂପୃକ୍ତ କରିବା ଲାଗି ପ୍ରେସ୍‌ର ପ୍ରଥମ ହଲ୍‌ରେ ଏହା ଅନୁଷ୍ଠିତ ହୋଇଥିଲା। ଏଥିରେ ଯୁବ ସାହିତ୍ୟିକ, 'ଦିନଲିପିର' ସଂପାଦକ ଶ୍ରୀ ସତ୍ୟ ମହାପାତ୍ର ସଭାପତିତ୍ୱ କରିଥିଲେ ଓ ସମିତିର ଅନ୍ୟତମ ଉପସଭାପତି ମାନ୍ୟବର ମନ୍ତ୍ରୀ ଶ୍ରୀଯୁକ୍ତ ହରିଶ୍ଚନ୍ଦ୍ର ବକ୍ସିପାତ୍ର ମୁଖ୍ୟବକ୍ତା ଭାବେ ଯୋଗଦେଇଥିଲେ। ନୀଳକଣ୍ଠଙ୍କ ରଚିତ ଭକ୍ତି ସଂଗୀତ "କାହାରେ ବସିଚି ଗୃହିଁ" ସମିତିର ଗାୟକ ନାରାୟଣ ରଥ ଗାନ କରିଥିଲେ। ଏଥିରେ ପାଣିବାବୁଙ୍କୁ ରେଶମର ଗୋଟିଏ ଶାଲ୍ ସହିତ ଏକ ସେଟ୍ ସମିତି ପ୍ରକାଶିତ ପୁସ୍ତକ ଉପହାର ଦିଆଯାଇଥିଲା। ସେତିକି ଆମର ଶେଷ ଉପହାର। ତାଙ୍କର ପୁତ୍ର ପ୍ରେସ୍ କାର୍ଯ୍ୟ ଦେଖୁଥିଲେ ମଧ୍ୟ ସରୋଜ ଭଟ୍ଟାଚାର୍ଯ୍ୟ ନାମକ ଏକ ବ୍ୟକ୍ତି ପ୍ରେସ୍ ଚଳାଉଥିଲେ କହିଲେ ଚଳେ। ମୁଁ, ତାଂକଠାରୁ ଶୁଣିଲି ଜଗଦୀଶବାବୁଙ୍କ ଦେହାବସାନ ହୋଇଗଲେ ମଧ୍ୟ ସେମାନେ ଠିକ୍ କରିଛନ୍ତି ପ୍ରେସ୍‌ରୁ ପ୍ରକାଶ ପାଉଥିବା 'ସମାବେଶ' ପତ୍ରିକା ପ୍ରକାଶନ ଏବଂ ପ୍ରେସ୍ କାର୍ଯ୍ୟ ଯଥାରୀତି ଚାଲିବ। ତାହା କାର୍ଯ୍ୟରେ ପରିଣତ ହେଲେ ଏହାହିଁ ତାଂକ ପ୍ରତି ଉପଯୁକ୍ତ ସମ୍ମାନ ଓ ଶ୍ରଦ୍ଧାଞ୍ଜଳି ହେବ। ତାହା ସଫଳ ହେଉ ଏତିକି ଆମର କାମନା।

••••

# ଶୂନ୍ୟ ସମାବେଶ

ଡଃ ଭାରତୀ ମହାପାତ୍ର

ସମାବେଶ ଫୁଲବିତାନରୁ ହଜିଗଲା
ମାଳାକାର କାହିଁ,
କାହାକୁ ନକହି ଅକାଳରେ
ଉଡ଼ିଗଲା ଫୁର୍‌କିନି ଅଜଣା ରାଇଜକୁ ।
ସେ ନିଜେ ଏକା ଥିଲା ସୁରଭିତ ଫୁଲ
ତା'ର ଶେଷପାଖ ଲେଖାଥିଲା
ଅମୂଲ୍ୟ ଅମୂଲ, ସେଥିରେ ଥିଲା
ମର୍ମଦାହି ବ୍ୟଥା, ଚେନାଏ ହସ
ଓ ଅତୀତର ଝୁଲ
ସମାବେଶ ମଣ୍ଡପରେ ଏକାଠି ବସି
କରିଥିଲା କେତେ କବି,
ଲେଖକଙ୍କୁ ଏକ ପରିବାର କରି,

ଜୀବନର ନିଆଁ ଧୂଆଁ ପ୍ରହରରେ ସିଝି ସିଝି
ଅମଳିନ ଥିଲା ସେହି ଯେ ସ୍ତବକ
ଆଜି ସନାତନ ସତ୍ୟରୂପେ ଗଲା ଲୁଚି
ଆଉ କେହି ଖୋଜିବାର ନାହିଁ ।
ଅତୀତ ପଖାଳି ସାଉଁଟି ସାଉଁଟି
ସମାବେଶ ପତ୍ରିକାର ପାଖୁଡ଼ା ଭିତରେ
ତମେ ତାଙ୍କୁ ଖୋଜି ବି ପାଇବ,
ସ୍ନେହ ସ୍ନିଗ୍ଧ ବନ୍ଧୁମେଳ ଯୁଥେ ।
ତମେ ତାଙ୍କୁ ମନେ ପକାଇବ, ମାତ୍ର
ଉଇକେଟ୍‌ଟା ଯାଇଅଛି ପଡ଼ି, ଖେଳାଳି
ଯାଇଛି; ପାଭିଲିୟାନ୍ ଛାଡ଼ି
ବହୁତ ଦୂରକୁ ।

●●●●

# ଜହ୍ଲୁରୀ

## ଉମାକାନ୍ତ ମହାପାତ୍ର

ଜଗଦୀଶବାବୁଙ୍କ ଜୀବିତାବସ୍ଥାରେ ସମାବେଶର ୯୪ର ବିପ୍ଳବ ସଂଖ୍ୟା ବାହାରିଲା। କିନ୍ତୁ ସେଥିରେ ମୁଁ ମହାକବି ଇକ୍‌ବାଲଙ୍କ ବିଷୟରେ ଏକ ପ୍ରବନ୍ଧ ଲେଖିଥିଲି। କିନ୍ତୁ ଆଜି ସେହି ଇକ୍‌ବାଲଙ୍କର ଏକ ଶେର୍ ବା ଦ୍ୱିପଦୀ କେବଳ ମନେପଡୁଛି।

ହଜାରୋଁ ସାଲ୍ ନର୍ଗିସ୍ ଅପନୀ ବେନୁରୀ ପେ ରୋତୀ ହୈ ବଡ଼ୀ ମୁସ୍କିଲ୍ ସେ ହୋତା ହୈ ଚମନ୍ ମେଁ ଦୀଦାୱର୍ ପୈଦା।

ନରଗିସ୍ (Narcisus) ପୁଷ୍ପ ସହସ୍ର ବର୍ଷ ଧରି ତାହାର ସୌନ୍ଦର୍ଯ୍ୟର ବ୍ୟର୍ଥତା ଲାଗି ବିଳାପ କରୁଛି। ପ୍ରକୃତ ଦୃଷ୍ଟିବାନ୍ ଜଣେ ବହୁ କଷ୍ଟରେ, ବହୁ ପ୍ରତୀକ୍ଷାର ପରେ, ଉପବନରେ ଜନ୍ମ ନିଏ।

ସାହିତ୍ୟ ସୃଷ୍ଟି କରିବା ଏକ ବ୍ୟକ୍ତିଗତ କ୍ଷମତା ଓ ଆବେଗ ଉପରେ ନିର୍ଭରଶୀଳ। ତାହା ସେହି ନରଗିସ୍ ଫୁଟିଲା ପରି। କିନ୍ତୁ ତାକୁ କିଏ ଜଣେ ଚିହ୍ନିବା ଓ ଅନ୍ୟମାନଙ୍କୁ ଚିହ୍ନାଇଦେବା ଦରକାର। ତାଙ୍କୁ ପୃଷ୍ଠପୋଷକତା ଯୋଗାଇଦେବା ଦରକାର। ସେ ଜହ୍ଲୁରୀ ନଥିଲେ ସାହିତ୍ୟ ହିଁ ଗଢି ଉଠିବା ମୁସ୍କିଲ୍। ଏକଥା ସତ ଯେ ସମାଲୋଚକ କିଛିଟା ଏହି କାମ କରେ। ସେ ଚିହ୍ନେ ଓ ଚିହ୍ନାଏ। କିନ୍ତୁ ସେ ଜହ୍ଲୁରୀ ନୁହେଁ। କାରଣ ଜହ୍ଲୁରୀ ଗନ୍ତାଘରର ମାଲିକ। ସେ ସଂରକ୍ଷଣ ମଧ ଦିଏ। ସେ ସାହିତ୍ୟିକକୁ ପ୍ରକାଶ ମାଧମ ଦିଏ। ସେ ଏକ ମଳୟ ପବନ ଯେ କି ନାନା ପୁଷ୍ପର ସୁଗନ୍ଧ ପ୍ରଚାର କରିଦିଏ।

ଓଡ଼ିଆ ଭାଷା ଦରିଦ୍ର ନୁହେଁ। ଓଡ଼ିଆ ସାହିତ୍ୟ ଦରିଦ୍ର ନୁହେଁ। ଏଠି ପ୍ରତିଭାର ଅଭାବ ନଥିଲା ଓ ନାହିଁ। କିନ୍ତୁ ଗୋଟିଏ ଅଭାବ ବିଶେଷ ଦେଖାଯାଏ। ତାହା ପୃଷ୍ଠପୋଷକତାର। ଓଡ଼ିଆରେ ତ କେହି ପଇସା ଲାଗି ଲେଖେ ନାହିଁ ଏବଂ ଲେଖାରେ ପଇସା ନାହିଁ। ମୁଁ କେବଳ ସାହିତ୍ୟ କଥା କହୁଛି। କି (key) ବହିର କଥା କହୁନାହିଁ। ଏଣୁ ଲେଖକ ଏଠି ପ୍ରକାଶ ମାଧମ ଖୋଜେ। ଏହି ସମସ୍ୟା ନୂଆ ଲେଖକ ଲାଗି ବଡ଼ ଗୁରୁତ୍ୱପୂର୍ଣ୍ଣ, କାରଣ ପ୍ରବୀଣମାନେ ଏପରି ଚକାମାଡ଼ି ବସିଥାଆନ୍ତି ଯେ ସେଠି ଆସନ କ'ଣ, ଠିଆ ହେବା ଜାଗା ବା Standing Room ନାହିଁ। ଯଦି କପାଳକୁ ଜଣେ ସେପରି ପାରଖୀ ଜହ୍ଲୁରୀ ମିଳେ ଯେ କି ନାମର ଆଗକୁ ଯାଇ କେଉଁଟା ସୁନା, କେଉଁଟା ଖାଦ ଧରିପାରେ ଓ ସୁନାକୁ ତାହାର ଆସନରେ ପ୍ରତିଷ୍ଠିତ କରିପାରେ ତାହାହେଲେ ଅହୋଭାଗ୍ୟ। ଆମର ସୁକୃତର ଫଳ ଯେ ଏତେକାଳ ଧରି ଆମେ ଜଣେ ସେପରି ଜହ୍ଲୁରୀ ପାଇଥିଲୁ। ଜଗଦୀଶବାବୁଙ୍କୁ ଓ ତାଙ୍କ ସାଥିରେ ତାଙ୍କ ଗନ୍ତାଘର ସମାବେଶକୁ ମଧ ପାଇଥିଲୁ। ଏପରି ଜହ୍ଲୁରୀଙ୍କ ସେବା ଅତି

ଆବଶ୍ୟକ । ସ୍ୱର୍ଗତ ବିଶ୍ୱନାଥ କର ଓ ଉତ୍କଳ ସାହିତ୍ୟ, ଡକ୍ଟର ମହତାବ ଓ ଝଙ୍କାର, ଏବଂ ଜଗଦୀଶବାବୁ ଓ ସମାବେଶ, କେତେ ପ୍ରତିଭାକୁ ସାମ୍ନାକୁ ଆଣିନାହାନ୍ତି । କେତେ ଫୁଲ ଫୁଟାଇ ନାହାନ୍ତି ।

ମୁଁ ଜଗଦୀଶବାବୁଙ୍କ ସହିତ ପରିଚିତ ହୋଇଛି ଅନେକ ଡେରିରେ, କାରଣ ମୁଁ ପରିଣତ ବୟସରେ ହିଁ ଲେଖିବା ଆରମ୍ଭ କଲି । କିନ୍ତୁ ପ୍ରଥମରୁ ହିଁ ମୁଁ ତାଙ୍କର ଅଯାଚିତ ସୌହାର୍ଦ୍ଦ୍ୟ ପାଇ ଆସିଛି । ମୁଁ ମୂଳରୁ ସାହିତ୍ୟ ଲେଖିବି ବୋଲି ଭାବି ନଥିଲି । ମୁଁ ଆନ୍ତର୍ଜାତିକ ସମସ୍ୟାର ଟୀକାକାର ବା commentator ଭାବେ କିଛି ଓଡ଼ିଆରେ ଲେଖିବାକୁ ମନସ୍ଥ କରିଥିଲି । କିନ୍ତୁ ତିନି ଗୁରିଜଣ ବନ୍ଧୁ, ଯାହାଙ୍କ ମଧ୍ୟରେ ଜଗଦୀଶବାବୁଙ୍କର ବିଶେଷ ସ୍ଥାନ ଅଛି, ମୋତେ ରମ୍ୟରଚନା ଲେଖିବାକୁ ପ୍ରବର୍ତ୍ତାଇଥିଲେ । ଗୋଟିଏ ସାହିତ୍ୟ ପତ୍ରିକା ଚଳାଇବା ସାମାନ୍ୟ କାମ ନୁହେଁ । ତାହାର କାରଣ ତାହା ଏକପ୍ରକାର ଅର୍ଥନୈତିକ ସ୍ରୋତରେ ଉଜାଣି ଡଙ୍ଗା ବାହିବା । ସାଧାରଣତଃ ସେହି ପତ୍ରିକା ସଫଳ ହୋଇପାରେ ଯାହା ପଛରେ ଏକ ସମ୍ବାଦପତ୍ରର ପୃଷ୍ଠପୋଷକତା ଥାଏ । ଝଙ୍କାର ପଛରେ ପ୍ରଜାତନ୍ତ୍ର ଅଛି । ବଙ୍ଗଳାରେ "ଦେଶ" ପଛରେ ଆନନ୍ଦବଜାର ଗ୍ରୁପ୍ ଠିଆ ହୋଇଛି । କିନ୍ତୁ ଜଗଦୀଶବାବୁଙ୍କ ପାଖରେ ତ ସେପରି କିଛି ଆଶ୍ରା ନଥିଲା । ବିଶ୍ୱନାଥ କରଙ୍କ ବିଷୟରେ ଫକୀର ମୋହନ ଲେଖିଥିଲେ,

*"ମାସିକ ପତ୍ରିକା ଢେର ସ୍ୱରୂପ ଦେଖାଇ*
*ପାଣିର ଫୁଟୁକା ଗଲେ ପାଣିରେ ଉଭାଇ ।*

*ଧନ ନାହିଁ, ସାହା ନାହିଁ, ତୁଚ୍ଛା ସାହସରେ*
*ଦିନ ରାତି ଲାଗି ପଡ଼ିଅଛ ସାହିତ୍ୟରେ ।"*

ଏହା ଜଗଦୀଶବାବୁଙ୍କୁ ମଧ୍ୟ ଖୁବ୍ ଖାପ ଖାଉନାହିଁ କି ? ୧୯୫୫ରେ 'ସମାବେଶ' ପ୍ରକାଶ ପାଇ ଆଜି ପର୍ଯ୍ୟନ୍ତ ତ "ପତନ ଅଭ୍ୟୁଦୟ ବନ୍ଧୁର ପନ୍ଥ" ଦେଇ ଗ୍ଲଲି ଆସିଛି । ତାହା ଯେ କିପରି କଠିନ କର୍ମ, ତାହା ହଠାତ୍ ଜାଣି ହୁଏନାହିଁ । ଇଂରାଜୀର ମଧ୍ୟ ଭଲ ଭଲ ପତ୍ରିକା ମରିଯାଇଛି । ପତ୍ରିକାର ବିକ୍ରିରେ ଖର୍ଚ୍ଚ ଉଠିବ ନାହିଁ । ବିଜ୍ଞାପନ ଦରକାର । ବିଜ୍ଞାପନଦାତା ଖୋଜିବ ସର୍କୁଲେସନ୍ । ସର୍କୁଲେସନ୍ ବଢାଇବାକୁ ହେଲେ ନିଜର ମାନ୍ୟତା ଛାଡ଼ି ସାଲିସ୍ କରିବାକୁ ହେବ । ସିନେମା ଷ୍ଟାର ଓ ରାଜନୈତିକ ନେତାଙ୍କ ବିଷୟରେ ସତ ମିଛ ଓ ବେଶି ସୁସ୍ୱାଦୁ ରସାଳ ମିଛ ଲେଖିବାକୁ ହେବ । ଏହି ସାଲିସ ଜଗଦୀଶବାବୁ କରିବାକୁ ପ୍ରସ୍ତୁତ ନଥିଲେ । "ଦେଶ" ବା "ଝଙ୍କାର" ସାଲିସ୍ କରି ନାହାନ୍ତି ସତ, କିନ୍ତୁ ତାଙ୍କର ସାହା ଅଛି, ଆଶ୍ରା ଅଛି । ଏହିପରି କାଳ ଆସିଲାଣି ଯେ ପତ୍ରିକା କ'ଣ

ସମ୍ବାଦପତ୍ର ମଧ୍ୟ ମ୍ୟାନେଜ୍‌ମେଣ୍ଟ ପଣ୍ଡିତମାନଙ୍କ ହାତରେ ପଡ଼ି Institution of Productରେ ଆସି ପହଞ୍ଚିଲାଣି । ଇଂଲଣ୍ଡରେ ହିଁ ପ୍ରେସ୍‌ର କି ଅବସ୍ଥା । ଏଥିମଧ୍ୟରେ ଯେଉଁ ଜଣେ ଅଧେ ପୌତିରିଷଂଣ ପୋକକୁ ରବି ବା ପୁଳିନ୍ଦ ପେଜକୁ ହବି କହିବାକୁ ପ୍ରସ୍ତୁତ ନୁହନ୍ତି ଏବଂ ତାଙ୍କର ମାନ୍ୟତାର ମୂଲ୍ୟ ଦେବାକୁ ପ୍ରସ୍ତୁତ, ସେମାନେ ନମସ୍ୟ । ଏପରି ଲୋକଙ୍କର ମୃତ୍ୟୁ କେବଳ ବନ୍ଧୁ ବା ଆତ୍ମୀୟ ବିୟୋଗ ନୁହେଁ। ତାହାଠାରୁ ମଧ୍ୟ ବେଶି ପୀଡ଼ାଦାୟକ ତାଙ୍କର ମାନ୍ୟତାର ମୃତ୍ୟୁ ।

ଆଉ କ'ଣ କହିବି । ଉପନିଷଦରେ ଋଷି କହିଛନ୍ତି–

*"ବାୟୁରନିଳମମୃତମେଦଂ ଭସ୍ମାନ୍ତଂ ଶରୀରମ୍ ।*
*ଓଁ କ୍ରତୋ ସ୍ମର କୃତଂ ସ୍ମର, କ୍ରତୋ ସ୍ମର କୃତଂ ସ୍ମର ।"*

(ଏହି ଶରୀର ଭସ୍ମୀଭୂତ ହେଉ, ପ୍ରାଣବାୟୁ ମହାବାୟୁରେ ବିଲୀନ ହେଉ, ହେ ଓଁ ଶବ୍ଦ ପ୍ରତୀକ ଅଗ୍ନି, ମୋର ଯାହା ସ୍ମରଣୀୟ ତାହା ସ୍ମରଣ କର । ମୋର ଯାହା କୃତ ବା ସତ୍‌କର୍ମ ତାହା ସ୍ମରଣ କର ।)

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।

••••

*"କାୟ ମନବାକ୍ୟେ ଯେଉଁ ସତ୍ୟ ଆଶ୍ରେ କରେ,*
*ତ୍ରିତାପ ଦୁଃଖ ତା'ଠାରୁ ରହେ ବହୁ ଦୂରେ ॥*
*ସତ୍ୟେ ଆତ୍ମ ସମର୍ପଣ କରିବ ଯେ ନର,*
*ସେ ନିଶ୍ଚେ ଦେବତା ବୋଲି ଅଚ୍ୟୁତ ବିସ୍ତର ॥*

ବେଳେ ବେଳେ 'ସତ୍ୟ' ବଡ଼ ନିଷ୍ଠୁର ଓ ନିର୍ମମ ଭାବରେ ମଣିଷକୁ ଆଘାତ କରିଥାଏ। 'ଜଗଦୀଶବାବୁ ଆଉ ନାହାନ୍ତି'– ଏହି ଦୁଃସମ୍ବାଦକୁ ସହଜ–ମାନସିକତା ଭିତରେ ସ୍ଥାନ ଦେବାକୁ ମୁଁ ହଠାତ୍ ଶଙ୍କିଗଲି। ତାଙ୍କର ବେପରୁଆ ଠାଣି, ଉଦ୍ଦାମ ସାହସ ଓ ସବୁ ପ୍ରକାର ବିଷ ହଜମ କରିପାରିବାର ଅତୁଟ ସାମର୍ଥ୍ୟ ମୋ' ଆଖି ଆଗରେ ଝଲସି ଉଠିଲା। ମୃତ୍ୟୁ ପ୍ରତି ତାଙ୍କର ଭ୍ରୂକ୍ଷେପ ନଥିଲା। ଜୀବନରେ ଘଟିଯାଇଥିବା ସମସ୍ତ ବିପର୍ଯ୍ୟୟ ଓ ଦୁର୍ଘଟଣା ଗୁଡ଼ିକୁ ସେ ଅବଲୀଳାକ୍ରମେ ଅନେକଥର ମୋ' ଆଗରେ ବର୍ଣ୍ଣନା କରିଛନ୍ତି। ଦୁଃଖ ନାହିଁ କି ଅନୁଶୋଚନା ନାହିଁ। ତାଙ୍କର ଗତିଶୀଳ ଜୀବନ ପ୍ରବାହ କେବେହେଲେ ଏହାଦ୍ୱାରା ପ୍ରତିହତ ହୋଇନାହିଁ। ନିଜର ତ୍ରୁଟି, ବିଚ୍ୟୁତି, ସାମୟିକ ଅଧଃପତନର ଯନ୍ତ୍ରଣା, ନିୟତିର କ୍ରୂର ପରିହାସ, ତାଙ୍କ ପ୍ରତି ପ୍ରଯୁକ୍ତ ରାଜନୈତିକ ଦୁରଭିସନ୍ଧି ଆର୍ଥିକ ଅନାଟନକୁ ସେ ହସି ହସି ଅଙ୍ଗୀକାର କରି ଆଗେଇ ଚାଲିଥିଲେ। ଅନ୍ୟମାନଙ୍କ ପାଇଁ ଆତ୍ମପ୍ରତ୍ୟୟର, ପ୍ରେରଣାର ସେ ଏକ ମୂର୍ତ୍ତିମନ୍ତ ଉତ୍ସ ଥିଲେ। ଜଣେ ଦରଦୀ ଶିଳ୍ପୀ, ସୁସାହିତ୍ୟିକ ଭାବରେ ଅର୍ଦ୍ଧଶତାବ୍ଦୀ ଧରି ସମଗ୍ର ଓଡ଼ିଶାରେ ସେ ସୁପରିଚିତ ଥିଲେ। ପ୍ରେସ୍ ମାଲିକର ସ୍ୱାଭିମାନ ଭିତରେ ନିଜକୁ ସୀମିତ ନରଖି ଓଡ଼ିଶାର ଓ ଓଡ଼ିଆ ଜାତିର ସ୍ୱାଭିମାନକୁ ସେ ଉଚ୍ଚାଙ୍ଗ ଆଦର୍ଶ ରୂପରେ ଗ୍ରହଣ କରିଥିଲେ। ମୃତ୍ୟୁର ଅଳ୍ପଦିନ ପୂର୍ବରୁ ମୋତେ ମୋ' କାର୍ଯ୍ୟାଳୟରେ ସାକ୍ଷାତ କରି ଅଭିମାନଭରା କଣ୍ଠରେ କହିଥିଲେ, "ଅନେକ ଅନୁରୋଧ ସତ୍ତ୍ୱେ ତମେ 'ସମାବେଶ'କୁ ଲେଖା ଦେଲନାହିଁ, ଆଉ କ'ଣ ମୋ' ଅନ୍ତେ ଲେଖିବ ?"

ସେ ସମସ୍ତଙ୍କର, ଲୋଡ଼ା ଅଲୋଡ଼ାର, ଅତି ଆପଣାର ଥିଲେ। ତାଙ୍କର ସ୍ମୃତି ଶକ୍ତି ଥିଲା ବିଚକ୍ଷଣ। ଓଡ଼ିଶାର ସମସ୍ତ ବର୍ଷୀୟାନ୍ ରାଜନୀତିଜ୍ଞ, ଯଶସ୍ୱୀ ବିଦ୍ୱାନ୍‌ମାନଙ୍କର ସେ ଅନ୍ତରଙ୍ଗ ଥିଲେ। ଓଡ଼ିଆ ସାହିତ୍ୟରେ ଆଜି ଯେଉଁମାନେ ପ୍ରମୁଖ ସ୍ଥାନ ଅଧିକାର କରିଛନ୍ତି, ସେମାନଙ୍କର ସାରସ୍ୱତ ବିକାଶର ଉଷାକାଳରେ ଜଗଦୀଶ ପାଣିଙ୍କର ଯେ ଅକୁଣ୍ଠ, ଅମାପ ଅବଦାନ ଥିଲା, ଏହା ସେମାନେ ନିଶ୍ଚିତଭାବେ ମୁକ୍ତକଣ୍ଠରେ ସ୍ୱୀକାର କରିବେ। ସେ ଯେଭଳି ନିର୍ଭୀକ, ସେହିପରି ନିର୍ବିବାଦୀୟ ପୁରୁଷ ଥିଲେ। ଧନ, ସମ୍ମାନ ଏପରିକି ଜୀବନ ପ୍ରତି ତାଙ୍କର ଯେଉଁ ଅନାସକ୍ତି ଓ ନିଃସ୍ପୃହତା ଥିଲା, ବୋଧହୁଏ ସେଇଥିପାଇଁ ସେ ବ୍ୟକ୍ତିର ଉର୍ଦ୍ଧ୍ୱରେ ଏକ ଅନୁଷ୍ଠାନ ପାଲଟି ଯାଇଥିଲେ। ରୁଗ୍‌ଣ, ଶୀର୍ଣ୍ଣ ଶରୀରରେ ବି, ସେ ଧରି ରଖିଥିଲେ ଦୁଃସହ ଦୁଃସାହସ, ଯନ୍ତ୍ରଣାର ଅନିର୍ବାପ ଜ୍ୟୋତିଃ ପୁଞ୍ଜ ଓ ଶାନ୍ତ ମଧୁର ଉଦାସୀନତା।

ଅଧ୍ୟାପକ ରାଜକିଶୋର ମିଶ୍ର



ତୁମ ସହ ୭୪ ସାଲରୁ ପ୍ରଥମ ଦେଖା ଦିନଠୁ ଆଜି ୯୪, କୋଡ଼ିଏ ବର୍ଷ ଭିତରେ ଯେତେବେଳେ ବସି କଥାବାର୍ତ୍ତା ହୋଇଚ୍ଚେ, ତମେ ସେଇ ଗୋଟିଏ କଥାହିଁ ସବୁବେଳେ ଚର୍ଚ୍ଚାକର- "ସମାବେଶ"। ସତରେ ତମ ସ୍ନେହ ଓ ଆନ୍ତରିକତା ଭିତରେ ହିଁ ସବୁ ସାହିତ୍ୟିକ ସାହିତ୍ୟସେବୀଙ୍କ ଏକ ବିଶାଳ ସମାବେଶ ସୃଷ୍ଟି କରିପାରିଥିଲ ତମେ। ଆଜି ତମ ଅନ୍ତେ ଆମେ ସମସ୍ତେ ଅନୁଭବ କରୁଚୁ ଏଡ଼େବଡ଼ ବରଗଛର ମୂଳଟାର ଅନ୍ତ ହୋଇଗଲା-ଆମେ ସବୁ ତମର ଓହଳ ମାତ୍ର।

ଏଇ ବର୍ଷଗୁଡ଼ାକରେ ତମେ ନିଜେ ସାହିତ୍ୟ ସୃଷ୍ଟି ନକଲେ ବି ସୃଷ୍ଟି କରିଚ ସାହିତ୍ୟିକ-ଇଆଠୁ ବଳି ଓଡ଼ିଆ ସାହିତ୍ୟର ସେବା ଆଉ ଅଧିକ କ'ଣ ବା ହୋଇପାରେ। 'ସ୍ରଷ୍ଟା' ସମାବେଶର ସେଇଥିପାଇଁ ତମେ ଜଣେ ଅଗ୍ରଗଣ୍ୟ ସଭ୍ୟ। ଏଇଥିପାଇଁ ତମର ସ୍ଥାନ ଆଜି ଆମ ସମସ୍ତଂକ ମନରେ-ଆମ ସମସ୍ତଂକ ହୃଦୟରେ।

ଖାଲି ସମାବେଶ ନୁହେଁ, ତମ ପ୍ରେସ୍, ତମ ପରିବାର ତମ ରୋଗବୈରାଗ, ବଂଧୁବାଂଧବ ସବୁଥିରେ ଅଧିକାଂଶ ସମୟରେ ମୋତେ ସାଥୀ କରିଚ। ବହୁବାର ସକାଳ ଛଅଟା ବେଳକୁ ମୁଁ ଉଠିନଥିବା ବେଳେ ମୋରି ପାଖରେ ପହଞ୍ଚିଚ-ସବୁ ସୁଖ ଦୁଃଖରେ ମୋତେ ଭାଗୀ କରିଚ; କେବେ କିଛି କରିପାରି ନଥିଲେ ବି ତମ ସୁଖଦୁଃଖର ଭାଗିଦାର ହୋଇପାରିଚି ବୋଲି ମୋର ସେଇଟା ଗର୍ବ। ତମର ସ୍ନେହ ଟିକକ ପାଇ ମୁଁ ଧନ୍ୟ ମନେ କରିଚି।

ତମେ ଏଇମିତି ସ୍ନେହ କାଙ୍ଗାଳର ସମାବେଶ-ବଂଧୁଗୁଡ଼ାଙ୍କ ମୁଣ୍ଡରେ ତମ ଭାର ଟେକି ଦେବ ଦେବ କହି କହି ଶେଷ ପର୍ଯ୍ୟନ୍ତ ସେତକ ବାକି ରଖିଦେଲ। କହୁଥିଲ ସବୁବେଳେ, 'ଅସମ୍ଭବ ହେଲେ ତମକୁ ମୁଣ୍ଡାଇ ଦେବି', ହେଲେ ତମ ହାତଟେକା ଦାନ ନେଇ ମୁଣ୍ଡାଇ ଧରିବାର ଭାଗ୍ୟ ଆମର ଜୁଟିଲା ନାଇଁ। ସେତକ କରିପାରିଥିଲେ ହୁଏତ ତମକୁ ଏଇ ଦିନଗୁଡ଼ାକରେ ସ୍ୱସ୍ତିରେ ନିଶ୍ୱାସ ମାରିବାର ସୁଯୋଗ ଆମେ ନେଇପାରିଲୁ ନାଇଁ। ସେ ଅବଶୋଷ ଆମ ସମସ୍ତଂକର।

ଆଜି ତମେ ନାହଁ। ହେଲେ ତମ ମୁଣ୍ଡରେ କ'ଣ ଯେ ଭାର ବୋହି ଚାଲିଥିଲ କେତେକାଂଶରେ ଆମେ ସମସ୍ତେ ଉପଲବ୍ଧି କରିଚୁ। ଅନ୍ୟ ସବୁ ଭାର ବହନ କରିବା ପାଇଁ ତମର ଦାୟାଦ ଅଛନ୍ତି। ବାକି ଯେଉଁ ଅଂଶ ଟିକକରେ ଆମ ସମସ୍ତଙ୍କର ଦାବି, ଯେଉଁ ଅଂଶ ଟିକକରେ ଆମେ ସମସ୍ତେ ତମର ଦାୟାଦ ସେ ହେଉଚି 'ତମ ପେଟରୁ କାଟି ୧୯୫୬ ସାଲରୁ ବଞ୍ଚାଇ ରଖିଥିବା ଓଡ଼ିଆ ସାହିତ୍ୟ ସମାଜକୁ ତମର ଦାନ-'ସମାବେଶ'।

ତମର ସ୍ନେହାବଦ୍ଧ, ଗୁଣମୁଗ୍ଧ ଦାୟାଦମାନେ ତମ ସ୍ମୃତିକୁ ବଞ୍ଚାଇ ରଖିବାକୁ ହେଲେ ତମର ସେହି ଅନବଦ୍ୟ ସୃଷ୍ଟି ସମାବେଶକୁ ବଞ୍ଚାଇ ରଖିବାକୁ ଆଗଭର ହୋଇ ଆସିବେ ଏଇ ମୋର ଆଶା। ସେଇ ହେବ ତମକୁ ସମ୍ମାନ-ସେଇ ହେବ ତମ ଆତ୍ମାର ଶାନ୍ତି।

ଗୁଣମୁଗ୍ଧ
**ସାନଭାଇ ଜାପାନି**

# ଏତିକି କାମନା

ସଂଘମିତ୍ରା ମିଶ୍ର

କେହି ଆଉ କହିବେନି, "ଚମତ୍କାର ହୋଇଛି ଲେଖାଟି
ତୁ ଜାଣିନୁ କେତେ ଶକ୍ତି କଲମରେ ତୋର
ଲେଖି ଯା, ବଳ ପାଉଥିଲା ଯାଏ
ଆଜି କେହି ନ କହନ୍ତୁ,
"ସମୟ କହିବ ଦିନେ ଜଣେ ଥିଲା
ଯାହା ପାଇଁ ସାହିତ୍ୟ ରାଇଜେ ଜନେ
ଆସିଥିଲା ପତ୍ର-ପୁଷ୍ପ ଫୁଲର ସମ୍ଭାର"
ସତରେ, ଯେଉଁ ମାଳି ଗୁନ୍ଥି ଦେଉଥିଲା
ତାର କୁଶଳୀ ହାତରେ
ପୂର୍ବପୁରୁଷ ସହିତ ଉତ୍ତରପୁରୁଷର ଭାବରାଜି
ସାତରଂଗେ ରଂଜି ସମାବେଶ
ରାତି ପାହିଲା ବେଳକୁ ଅତୀତ ପାଲଟିଗଲା
ସତେ ଅବା ମାନି କେଉଁ ଦିବ୍ୟଗୁରୁ ଅଲଙ୍ଘ୍ୟ ଆଦେଶ ।
ପଛରେ ପଡ଼ିରହିଛି ଅଶ୍ରୁସ୍ନାତ ପରିବାର
ଖଣ୍ଡିଉଡ଼ା ଦେଉଥିବା ନାତି ନାତୁଣୀ
ଯାହା ପାଇଁ ତୁମେ ଥିଲ
ବାତ୍ୟାଧ୍ୱସ୍ତ ସମୁଦ୍ରର ବତୀଘରଟିଏ,
ଜୀବନ ମୃତ୍ୟୁର ମଝିରେ ଠିଆହୋଇଥିବା ପତ୍ନୀ, କନ୍ୟା
ଥକି ଯାଉଥିବା ପୁଅ ବୋହୂ
ଜନ୍ମ ସହ ମୃତ୍ୟୁ ଆସେ
ଏ ଦର୍ଶନ ତତ୍ତ୍ୱ କଥା ତାଙ୍କୁ ଅବା ବୁଝାଇବ କିଏ ?

ନିଜ ଭଳି ବଂଚିଥିଲ ଆଜିଯାଏ
ଫୁଟ୍‌କି ମାରି ଉଡ଼େଇ ଦେଉଥିଲ
ଆମର ଛୋଟ ଛୋଟ ବୁଝାମଣା ତ୍ରୁଟି
ରୋଗ ଶୋକ ଦୈବୀ ଦୁର୍ବିପାକ ସତ୍ତ୍ୱେ
ସାହସ ଦେଉଥିଲ, ଆମଭଳି ଅଗଣିତ
ସମାବେଶ ପରିବାରର ମଣିଷମାନଙ୍କୁ
ଏତିକି ଆତ୍ମବିଶ୍ୱାସ
ସତେ କ'ଣ, ଜନ୍ମ କାଳୁ ରଖିଥିଲ ଆବୋରି ସାଉଁଟି
ତୁମେ ଚାଲିଗଲ ନିରବରେ, କେଉଁ ସାଧନା ପଥେ
ଶୁଣିଲ କି ଅନାହତ ମନ୍ତ୍ରସ୍ୱର ମୋହମୁଦ୍‌ଗରର
ନା ସ୍ୱାର୍ଥପର ପାଲଟିଲ କିଏ ଜାଣେ ?
ଏତିକି କାମନା ମୋର ଯହିଁଥାଅ ସୁଖେଥାଅ
ଅମୃତ ଦୃଷ୍ଟିରେ ଚାହଁ,
ତୁମକୁ ହରାଇ ଯିଏ ସର୍ବସ୍ୱାନ୍ତ
ସିଏ ତୁମ ଆପଣାର ପ୍ରିୟ ପରିବାର ।

••••

ଆଶ୍ଚର୍ଯ୍ୟବତ୍ ପଶ୍ୟତି କଶ୍ଚିଦେନ-
ମାଶ୍ଚର୍ଯ୍ୟବଦ୍ ବଦତି ତଥୈବ ଚାନ୍ୟଃ ।
ଆଶ୍ଚର୍ଯ୍ୟବଚ୍ଚୈନମନ୍ୟଃ ଶୃଣୋତି
ଶ୍ରୁତ୍ୱାପ୍ୟେନଂ ବେଦ ନ ଚୈବ କଶ୍ଚିତ୍ ।

# ଜଗଦୀଶବାବୁଙ୍କ ଏକାଦଶାହ ଉପଲକ୍ଷେ

**ଡକ୍ଟର ଇଂ ହରପ୍ରସନ୍ନ ମିଶ୍ର**

ସ୍ୱର୍ଗତ ଜଗଦୀଶବାବୁ ମୋର ଅତି ପ୍ରିୟ ବନ୍ଧୁ ଥିଲେ । ତାଙ୍କ ସହିତ ମୋର ବନ୍ଧୁତା ଆରମ୍ଭ ହୁଏ ୧୯୪୯ ମସିହାରେ । ସେତେବେଳେ ସେ କଲିକତାରେ ଶାମ ବଜାରସ୍ଥ ଓଡ଼ିଶା ହଷ୍ଟେଲରେ ରହୁଥାନ୍ତି । ରାଜନୈତିକ ଜୀବନର ପ୍ରାରମ୍ଭରେ ତାଙ୍କ ସହିତ ମୋର ଅନେକ ଅନୁଭୂତି ରହିଛି । ୧୯୪୯ ମସିହାର ହିନ୍ଦୁ–ମୁସଲମାନ ଦଙ୍ଗା କଲିକତାରେ ଭୟଙ୍କର ରୂପ ନେଉଥାଏ । ଜଗଦୀଶ୍‌ବାବୁ ଓଡ଼ିଆ ଛାତ୍ରମାନଙ୍କର ସୁରକ୍ଷା ପାଇଁ ଆପ୍ରାଣ ଉଦ୍ୟମ କରୁଥାନ୍ତି । ସେ ଡଃ ହରେକୃଷ୍ଣ ମହତାବଙ୍କର ଜଣେ ବିଶ୍ୱସ୍ତ ଅନୁଗତ ଥିଲେ ।

ଏହାପରେ ତାଙ୍କ ସହିତ ମୋର ଦେଖାହୁଏ ଭୁବନେଶ୍ୱରରେ ଅନେକ ବର୍ଷ ପରେ । ସେତେବେଳେ ସେ ଭୁବନେଶ୍ୱରରେ ପ୍ରେସ୍ ଆରମ୍ଭ କରୁଥାନ୍ତି । ଓଡ଼ିଆ ପତ୍ରିକା ସମାବେଶର ସେ ହେଉଛନ୍ତି ଜନ୍ମଦାତା । ମୁଁ ସେତେବେଳେ ଇଉ୍‌କଲ୍‌ର ମ୍ୟାନେଜିଙ୍ଗ୍ ଡାଇରେକ୍ଟର ଓ ତା'ପରେ ଇପିକଲ୍‌ର ଚେୟାରମ୍ୟାନ୍ ଥାଏ । ଅନେକ ସମୟରେ ସେ ଆସି ଆମ ଦେଶର ରାଜନୈତିକ ଜୀବନର ମୂଲ୍ୟବୋଧର ଅଧୋଗତି ବିଷୟରେ କହନ୍ତି । ତାଙ୍କ ମତରେ "ସମାଜ ଏପ୍ରକାର ଦୁର୍ଗତି ବେଶୀଦିନ ବରଦାସ୍ତ କରିପାରିବ ନାହିଁ । ଅଳ୍ପଦିନ ମଧ୍ୟରେ ରାଜନୈତିକ ବିପ୍ଳବ ନିଶ୍ଚୟ ଆସିବ କାରଣ ଦେଶର ପ୍ରକୃତ ରାଜନୀତି ବିପନ୍ନ ହୋଇଛି । ବର୍ତ୍ତମାନ ଶୋଷଣ ନୀତି ସମାଜକୁ କବଳିତ କରି ରଖିଛି" ।

ଜଗଦୀଶବାବୁ ଅତ୍ୟନ୍ତ ସରଳ, ନିରାଡ଼ମ୍ବର ଜୀବନଯାପନ କରୁଥିଲେ । ସେ ଅତ୍ୟନ୍ତ ପରିଶ୍ରମୀ ଓ ବନ୍ଧୁବତ୍ସଳ ଥିଲେ । ତାଙ୍କର ନିଜ ସହକର୍ମୀମାନଙ୍କ ପ୍ରତି ଅଗାଧ ସ୍ନେହ ଥିଲା । କ୍ୱାଲିଟି ପ୍ରେସ୍ ତାଙ୍କର ସାଧନା ଓ ସ୍ନେହର ଅବଦାନ । ସେ ତାଙ୍କର ବଡ଼ପୁଅ ବାବୁଲିର୍ ଅକାଳ ବିୟୋଗରେ ଅତ୍ୟନ୍ତ ମର୍ମାହତ ହୋଇପଡ଼ିଥିଲେ । ତଥାପି ତାଙ୍କର ଦୃଢ଼ ମନୋବଳରେ ସେ ତାଙ୍କ ସଂସାରକୁ ସୁଗ୍ଭୁରୂପେ ଚ଼ଳାଇ ଆସୁଥିଲେ । ଯେତେବେଳେ ତାଙ୍କର କୌଣସି ଉତ୍ସବ ଅନୁଷ୍ଠାନ ହୁଏ ସେ ମୋତେ ଲୋଡ଼ନ୍ତି ଓ ମୋର ଘରର ସମସ୍ତ କାର୍ଯ୍ୟରେ ସେ ମଧ୍ୟ ଯୋଗ ଦେଉଥିଲେ । ତାଙ୍କଠାରୁ ପାଇଥିବା ସ୍ନେହ, ଶ୍ରଦ୍ଧା ମୁଁ ଜୀବନରେ ଭୁଲିପାରିବି ନାହିଁ ।

*କେହି ରହିନାହିଁ ରହିବେ ନାହିଁଟି ଭବରଙ୍ଗ ଭୂମି ତଳେ*
*ସର୍ବେ ନିଜ ନିଜ ଅଭିନୟ ସାରି ବାହୁଡ଼ିବେ କାଳ ବଳେ" ।*

ଶେଷରେ ମୋର ଭଗବାନଙ୍କଠାରେ ଏତିକି ପ୍ରାର୍ଥନା ତାଙ୍କ ଆତ୍ମାର ସଦ୍‌ଗତି ହେଉ । ଭଗବାନ୍ ତାଙ୍କ ପରିବାରକୁ ଏ ଅକାଳ ବିୟୋଗ ସହିପାରିବା ଭଳି ଶକ୍ତି ଓ ସାହାସ ଦିଅନ୍ତୁ । ତାଙ୍କର ସହକର୍ମୀମାନଙ୍କୁ ମୋର ଅନୁରୋଧ ସେମାନେ ସମସ୍ତେ ଏକମନ ହୋଇ ତାଙ୍କ ଗଠିତ ଅନୁଷ୍ଠାନଟିର ଉତ୍ତରୋତ୍ତର ଉନ୍ନତି କରି ଗ୍ଭଲନ୍ତୁ, ଏହାହିଁ ହେବ ତାଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ।

# କର୍ମଯୋଗୀ - ଜଗଦୀଶବାବୁ

କୁଳମଣୀ ଆଗ୍ରର୍ଯ୍ୟ

କର୍ମରେ ନିୟତ ଉପନିବେଶ ଓ ତତ୍ ସହିତ ନିଷ୍ଠା, ବନ୍ଧୁ ପ୍ରୀତି ଏହି ତିନୋଟି ଭାଗବତ ଗୁଣରେ ଭୂଷିତ, ସର୍ବ ମୁଖରେ ଆଦୃତ ଓ ପ୍ରଶଂସିତ ଆମର ଜଗଦୀଶବାବୁ ।

ତାଙ୍କର କର୍ମଭୂମୀ ଓ ଧର୍ମପୀଠ କ୍ୱାଲିଟି ପ୍ରେସ୍, ମହାନଗରୀ ଭୁବନେଶ୍ୱରର ଗୋଟିଏ କୀର୍ତ୍ତିସ୍ତମ୍ଭ । ଜଗଦୀଶବାବୁଙ୍କ କଥାରେ ପ୍ରେସ୍‌ର ନାମ କେବଳ କ୍ୱାଲିଟି ନୁହେଁ, ଏହା ଗୁଣବତ୍ତାର, ପ୍ରତୀକ ମଧ୍ୟ ।

ମୋର ଦୀର୍ଘ ୧୨ ବର୍ଷର ସଂପର୍କ ମଧ୍ୟରେ ମୁଁ ଅନୁଭବ କରିଛି ଯେ, ତାର ଜୀବନର ଏକମାତ୍ର ତପସ୍ୟା ହେଲା, ସାରସ୍ୱତ ପତ୍ରିକା 'ସମାବେଶ' ଓ କ୍ୱାଲିଟି ପ୍ରେସ୍ । ମୋର ବିଶ୍ୱାସ, ତାର ଅମର ଆତ୍ମା ସର୍ବଦା ଏହି ଦୁଇଟି କର୍ମରେ ପ୍ରଚ୍ଛନ୍ନ ଭାବରେ ରହିଥିବ ଓ ଆଶୀର୍ବାଦ କରୁଥିବ ।

ଜଗଦୀଶବାବୁଙ୍କର ଏହି ଅମର କୀର୍ତ୍ତିଥିବା ପର୍ଯ୍ୟନ୍ତ ସେ ଲୋକମୁଖରେ ଅମର ହୋଇ ରହିବ ।

••••

*ଯଥାହି ପଥିକଃ କଶ୍ଚିତ୍ ଛାୟାମାଶ୍ରିତ ତିଷ୍ଠତି*
*ବିଶ୍ରାମ୍ୟ ଚ ପୁନର୍ଗଚ୍ଛେତଦ୍‌ବଭୂତ ସମାଗମଃ ॥*

# ମେଳା ଭାଙ୍ଗି ଗଲା

## ଗୌରହରି ଦାସ

ତରୁଣ କଥାକାର କହ୍ନେଇଲାଲ ଦାସଙ୍କ ମୃତ୍ୟୁପରେ ବିଖ୍ୟାତ କଥାକାର ଅଖିଳ ମୋହନ ପଟ୍ଟନାୟକ ଲେଖିଥିଲେ, 'କହ୍ନେଇ ହୃଦ୍‌ରୋଗରେ ମରିଗଲା, କାରଣ ତାର ହୃଦ୍‌ୟ ବୋଲି ଗୋଟିଏ ଜିନିଷ ଥିଲା।" ଜଗଦୀଶ ପାଣିଙ୍କ ହୃଦ୍‌ଯନ୍ତ୍ରକ୍ରିୟା ବନ୍ଦ ଜନିତ ମୃତ୍ୟୁ ଦୁଃସମ୍ବାଦ ପାଇବା ପରେ ଏ ଧାଡ଼ିଟି ଖୁବ୍ ବେଶି ମନେ ପଡିଥିଲା। ସମସ୍ତଙ୍କର ହୃଦୟ ନଥାଏ। ହୃତକପିଣ୍ଡ ହୃଦୟ ନୁହେଁ। ହୃଦୟର ବ୍ୟାପ୍ତି ଓ ଗଭୀରତା ହୃତ୍‌ପିଣ୍ଡଠୁ କାହିଁ କେତେଗୁଣ ବଡ଼, ଗହୀର। ଜଗଦୀଶବାବୁଙ୍କର କିନ୍ତୁ ହୃଦୟ ଥିଲା। ସେଇ ହୃଦୟର ହାର୍ଦ୍ଦିକତା ତାଙ୍କୁ ଈର୍ଷଣୀୟ ଲୋକପ୍ରିୟତା ଆଣି ଦେଇଥିଲା। ସାନଠୁ ବଡ଼ ପର୍ଯ୍ୟନ୍ତ ସମସ୍ତଙ୍କ ପାଖରେ ତାଙ୍କୁ ଆପଣାର କରି ଥୋଇଥିଲା।

ବ୍ୟକ୍ତିଗତ ଭାବେ ମୋର କ୍ୱାଲିଟି ପ୍ରେସ୍‌ର ମାଲିକ ଜଗଦୀଶବାବୁଙ୍କ ସଙ୍ଗେ ପ୍ରଥମେ ପରିଚୟ ହୋଇଥିଲା। 'ସମ୍ବାଦ'ରେ ଯୋଗଦେବା ପରେ ମୁଁ ଭୁବନେଶ୍ୱର ଆସିଲି। ଏହା ଭିତରେ ପ୍ରାୟ ଦଶବର୍ଷ ବିତିଗଲାଣି। ସମୟ କେଡ଼େ ସଅଳ ଚାଲିଯାଏ ଜଣାପଡ଼େ ନାହିଁ। ହଠାତ୍ ଦିନେ 'ସମ୍ବାଦ' ପ୍ରେସ୍‌ରେ ଗୋଟିଏ ସମସ୍ୟା ହେଲା। ଜଗଦୀଶବାବୁଙ୍କ ସହଯୋଗ ଲୋଡ଼ିବାକୁ ଗଲି। ଆଗରୁ ଥରେ ଦି'ଥର ଔପଚାରିକ ଦେଖାଚାହାଁ। ଅସମୟରେ ଯାଇ ପହଞ୍ଚିଲି। 'ସମ୍ବାଦ' ସମ୍ପାଦକଙ୍କ ତରଫରୁ ଅନୁରୋଧ ଜଣାଇଲି। ଜଗଦୀଶବାବୁ ତାଙ୍କ ପ୍ରେସ୍ ବନ୍ଦ କରି ସାରିଲେଣି। କର୍ମଚାରୀମାନେ ହାତଗୋଡ଼ ଧୋଇ ଯିବାକୁ ବାହାରିଲେଣି। ମୁଁ ବ୍ୟସ୍ତ ହେଲି। ଜଗଦୀଶବାବୁ ସାଙ୍ଗେ ସାଙ୍ଗେ ମୋତେ ପ୍ରତିଶ୍ରୁତି ଦେଲେ, କାମ ହେବ, ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ। ତା'ପରେ କେଉଁଆଡୁ କିଭଳି ଲୋକ ଆସିଲେ, କାମ ହେଲା ମୁଁ ଖବର ରଖିନାହିଁ। ସମୟ ପୂର୍ବରୁ ସେ କାମଟି କରି ଦେଇଦେଲେ। ମୁଁ ଗୋଟାଏ ବଡ଼ ଦାୟିତ୍ୱରୁ ମୁକ୍ତ ହୋଇଗଲି।

ସେଇ ପରିଚୟ ପରେ ତାଙ୍କର ବ୍ୟକ୍ତିତ୍ୱ ପ୍ରତି ମୋର ଆଗ୍ରହ ବଢ଼ିଲା। ରୁଚିବୋଧ, ପରିଚ୍ଛନ୍ନ ମୁଦ୍ରଣ ପ୍ରତି ନିଷ୍ଠା, ନିଜ କାମ ସମ୍ପର୍କରେ ଟିକିନିଖି ଜ୍ଞାନ ହାସଲ ମୋତେ ମୁଗ୍ଧ କରିଥିଲା। କିଛିଦିନ ମୁଁ ନିଜେ ଗୋଟିଏ ଛାପାଖାନା ବସେଇ ଚଳଉଥିଲି। କିନ୍ତୁ କେବଳ ପ୍ରୁଫ୍ ପଢ଼ିବା ଛଡ଼ା ଅନ୍ୟ କୌଣସି କାର୍ଯ୍ୟ ଶିଖିପାରିଲି ନାହିଁ। କମ୍ପୋଜିଂ ଅଳ୍ପବହୁତେ ଯାହା ଶିଖିଥିଲି ଭୁଲିଗଲି। ଜଗଦୀଶବାବୁ ପ୍ରେସ୍‌ର ସବୁକାମ ଶିଖିଥିଲେ। ସେଇଥିପାଇଁ ସେ ଜୀବନରେ ସଫଳ ହୋଇଥିଲେ ବୋଲି ମୋର ବିଶ୍ୱାସ।

ଗତ କିଛିବର୍ଷ ହେଲା ମୁଁ ଲକ୍ଷ୍ୟ କରିଛି ସେ ମୋତେ ଖୁବ୍ ଶ୍ରଦ୍ଧା କରୁଥିଲେ। ଅଧିକାଂଶ ଦିନ ଫୋନ୍ କରୁଥିଲେ। ବନ୍ଧୁ ଅସିତ୍ ପ୍ରଜାତନ୍ତ୍ର ଚାଲିଗଲା ପରେ ସେ ଖୁବ୍ ଦୁଃଖପ୍ରକାଶ କରିଥିଲେ। କିନ୍ତୁ ଶେଷ ପର୍ଯ୍ୟନ୍ତ ସେ ତାଙ୍କୁ ପ୍ରଶଂସା କରୁଥିଲେ। ଅନେକ

ମାଲିକଙ୍କୁ ଦେଖିଛି, କର୍ମଚାରୀ ଜଣେ ଚାଲିଗଲେ ସେମାନେ ତାକୁ ନିନ୍ଦା କରନ୍ତି, ତାର ଭଲ ନ ଦେଖି ଖରାପ ଦେଖନ୍ତି । ଜଗଦୀଶବାବୁ ତାର ଉଜ୍ଜ୍ୱଳ ବ୍ୟତିକ୍ରମ ଥିଲେ ।

ତାଙ୍କର ବ୍ୟକ୍ତିଗତ ଦୁଃଖ ବହୁତ ଥିଲା । ଅନେକ ଜାଗାରେ ତାଙ୍କୁ ଦେଖିଛି । ଦୁର୍ବଳ ସ୍ୱାସ୍ଥ୍ୟର ବୁଢ଼ା ମଣିଷଟେ ଧଳା ପଞ୍ଜାବି ଓ ସଫା ଧୋତି ପିନ୍ଧି ଛିଡ଼ା ହୋଇଥିବେ ଦୂରଛଡ଼ା ହୋଇ । ସମସ୍ତଙ୍କ ସାଙ୍ଗେ ମିଶନ୍ତି ମେଳାପୀ ପରି, ପୁଣି ଅଲଗା ହୋଇ ବାରି ହୋଇ ପଡ଼ନ୍ତି ଗୋଟେ ବ୍ୟତିକ୍ରମ ହେଇ । ତାଙ୍କ ସ୍ୱାସ୍ଥ୍ୟ କଥା ଥରେ ପଚାରିଥିଲି । ତାଙ୍କ ଆଖି ବାଷ୍ପାକୁଳ ହୋଇ ପଡ଼ିଥିଲା । ବଡ଼ପୁଅ ଚାଲିଯିବା ପରେ ତାଙ୍କର ଯୋଉ ପ୍ରଚଣ୍ଡ ଦୁଃଖ ହୋଇଥିଲା ତାହା ଲୁହ ହୋଇ ପଦାକୁ ବାହାରି ଆସିଥିଲା ।

ଲେଖିବସିଲେ ଅନେକ କଥା ମନେପଡୁଛି । ସୁରେନ୍ଦ୍ରବାବୁ (ବିଖ୍ୟାତ ଲେଖକ ସୁରେନ୍ଦ୍ର ମହାନ୍ତି) ବଞ୍ଚିଥିଲେ । ଥରେ ଜଗଦୀଶବାବୁ, ଦାଶ ବେନହୁର, ସୁରେଶ ଶତପଥୀ ଓ ମୁଁ କଟକ ଯାଇଥାଉ । ଜଗଦୀଶବାବୁ କିଶୋରୀ ଚରଣ ଦାସ ଓ ସୁରେନ୍ଦ୍ରବାବୁଙ୍କ ଠାରୁ 'ସମାବେଶ'ର ପୂଜାସଂଖ୍ୟା ପାଇଁ ଗପ ମାଗିବାକୁ ଯାଇଥାନ୍ତି । ସୁରେନ୍ଦ୍ରବାବୁଙ୍କ ସାଙ୍ଗେ କଥା ହେଲାବେଳେ ଆମେ ପାଖରେ ବସିଥାଉ । ସାର୍ (ସୁରେନ୍ଦ୍ରବାବୁ) ତାଙ୍କର ଅକ୍ଷମତା ପ୍ରକାଶ କଲେ–'ଦେହ ଭଲ ରହୁନାହିଁ । ଲେଖିପାରୁ ନାହିଁ । ମୋତେ ଜଗଦୀଶ ଛୁଟି ଦିଅ ।' ଆଉ କୌଣସି ସମ୍ପାଦକ ହୋଇଥିଲେ ଏତିକିରୁ ଫେରି ଆସିବା କଥା । ସୁରେନ୍ଦ୍ରବାବୁ କ୍ଷଣକୋପୀ । ହଠାତ୍ ରାଗିଯିବେ । ରୋକ୍‌ଠୋକ୍ କଥା । କିନ୍ତୁ ଜଗଦୀଶବାବୁ ନିରବରେ ଫେରି ଆସିଲେ ନାହିଁ । ସେ କହିଲେ 'ଆଜ୍ଞା ! ଦି'ଥର ଷ୍ଟ୍ରୋକ୍ ହେଇଗଲାଣି । ଆର ପୂଜାକୁ ବଞ୍ଚିବି କି ନାହିଁ ଜାଣିନି । ଆପଣଙ୍କ ଗପଟେ କ'ଣ 'ସମାବେଶ'ରେ ଛପା ହେବନାହିଁ.........!' ତାଙ୍କ ତୁଣ୍ଡରୁ କଥା ସରିନାହିଁ । ସୁରେନ୍ଦ୍ରବାବୁ ତାଙ୍କର କମ୍ପିତ ଦକ୍ଷିଣହସ୍ତ ଉଠେଇ ବାରଣ କଲେ, "ଏ କ'ଣ କହୁଛ ଜଗଦୀଶ, ତମେ ମୋ ପୁଅପରି । ତମେ ଆଗରୁ ଯିବା କଥା ମୋ ଆଗରେ କିମିତି କହୁଛ........?" ସେ ଏକ ଆବେଗର ମୁହୂର୍ତ୍ତ । ଲେଖକ–ସମ୍ପାଦକ ଉଭୟେ ଭାବପ୍ରବଣ ହୋଇ ପଡ଼ିଥାଆନ୍ତି । ଜଗଦୀଶବାବୁ ଆସିଲେ । ସୁରେନ୍ଦ୍ରବାବୁ 'ସମାବେଶ' ପୂଜା ସଂଖ୍ୟାପାଇଁ ଗପ ବି ପଠେଇଲେ । ଜଗଦୀଶବାବୁଙ୍କ ଅନୁରୋଧରେ କି ଆତ୍ମୀୟତା ଥିଲା କେଜାଣି ତାଙ୍କୁ ମନା କରିବା ଖୁବ୍ କଷ୍ଟ ହୋଇପଡ଼େ । ସେଇଥିପାଇଁ 'ସମାବେଶ'ର ପୂଜାସଂଖ୍ୟାରେ ସବୁ ବଡ଼ ବଡ଼ ଲେଖକଙ୍କ ଭଲ ଲେଖା ବାହାରେ ।

ଥରେ ମୁଁ କହିଲି 'ସମାବେଶ' ପୂଜାସଂଖ୍ୟାକୁ ଦଶହରା ବିଶେଷାଙ୍କ ନ କହି କାଳୀପୂଜା ବିଶେଷାଙ୍କ କହିବା ଉଚିତ ହେବ । ଅଷ୍ଟମୀ ଯିବ, ନବମୀ ଯିବ, ଠିକ୍ ଦଶହରା ବେଳକୁ ସମାବେଶ । ଜଗଦୀଶବାବୁ ହସିଥିଲେ । ଶେଷ ପର୍ଯ୍ୟନ୍ତ ତାଙ୍କ ଗାଡ଼ି ବିଜ୍ଞାପନ ସଂଗ୍ରହ କରୁଥାଏ । ଛୁଟି ପୂର୍ବଦିନ ପର୍ଯ୍ୟନ୍ତ ସେ ଅକ୍ଳାନ୍ତ ପରିଶ୍ରମ କରି ପୂଜାସଂଖ୍ୟା ପ୍ରସ୍ତୁତ କରନ୍ତି । ସେଇଥିପାଇଁ ଡେରି । ଜଗଦୀଶବାବୁ ମୋତେ ଉତ୍ତର ଦେଇଥିଲେ, 'ସମାବେଶ'ରେ ସବୁ ଆଗ ଧାଡ଼ିର ଲେଖକଙ୍କ ଲେଖା ଛପାଯାଏ । ପାଠକ ନିଶ୍ଚେ ସମାବେଶକୁ ଅପେକ୍ଷା କରିବ । ପ୍ରକୃତରେ ପାଠକ 'ସମାବେଶ' ପୂଜାସଂଖ୍ୟାକୁ ଅପେକ୍ଷା କରନ୍ତି । 'ସମାବେଶ'କୁ ବାଦ୍‌ଦେଲେ ପୂଜା ପତ୍ରିକା କିଣାପର୍ବ ସମ୍ପୂର୍ଣ୍ଣ ହୁଏନାହିଁ ।

କାହିଁକି କେଜାଣି ତାଙ୍କ ଉପରେ ମୁଁ ଅଧିକା ଜାହିରି କରୁଥିଲି । ସେ ଅଧିକାର ମୋତେ ତାଙ୍କର ଆତ୍ମୀୟତା ଦେଇଥିଲା । ମୁଁ ଯେତେବେଳେ ଯାହା କହିଛି ସେ ମୋ କଥା ରଖିଛନ୍ତି । ଦରକାର ହେଉ ନ ହେଉ ଅନେକ ସମୟରେ ମୋଠୁ, ପରାମର୍ଶ ଲୋଡ଼ିଛନ୍ତି । ସେ କହନ୍ତି 'ସମାବେଶ' ଲେଖକମାନଙ୍କର; ଜଗଦୀଶ ପାଣିର ନୁହେଁ । ଏ ଧରଣର କଥା ଶୁଣିଲେ କୋଉ ଲେଖକ ଜଗଦୀଶବାବୁଙ୍କୁ ଶ୍ରଦ୍ଧା ନ କରିବ !

ମୃତ୍ୟୁର ତିନିଦିନ ପୂର୍ବରୁ ସେ ଫୋନ୍ କରିଥିଲେ । ତାଙ୍କର ପରଲୋକଗତ ବନ୍ଧୁ ମାଇତିବାବୁଙ୍କ 'ସମ୍ବାଦ' ଛାପିବା ବିଷୟ ପଚାରିଥିଲେ । କହିଥିଲେ, ଗୋଟେ ଛୋଟ ଲେଖା ପଠାଇବେ । 'ସମ୍ବାଦ'ରେ ସେ ସ୍ମୃତିଚାରଣଟି ଯେମିତି ମାଇତିବାବୁଙ୍କ ଏକାଦଶାହରେ ପ୍ରକାଶ ପାଏ । ଅଥଚ ମାଇତିବାବୁଙ୍କ ଏକାଦଶାହ ବେଳକୁ ନିଜେ ଜଗଦୀଶବାବୁ ସ୍ମୃତି ପାଲଟିବେ, ସେ କଥା କେହି କିପରି କଳ୍ପନା କରି ପାରିଥାନ୍ତା! ମାଇତିବାବୁଙ୍କ ଏଗାର ଦିନ ସକାଳୁ ଜଗଦୀଶବାବୁ ଚାଲିଗଲେ । ଏଣିକି ଯାହା ରହିଗଲା ସେ କେବଳ ସ୍ମୃତି ଆଉ ସ୍ମୃତି ।

ପୂଜା ଆସିବ ଓ ଯିବ । 'ସମାବେଶ' ହୁଏତ ପୁଣି ବାହାରିବ । ଅଖିଳ ମୋହନ ପଟ୍ଟନାୟକଙ୍କୁ ହରେଇ ସମାବେଶ ଦରିଦ୍ର ହୋଇଥିଲା । ଜଗଦୀଶବାବୁ ଚାଲିଗଲା ପରେ ଦରିଦ୍ରତର ହୋଇଗଲା । ଏଣିକି 'ସମାବେଶ' ଆଉ ପୂର୍ବର 'ସମାବେଶ' କଦାପି ହେବ ନାହିଁ । ସେ ଆତ୍ମୀୟତା, ସେ ଅନ୍ତରଙ୍ଗ ସ୍ପର୍ଶ ସେଠି ଖୋଜିଲେ ଆଉ ମିଳିବ ନାହିଁ । ତାଙ୍କୁ ବାଦ୍‌ଦେଇ 'କ୍ୱାଲିଟି ପ୍ରେସ୍' ଓ 'ସମାବେଶ' କଳ୍ପନା କରିବା ମୋ ପାଇଁ କଷ୍ଟ । ଲାଗୁଛି ମେଳା ଭାଙ୍ଗି ଯାଇଛି । ଆଉ ଯାହା ରହିଛି ଖାଁ ଖାଁ ପଡିଆଟା, ନିଛାଟିଆ ଲାଗୁଛି ସେ ପଡ଼ିଆ ।

ଗୋଟେ ସମୟରେ ସେ 'ସମାବେଶ'ରେ ମୋତେ–ସଂପୃକ୍ତ ହେବାପାଇଁ କହୁଥିଲେ । 'କଥା'ର ସଫଳତା ପାଇଁ ମୋତେ ଆଶୀର୍ବାଦ ଓ ଅଭିନନ୍ଦନ ଜଣାଉଥିଲେ । ମୁଁ ମୋ ସମସ୍ୟା କଥା କହିଥିଲି । ଅନ୍ୟ ଜାଗାରେ ଚାକିରି କରି 'ସମାବେଶ' କଥା ବୁଝିବା ସମ୍ଭବ ନୁହେଁ । କିନ୍ତୁ ଶେଷ ପର୍ଯ୍ୟନ୍ତ ସେ 'ସମାବେଶ' ଦାୟିତ୍ୱ କାହାକୁ ଜଣକୁ ଦେଇ କିପରି ନିଶ୍ଚିନ୍ତ ହୁଅନ୍ତେ ସେମିତି କିଛି ଚିନ୍ତା କରୁଥିଲେ । ଏ ବାବଦରେ ସେ ଜାପାନିବାବୁ ଓ କବି ରମାକାନ୍ତ ରଥ, ହରପ୍ରସାଦ ଦାସ୍ ପ୍ରମୁଖ ସ୍ୱଚ୍ଛଳ ଓ ବିଶିଷ୍ଟ ବ୍ୟକ୍ତିମାନଙ୍କ ସହ ଆଲୋଚନା କରୁଥିବା ମଧ୍ୟ ମୁଁ ଶୁଣୁଥିଲି । ମୁଁ ଜାଣିନି 'ସମାବେଶ'ର ଭବିଷ୍ୟତ ନେଇ ସେ କାହିଁକି ଏତେ ଅନିଶ୍ଚିତ ଥିଲେ । ତାହା ଆଗାମୀ ଦିନଗୁଡ଼ିକ ହିଁ କହିବ । ଜଗଦୀଶବାବୁଙ୍କ ସଂଶୟ ଓ ଆଶଙ୍କାକୁ ଅମୂଳକ ପ୍ରମାଣ କରିବା ଦାୟିତ୍ୱ ଏବେ ତାଙ୍କ ଉତ୍ତରାଧିକାରୀଙ୍କର, ତାଙ୍କ କର୍ମଚାରୀଙ୍କର, ତାଙ୍କର ବନ୍ଧୁବାନ୍ଧବ ଓ 'ସମାବେଶ'ର ପ୍ରିୟ ସାହିତ୍ୟିକ ପରିବାରର । ମୁଁ ଭାବୁଛି ଏ ଦିଗରେ ନିର୍ଦ୍ଦିଷ୍ଟ ଭାବେ କିଛି କରାଯିବା ନିହାତି ଜରୁରୀ । କାରଣ, ଜଣେ ଲୋକର ସ୍ୱପ୍ନ ଓ ସଂକଳ୍ପକୁ ଜୀଆଇଁ ରଖିବା ହିଁ ପ୍ରକୃତ 'ସ୍ମୃତିରକ୍ଷା' ବୋଲି ମୋ ବ୍ୟକ୍ତିଗତ ବିଶ୍ୱାସ ।

# ବ୍ୟକ୍ତି ନୁହେଁ ଅନୁଷ୍ଠାନ

**ସୌରୀବନ୍ଧୁ କର**

ପୁଣି ଆଉ ଜଣେ ଚ୍ଵଲିଗଲେ । ଯେ ଯାଉଛି, ସେ ଫେରି ଆସୁନାହିଁ । ଫେରି ଆସିବାର ସମ୍ଭାବନା ମଧ୍ୟ ନାହିଁ । ମହାକାଳ କାହାକୁ ଅପେକ୍ଷା ନକରି, ତାର ବାହୁ ପ୍ରସାରିତ କରି ଜଣକୁ ଜଣ ଧରି ନେଇଯାଉଛି । ପୂଜାସମ୍ଭାରକୁ ରୁଦ୍ଧିମନ୍ତ କରି ଏକ ବର୍ଣ୍ଣାଢ୍ୟ ଓ ଆଭିଜାତ୍ୟପୂର୍ଣ୍ଣ ପତ୍ରିକା ସମାବେଶ ପ୍ରକାଶିତ କରିବା ପୂର୍ବରୁ ଜଗଦୀଶ ପାଣି ଆମକୁ ଛାଡି ଚ୍ଵଲିଯାଇଛନ୍ତି ।

ଜଗଦୀଶ ପାଣି ଏକ ବ୍ୟକ୍ତି ନୁହେଁ, ଏକ ଅନୁଷ୍ଠାନ । କ୍ୱାଲିଟି ପ୍ରେସ୍‌ର ସ୍ୱତ୍ୱାଧିକାରୀ ଜଗଦୀଶବାବୁ ନିଜର ସ୍ୱଭାବସୁଲଭ ମଣିଷପଣିଆ ଦ୍ୱାରା ବହୁଲୋକଙ୍କର ପ୍ରୀତିଭାଜନ ହୋଇଥିଲେ । ରାଜନୈତିକ ନେତାଠାରୁ ଆରମ୍ଭ କରି, ସାହିତ୍ୟିକ ଓ ସାଧାରଣ ଲୋକମାନଙ୍କ ମଧ୍ୟରେ ଜଗଦୀଶବାବୁ ଥିଲେ ଅତି ପ୍ରିୟ । କେହି ତାଙ୍କ ପାଖରୁ ଲେଉଟି ଯାଏନାହିଁ । ଅମାୟିକ ହସ ହସି ସମସ୍ତଙ୍କର ମନକୁ, ହୃଦୟକୁ ଜୟ କରିବାର ଶକ୍ତି ତାଙ୍କ ପାଖରେ ଥିଲା ।

ଗତବର୍ଷ ପୂଜା ପରେ, ତାଙ୍କ ଘରକୁ ଯାଇଥାଏ ବିଶିଷ୍ଟ ଗାଳ୍ପିକ ଡକ୍ଟର କୃଷ୍ଣ ପ୍ରସାଦ ମିଶ୍ରଙ୍କ ସହିତ । ଆଦରରେ ବସାଇ ଚ୍ଵ' ଜଳଖିଆ ଦିଅନ୍ତି । ସମାବେଶ ପତ୍ରିକା ଖଣ୍ଡିଏ ଲେଖାଁଏ ବଢାଇ ଦିଅନ୍ତି । କେତେ ରୁଚିପୂର୍ଣ୍ଣ ସେହି ପତ୍ରିକା ଯେ କେହି ଦେଖିବା ମାତ୍ରେ କହିବ । ଦୀର୍ଘ ୨ ଘଣ୍ଟା ଧରି ତାଙ୍କ ସହିତ ଆଲୋଚ଼ନା ହୁଏ । କୃଷ୍ଣବାବୁ ନାହାନ୍ତି । ସେ ଏଇବର୍ଷ ଆମକୁ ଛାଡି ଚ୍ଵଲିଯାଇଛନ୍ତି ଓ ଗତ ଦୁଇ ତାରିଖ ସକାଳେ ଜଗଦୀଶବାବୁ ଚ୍ଵଲିଗଲେ ।

ସାହିତ୍ୟିକ ନିଜେ ନ ହୋଇ, ସାହିତ୍ୟ ପ୍ରତି ଏତେ ଅକୁଣ୍ଠ ଆଦର କେବଳ ଜଗଦୀଶବାବୁଙ୍କଠାରେ ଦେଖାଯାଏ । ସେଇଥିପାଇଁ ସମାବେଶ ପତ୍ରିକା । ସମାବେଶ ପ୍ରକାଶନୀ ସଂସ୍ଥା । ୧୯୯୧ ମସିହା 'ସମାବେଶ' ପୂଜା ସଂଖ୍ୟା 'ଶେଷକଥା'ରେ ସେ ସ୍ୱର୍ଗତ କାଳିନ୍ଦୀ ଚ଼ରଣ ପାଣିଗ୍ରାହୀ, ଗୋପୀନାଥ ମହାନ୍ତି, ସୁରେନ୍ଦ୍ର ମହାନ୍ତି, ରବି ପଟ୍ଟନାୟକ, ସୁଧାଂଶୁ ମୋହନ ରାଉତରାୟ, ବୀରେନ୍ଦ୍ର ମହାନ୍ତି ପ୍ରଭୃତିଙ୍କ ବିୟୋଗରେ

ଶ୍ରଦ୍ଧାସୁମନ ଅର୍ପଣ କରି ଲେଖିଥିଲେ, "ଆମ ଉତ୍ତରପୁରୁଷଙ୍କୁ ସେହି ଶୂନ୍ୟସ୍ଥାନ ପୂରଣ କରିବାକୁ ପଡ଼ିବ । ଏହା ଏକ ପବିତ୍ର ଦାୟିତ୍ୱ । ଅନ୍ୟଥା ଓଡ଼ିଆ ସାହିତ୍ୟର ଚ଼କ ପଛକୁ ଫେରିଯିବା କିଛି ବିଚିତ୍ର ନୁହେଁ । ଏଥିପାଇଁ ଆବଶ୍ୟକ ପୂର୍ବସୂରୀଙ୍କ ଭଳି ଏକନିଷ୍ଠ ସାଧନା । ସେମାନେ ତ ଆଉ ଆସି ଆମ ପାଇଁ ଲେଖିବେ ନାହିଁ । ଆମକୁ ସେହିଭଳି ସାଧନା ପାଇଁ କ୍ଷେତ୍ର ପ୍ରସ୍ତୁତ କରିବାକୁ ପଡ଼ିବ ।"

ଜଗଦୀଶ ବାବୁଙ୍କର ଏଇ ଶେଷକଥା ପଦକ କେତେ ସତ୍ୟ । ତାଙ୍କର ଅଭାବ କ୍ଷେତ୍ର ପ୍ରସ୍ତୁତିର ଅଭାବ ବୋଲି ଭାବିବାକୁ ହେବ । ନିରାଶା ମଧ୍ୟରେ ଆଶାର ସଞ୍ଚାର ସୃଷ୍ଟି କରିପାରୁଥିବା ଜଗଦୀଶବାବୁଙ୍କର ଅବର୍ତ୍ତମାନରେ ଆମକୁ ସେହି ଆଶାର ଆଲୋକ ଜଳାଇ ରଖିବାକୁ ହେବ । ତା ନହେଲେ ସାହିତ୍ୟ ବଞ୍ଚିପାରିବନାହିଁ । ପତ୍ରିକା ପ୍ରକାଶିତ ହୋଇପାରିବ ନାହିଁ ।

"ସମାବେଶ" ସାହିତ୍ୟିକ ସମାଗମର ପୀଠ ହୋଇ ଯେଉଁ ସାରସ୍ୱତ କାର୍ଯ୍ୟ ସମ୍ପନ୍ନ କରୁଥିଲା, ସେହି କାର୍ଯ୍ୟକୁ ଆଗେଇ ନେବାକୁ ଆଗଭର ହେବା ଆଜିର କର୍ତ୍ତବ୍ୟ । ଏବଂ ସେହି କର୍ତ୍ତବ୍ୟ ସମ୍ପାଦନ ହିଁ ଜଗଦୀଶବାବୁଙ୍କ ପ୍ରତି ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ।

••••

*ଆତ୍ମାକୁ ଦର୍ଶନ କରିବାର ବିଭିନ୍ନ ଉପାୟ ଅଛି । ଯୋଗୀମାନେ ଧ୍ୟାନ ଓ ଯୋଗ ବଳରେ, ଜ୍ଞାନୀମାନେ ଜ୍ଞାନ ବଳରେ, ଭକ୍ତମାନେ ଭକ୍ତି ବଳରେ ଏବଂ କର୍ମୀମାନେ କର୍ମଦ୍ୱାରା ଆତ୍ମାର ଦର୍ଶନଲାଭ କରିଥାନ୍ତି । ଏକ ସୂର୍ଯ୍ୟ ସମସ୍ତ ଜଗତକୁ ଆଲୋକିତ କରିବାପରି ଏକ ଆତ୍ମା ସକଳ ଶରୀରକୁ ପ୍ରକାଶିତ କରିଥାଏ ।*

# ମରଣ କାଳେ

**ହରପ୍ରସାଦ ପରିଛା ପଟ୍ଟନାୟକ**

ସେ ଯେପରି ଭାବବିହ୍ୱଳ ଓ ସ୍ନେହୀ ବନ୍ଧୁ ଥିଲେ ସେପରି ଚତୁର ବ୍ୟକ୍ତି ଓ ଦକ୍ଷ ସଂଗଠକ ଥିଲେ। କଲିକତା ସହରର କେଉଁ ଗଳିରେ ଏକ ସାଧାରଣ ଜୀବନଯାପନ କରିବାର ସଂଘର୍ଷଠାରୁ ରାଜଧାନୀ ଭୁବନେଶ୍ୱରର ପ୍ରତିଷ୍ଠିତ ବ୍ୟକ୍ତି ଭାବରେ ପରିଚିତି ତାଙ୍କର ଜୀବନକାଳ। ମୋ ଭଳି ସେ ଅନେକଙ୍କର ଅନ୍ତରଙ୍ଗ ଓ ଘନିଷ୍ଠ ମୁହୂର୍ତ୍ତ ସହ ଜଡ଼ିତ। ଅଖିଳବାବୁ ଜୀବିତ ଥିଲେ ହୁଏତ ସେ ସଂପର୍କରେ ଅଧିକ ଗୁରୁତ୍ୱପୂର୍ଣ୍ଣ ମନ୍ତବ୍ୟ ଦେଇପାରି ଥାଆନ୍ତେ।

"ସମାବେଶ" ସାହିତ୍ୟ ପତ୍ରିକାକୁ ଗୁଣାତ୍ମକ ଭାବେ ବଂଚାଇ ରଖିବାରେ ତାଙ୍କର ନିଷ୍ଠା ଓ ତ୍ୟାଗ ସାଂପ୍ରତିକ ଓଡ଼ିଶାର ସାହିତ୍ୟସେବୀମାନଙ୍କ ମଧ୍ୟରେ ବିରଳ। ମୁଁ ତାଙ୍କୁ ସେଇଥିପାଇଁ ଦକ୍ଷ ସଂପାଦକ ବୋଲି କହିବି ଯେ ସର୍ଜନାତ୍ମକ ସାହିତ୍ୟ ଜଗତରେ ଭଲ ଭେଲ ବାଛିବାରେ ସେ କେବଳ ଧୂରୀଣ ନଥିଲେ। ଭଲକୁ ପ୍ରୋତ୍ସାହନ ଦେବାରେ ଯେତିକି ଉତ୍କଣ୍ଠା ଓ ଆଗ୍ରହ ପ୍ରକାଶ କରୁଥିଲେ ଭେଲକୁ ମୂଳୋତ୍ପାଟନ କରିବାରେ ସେତିକି ଯତ୍ନଶୀଳ ହେଉଥିଲେ। ସମାବେଶ କାର୍ଯ୍ୟାଳୟ ବହୁ ଗୁଣୀ ସାହିତ୍ୟିକଙ୍କର ତୀର୍ଥସ୍ଥଳ ଥିଲା।

ରାଜନୈତିକ ତୁଙ୍ଗନେତାଙ୍କଠାରୁ ଆରମ୍ଭ କରି ସାଂସ୍କୃତିକ ସାହିତ୍ୟିକ ଓ ସାମ୍ବାଦିକ ସ୍ତରର ବହୁ ଗୁଣୀ ପ୍ରଭାବଶାଳୀ ଆଦର୍ଶ ବ୍ୟକ୍ତିତ୍ୱ ତଥା ଖଳନାୟକମାନଙ୍କ ବ୍ୟକ୍ତିଗତ ଜୀବନ ସହ ସେ ଏପରି ଘନିଷ୍ଠଭାବେ ପରିଚିତ ଥିଲେ ଯେ, ସେ ନିଜର ଆତ୍ମଜୀବନୀ ଲେଖିଥିଲେ ତାହା ଓଡ଼ିଶାର ଅର୍ଦ୍ଧଶତାବ୍ଦୀର ଶ୍ରେଷ୍ଠ ଇତିହାସ ହୋଇଥାଆନ୍ତା।

ଜଗଦୀଶ ଭାଇନାଙ୍କ ଅଗ୍ରନକ ବିୟୋଗ ମୋ ପାଇଁ ଏକ ଅପୂରଣୀୟ ଅଭାବ। ମୋର ଅନୁରୋଧ, ସେ ଯେଉଁଠି ଥାଆନ୍ତୁ ମାଇତିବାବୁଙ୍କ ସହ 'ସମାବେଶ' ହିଁ କରନ୍ତୁ।

••••

# ସମାବେଶ ପାଣି

## ଭଗବାନ ନାୟକବର୍ମା

ଜଗଦୀଶ ପାଣି (ମୁଁ ତାକେ 'ଭାଇନା' ବୋଲି) ଯେ ଆଉ ନାହାନ୍ତି – ଏ କଥା ବାସ୍ତବିକ୍ ଭାବି ହେଉନାହିଁ। ସାରା ଜୀବନ ଯିଏ କେବଳ ବନ୍ଧୁ ମେଳରେ ବଂଚି ଆସିଥିଲେ, ସେ ଯେ ଏମିତି ଚୁପ୍‌ଚାପ୍ କାହାକୁ କିଛି ନକହି ନପୁଛି ସବୁଦିନ ପାଇଁ କୁଆଡେ ଚାଲିଯିବେ ଏବଂ ତାଙ୍କର ଅତି ପ୍ରିୟ "ସମାବେଶ"ର ମାୟା କାଟି ତାକୁ ସଂପୂର୍ଣ୍ଣ ଭୁଲିଯିବେ–ଏହା ମଧ୍ୟ କଳ୍ପନା କରି ହେଉନାହିଁ। ତେବେ ଏହାହିଁ ନିଛକ ବାସ୍ତବତା।

ଭାଇନା ଯେ ଅତ୍ୟନ୍ତ ବଂଧୁବତ୍ସଳ ଥିଲେ, ଏକଥା ତାଙ୍କର ଅଗଣିତ ବଂଧୁମାନେ ସମସ୍ତେ ଜାଣନ୍ତି। ବିଶେଷ କରି ଲେଖକ–ଲେଖିକାମାନଙ୍କ ପ୍ରତି ତାଙ୍କ ହୃଦୟରେ ଥିଲା ଏକ ସ୍ୱତନ୍ତ୍ର ଦୁର୍ବଳତା ଏବଂ ସେହି ଦୁର୍ନିବାର ମୋହରୁ ଜନ୍ମ ନେଇଥିଲା 'ସମାବେଶ'। ଏହାର ଜନ୍ମକାଳରୁ ହିଁ ମୁଁ ଭାଇନାଙ୍କ ସହିତ ଅତି ନିବିଡ଼ ଭାବେ ଜଡ଼ିତ ହୋଇ ଆସିଛି ଏବଂ ତାଙ୍କର ଅଦ୍‌ଭୁତ, ଉଦଗ୍ର ସାହିତ୍ୟପ୍ରୀତି ଓ ବଂଧୁବତ୍ସଳତାର ନିଦର୍ଶନ ବରାବର ଦେଖିଆସିଛି। କେବଳ ବଞ୍ଚିଥିବାବେଳେ ନୁହେଁ, ମୃତ୍ୟୁ କାଳରେ ମଧ୍ୟ ସେ ନିଜର ସେହି ଦୁର୍ଲଭ ବନ୍ଧୁବତ୍ସଳତାର ଚରମ ନିଦର୍ଶନ ଦେଇଯାଇଛନ୍ତି। ସମସ୍ତେ ଜାଣନ୍ତି, ମାଇତିବାବୁ ଥିଲେ ତାଙ୍କର ଜଣେ ଅତି ଅନ୍ତରଙ୍ଗ ଦରଦୀ ବଂଧୁ। ତାଙ୍କର ଆକସ୍ମିକ ବିୟୋଗ ଭାଇନାଙ୍କ ହୃଦୟକୁ ଭାରି ବାଧିଥିଲା। ତାଙ୍କରି ଏକାଦଶାହ ତିଥିରେ ହିଁ ଭାଇନା ବନ୍ଧୁବିଚ୍ଛେଦର ଦୁଃଖକୁ ସମ୍ଭାଳି ନପାରି ସତେ ଯେପରି ତାଙ୍କରି ପାଖକୁ ଚାଲିଗଲେ ! ପୁଣି ଅନ୍ୟ ବଂଧୁମାନଙ୍କ ଉପରେ ତାଙ୍କର ଏତେ ଭରସା ଯେ, ସେମାନଙ୍କ ସାହଚର୍ଯ୍ୟରେ "ସମାବେଶ" ବଂଚି ରହିବ ବୋଲି ସେ ଦୃଢ଼ ନିଶ୍ଚିତ ଥିବାରୁ ହିଁ ସେ ସଂପର୍କରେ କାହାକୁ କିଛି କହିବାର ଆବଶ୍ୟକତା ସେ ହୁଏତ ଅନୁଭବ କଲେନାହିଁ।

ମୁଁ ଭାବୁଛି, ଯେଉଁମାନେ ଭାଇନାଙ୍କୁ ଭଲ ପାଉଥିଲେ ଏବଂ ଯେଉଁମାନେ 'ସମାବେଶ'ରେ ଲେଖାଲେଖି କରୁଥିଲେ, ସେମାନଙ୍କ ଉପରେ ବର୍ତ୍ତମାନ୍ ଏକ ଦାୟିତ୍ୱ ଆସି ପଡ଼ିଛି। ତାହା ହେଉଛି 'ସମାବେଶ'କୁ ବଂଚାଇ ରଖିବା। ତାହାହିଁ ହେବ ତାଙ୍କ ସ୍ମୃତି ରକ୍ଷାର ସର୍ବଶ୍ରେଷ୍ଠ ନିଦର୍ଶନ ଏବଂ ଭାଇନାଙ୍କ ପ୍ରତି ଆମର ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି। 'ସମାବେଶ'ର ପ୍ରକାଶନକୁ ଅବ୍ୟାହତ ରଖିବା ଲାଗି ସେ ଏକ ଦୃଢ଼ ଭିତ୍ତିଭୂମି ଚାଲିଚି

ପ୍ରେସ୍ ନିଜ ହାତରେ ଗଢ଼ି ଯାଇଛନ୍ତି । ତେଣୁ ଭାଇନାଙ୍କର ଲେଖକ-ବନ୍ଧୁ ତଥା ଅନ୍ୟ ବଂଧୁମାନଙ୍କର ପ୍ରଚେଷ୍ଟାରେ 'ସମାବେଶ'କୁ ବଂଚାଇ ରଖିବା ଆଦୌ କଷ୍ଟକର ହେବନାହିଁ। ଏହି ତ୍ରୟମାସିକ ସାହିତ୍ୟ ପତ୍ରିକାଟିକୁ ଆଗାମୀ ପୂଜାସଂଖ୍ୟା ଠାରୁ ଏକ ମାସିକ ପତ୍ରିକା ରୂପେ ପ୍ରକାଶ କରିବା ପାଇଁ ଭାଇନା ଯୋଜନା କରୁଥିଲେ । ସେହି ଯୋଜନାଟିକୁ ମଧ୍ୟ ବର୍ତ୍ତମାନ୍ ଆମର ମିଳିତ ପ୍ରୟାସ ଦ୍ୱାରା କାର୍ଯ୍ୟକାରୀ କରାଯାଇ ପାରିବ । ତେଣୁ ଭାଇନାଙ୍କର ଏକାଦଶାହ ତିଥିରେ ଏକତ୍ର ହେଉଥିବା ତାଙ୍କର ବଂଧୁମାନେ ଏ ସଂପର୍କରେ ବିସ୍ତୃତ ଆଲୋଚନା କରି ନିଷ୍ପତ୍ତି ନେବେ ବୋଲି ମୁଁ ଆଶା କରୁଛି । ମୋର ପ୍ରସ୍ତାବ : ଭାଇନାଙ୍କର ଘନିଷ୍ଠ ଲେଖକ ବନ୍ଧୁମାନଙ୍କ ମଧ୍ୟରୁ ସର୍ବଶ୍ରୀ ମହାପାତ୍ର ନୀଳମଣି ସାହୁ, ଚନ୍ଦ୍ରଶେଖର ରଥ, ଶାନ୍ତନୁ କୁମାର ଆଚାର୍ଯ୍ୟ, ରମାକାନ୍ତ ରଥ, ଚିନ୍ତାମଣି ବେହେରା, ଶରତ କୁମାର ମହାନ୍ତି, ହର ପ୍ରସାଦ ଦାସ, ରାଜେନ୍ଦ୍ର କିଶୋର ପଣ୍ଡା, ସୀତାକାନ୍ତ ମହାପାତ୍ର, ହରିହର ମିଶ୍ର, ଅସୀମ ବସୁ ଓ ଡ଼ଃ ଗଣେଶ୍ୱର ମିଶ୍ର ପ୍ରମୁଖଙ୍କୁ ନେଇ 'ସମାବେଶ'ର ଏକ ବଳିଷ୍ଠ ଉପଦେଷ୍ଟାମଣ୍ଡଳୀ ଗଠନ କରାଯାଉ ଏବଂ ଏହାକୁ ବଂଚାଇ ରଖିବା ପାଇଁ ଦୃଢ଼ ପଦକ୍ଷେପ ନିଆଯାଉ । ଜଗଦୀଶ ପାଣି, ସମାବେଶ ପାଣି ହୋଇ ବଂଚି ରହନ୍ତୁ ଚିରଦିନ । ତାହାହିଁ ହେବ ତାଙ୍କ ଜୀବନର ଶ୍ରେଷ୍ଠ ସାର୍ଥକତା । ॥ ଜୟ ଜଗଦୀଶ ହରେ ॥

••••

*ଈଶ୍ୱର ହିଁ ଏକମାତ୍ର ସତ୍ୟ । ଆତ୍ମା ହିଁ ଏକମାତ୍ର ସତ୍ୟ । ଆଧ୍ୟାତ୍ମିକତା ହିଁ ଏହି ସତ୍ୟର ଏକମାତ୍ର ପଥ। ତେଣୁ ଆଧ୍ୟାତ୍ମିକତାର ଅନୁସରଣ କର।*

ମୁଁ ଭୁବନେଶ୍ୱରକୁ ଆସିଲା ପରେ ୧୯୬୭ ମସିହା ପରଠାରୁ ଜଗଦୀଶବାବୁଙ୍କ ସହିତ ଦେଖା ଓ ଘନିଷ୍ଠତା – ପୂର୍ବରୁ ଅବଶ୍ୟ କଟକ 'ପ୍ରଜାତନ୍ତ୍ର'ରେ ଥରେ ଅଧେ ଦେଖାହେଇଥିଲା – ଏତେ ବର୍ଷ ଚିହ୍ନା ପରିଚୟ ଭିତରେ, ବ୍ୟବସାୟ ସଂପର୍କ ଭିତରେ ସାମାଜିକ ଲୌକିକତା ଭିତରେ, କେବେ ବିମୁଖତା ଦେଖା ଦେଇନି – ସବୁ ବନ୍ଧୁତା ଭିତରେ କ୍ଷଣିକ, ସାମୟିକ ମତାନ୍ତର ହେଇଥାଏ କିନ୍ତୁ ଆଶ୍ଚର୍ଯ୍ୟ ଭାବରେ ଆମ ଦିହିଁଙ୍କର କେବେ ଏପରି ହେଇନି । ସେଇଟା ତାଙ୍କର ବେଶି କୃତିତ୍ୱ ।

ଯେତେବେଳେ ଦେଖାହେଇଛି ସବୁବେଳେ ମୋରି କଥା ପଚ୍ଚରନ୍ତି, ଅନ୍ୟମାନଙ୍କ ଆଗରେ ମୋର ପରିବାରର ପ୍ରଶଂସା – ସବୁବେଳେ ମୋର ସିନେମା, ଥିଏଟର ପ୍ରତି ଆଗ୍ରହ ଲାଗି ପ୍ରୋତ୍ସାହନ କରନ୍ତି । ଅନେକ ସମୟରେ ପ୍ରେସ୍‌ରେ ବସିଥିଲାବେଳେ ନିଜର ଦୁଃଖ, ଅଭାବ ଏବଂ ଓଡ଼ିଆଙ୍କ ପରୋତ୍ସ୍ୱୟୀକାତରତା କଥା ହୁଏ, କିନ୍ତୁ କେବେ ଅନୁତାପ କରିନାହାନ୍ତି ।

ଭଲ ଲୋକ ବିଷୟରେ ବେଶି ଆଲୋଚନା କରି ହୁଏନା, ହୃଦୟଙ୍ଗମ କରିବାକୁ ହୁଏ ।

ଅନନ୍ତ ମହାପାତ୍ର

••••

ଯାବାନର୍ଥ ଉଦପାନେ ସର୍ବତଃ ସଂପ୍ଲୁତୋଦକେ ।
ତାବାନ୍ ସର୍ବେଷୁ ବେଦେଷୁ ବ୍ରାହ୍ମଣସ୍ୟ ବିଜାନତଃ ॥

# କ'ଣ ସେ ଏମିତି ଥିଲେ କି ?

**ମହେନ୍ଦ୍ର ମିଶ୍ର**

ଜଗଦୀଶ ପାଣି ଚାଲିଗଲେ । ମୋର ସମଧର୍ମ ବୟସରେ ୬/୭ ବର୍ଷ ବଡ଼, ତେଣୁ, ବଡ଼ଭାଇ ସାନଭାଇର ସଂପର୍କ । ତା ଛଡ଼ା ବନ୍ଧୁତ୍ୱ ତ ବହୁ ଦିନରୁ । ସତୁରି ଦଶକରୁ । ସବୁବେଳେ ନ ହେଲେ ବି ବେଳେ ବେଳେ ଦେଖାଚାହାଁ, ଉଠାବସା । ହସ୍ ହସ ପ୍ରସନ୍ନ ବଦନ । ବଂଧୁ ମେଳରେ ତଥା ସାନ୍ଧ୍ୟ–ବୈଠକୀରେ ସେଇଟା ଆଉରି ଦୀପ୍ତିମନ୍ତ; ଭଗ୍ନସ୍ୱାସ୍ଥ୍ୟ ସତ୍ତ୍ୱେ ବି ।

ଦିନେ ହେଲେ ତ ଯାଇଥା'ନ୍ତେ । ଆଜି ନ ହେଲେ ବି ଆଉ ଦଶ କୋଡ଼ିଏ ବର୍ଷ ପରେ । ତେବେ କ'ଣ ସେ ଏମିତି ଥିଲେ ଯେ ବାରମ୍ବାର ସ୍ମୃତିର ପର୍ଦ୍ଦାକୁ ଆଡ଼େଇ ସମସ୍ତଙ୍କୁ ଚାହୁଁଛନ୍ତି !

ଏକ ମଧ୍ୟବିତ୍ତ ବ୍ରାହ୍ମଣ ପରିବାରରୁ ଆସି ନାନା ବୃତ୍ତି କରି ଶେଷରେ ସେ ବ୍ୟବସାୟୀ ହେଲେ । ଓଡ଼ିଶାରେ ଏକକ ଉଦ୍ୟମରେ ଆଧୁନିକ ଛାପାଖାନାଟିଏ କରିବା କି ଯେ କଷ୍ଟ ତାହା କେବଳ ଅନୁଭବୀ ହିଁ କହିପାରିବ । କ୍ୱାଲିଟି ପ୍ରେସ୍‌କୁ ଏ ସ୍ତରକୁ ଆଣି ସଂଭ୍ରାନ୍ତ ମାନ୍ୟତା ଦେବାରେ ସେ ତାଙ୍କର ଚେଷ୍ଟା ଶେଷ ପର୍ଯ୍ୟନ୍ତ ଅବ୍ୟାହତ ରଖିଥିଲେ । ମାତ୍ର ଶେଷକୁ ଯଦି ପୁଅ ଟୁଟୁ ଗୋଟିଏ ଋଣଗ୍ରସ୍ତ ବ୍ୟବସାୟ ସଂସ୍ଥାକୁ ହାତକୁ ନେବାକୁ ଯାଉଛି, ସେ ଦୃଷ୍ଟିରୁ ମୁଁ ଭାବେ ଜଗଦୀଶବାବୁ ଥିଲେ ଜଣେ ଅସଫଳ ବ୍ୟବସାୟୀ । ଅବଶ୍ୟ ଓଡ଼ିଶାରେ ପ୍ରାୟ ସମସ୍ତ ଏକ–ପୁରୁଷୀ ବ୍ୟବସାୟୀମାନେ ଏ ଦୋଷରେ ଦୋଷୀ । ଇଚ୍ଛା କରିଥିଲେ ସେ ଏକ ପକ୍‌କା ବ୍ୟବସାୟୀ ହୋଇପାରିଥାନ୍ତେ ଏବଂ ତାଙ୍କ ସାମ୍ରାଜ୍ୟ କେବଳ ଗୋଟିଏ ଛାପାଖାନାରେ ଆବଦ୍ଧ ନଥାନ୍ତା ।

ତାହା ନ ହୋଇପାରିବାର କାରଣ, ସେ ଚେଷ୍ଟା କରି ମଧ ବ୍ୟବସାୟୀ ହୋଇପାରି ନଥିଲେ । ସେ ରହିଗଲେ ଖାଲି ସେଇ ଜଗଦୀଶ ପାଣି ହୋଇ, ଯେ କି ପ୍ରଥମରେ ଜଣେ ଶିଷ୍ଟ, ବନ୍ଧୁବତ୍ସଳ, ସାହିତ୍ୟାନୁରାଗୀ, ସମାଜସେବୀ ଭଦ୍ରଲୋକ । ସବୁଠୁ ବଡ଼ କଥା ହେଲା ସେ ସାହିତ୍ୟିକ ନ ଥିଲେ ବି ଏକ ସଫଳ ସାହିତ୍ୟ–ମ୍ୟାନେଜର୍ ଥିଲେ । ତାଙ୍କରି ହାତରେ ସେ ସାହିତ୍ୟିକମାନଙ୍କୁ ଗଢ଼ିଛନ୍ତି, ଠିକ୍ ଯେପରି ବିଶ୍ୱନାଥ କର ବା ବ୍ରଜସୁନ୍ଦର ଦାସ ଆଦି ଗଢ଼ିଥିଲେ ।

ସେଇ ଥିଲା ତାଙ୍କ ଜୀବନର ସାର୍ଥକତାର କାହାଣୀ। 'ସମାବେଶ' ଥିଲା ଗୋଟିଏ ଏନ୍ତୁଡ଼ିଶାଳ ଯେଉଁଠୁ ବହୁତ ନୂତନ ଲେଖକ ଜନ୍ମ ନେଇଛନ୍ତି, ପ୍ରୋତ୍ସାହନ ପାଇଛନ୍ତି ଆଉ ସାହିତ୍ୟିକ ଭାବେ ପ୍ରତିଷ୍ଠା ଲାଭ କରିଛନ୍ତି। ଏହାଠୁ ଆଉ ବଡ଼ ସଫଳତା ଜୀବନରେ କ'ଣ ହୋଇପାରେ ?

ତାଙ୍କର ଅନ୍ୟମାନଙ୍କ ଉପରେ ଥିବାପରି ମୋ ଉପରେ ଯେଉଁ ଅଧିକାର ଥିଲା, ତାହା ମୁଁ ବୁଝିଲି ଏଇ ବର୍ଷକ ତଳେ। ହଠାତ୍ ଦିନେ ଖଣ୍ଡିଏ ସମାବେଶ ଓ ତା ସହିତ ଗୋଟିଏ ବିଲ୍ ମୋ ପାଖରେ ଆସି ପହଞ୍ଚିଲା। ଫିଟେଇ ଦେଖିଲି, 'ଶ୍ରୀରାଧା'ର ବିଜ୍ଞାପନଟିଏ ବାହାରିଛି ଓ ତାର ବିଲ୍ । ଆଣିଥିବା ଲୋକଟିକୁ କହିଲି ମୁଁ ତ ଏ ବିଜ୍ଞାପନ ଛାପିବା ପାଇଁ କହିନି। କିପରି ଏହା ଘଟିଲା ? ସେ ଫେରିଗଲା ପରେ ଫୋନ୍‌ରେ ଜଗଦୀଶବାବୁଙ୍କ ସହିତ କଥା ହେଲି। ସେ ମତେ ରୋକ୍‌ଠୋକ୍ ଭାବରେ କହିଲେ 'ବର୍ଷକୁ ତମର କମ୍‌ସେ କମ୍ ଗୋଟିଏ ବିଜ୍ଞାପନ ବାହାରିବ ଏବଂ ସେଇଟା ହେବ ତମର ସମାବେଶ ପାଇଁ କଣ୍ଟ୍ରିବ୍ୟୁସନ। ତାଙ୍କ ସ୍ୱରରେ ଯେଉଁ ଆଦେଶ ଥିଲା, ମୁଁ ବୁଝିଲି ଏବଂ ଲଜ୍ଜିତ ହେଲି ଯେ ମୁଁ ମୋ ଆଡୁ ସମାବେଶ ବଞ୍ଚିବା ପାଇଁ କାହିଁ କିଛି ନ କରିଛି ବୋଲି। ମୁଁ କହିଲି 'ଠିକ୍ ଅଛି, ମୋ ନ କହିବାରେ ତମ ଇଚ୍ଛାରେ ଗୋଟିଏ ବିଜ୍ଞାପନ ଏବଂ ମୋର ବରାଦରେ ଆଉ ଗୋଟିଏ, ଏପରି ବର୍ଷକୁ ମୁଁ ଦୁଇଟି ଦେବି।'

ପତ୍ରିକା ଚଳାଇବା ଏବଂ ତାକୁ ନିୟମିତ ଭାବେ ବାହାର କରିବା ପ୍ରସୂତି ବେଦନା ସହିତ ସମାନ। ମାତ୍ର ଯଦି କେତୋଟି ଲେଖକଙ୍କୁ ସମାବେଶ ଜନ୍ମ ଦେଇପାରିଛି, ସେ ବେଦନା କେବଳ ଆନନ୍ଦଦାୟକ ବେଦନା।

ଓଡ଼ିଶାର ସାହିତ୍ୟ ପାଇଁ ଆବଶ୍ୟକ କେବଳ ଲେଖକ ନୁହଁନ୍ତି। ଆବଶ୍ୟକ କେତେଗୁଡ଼ିଏ ଜଗଦୀଶ ପାଣି। ସାହିତ୍ୟକୁ ବଞ୍ଚିବାକୁ ହେଲେ ଲୋଡ଼ା ଲେଖକ ଓ ଜଗଦୀଶ ପାଣିଙ୍କ ପରି କିଛି ଲୋକ।

ହେ ଜଗଦୀଶ ଭାଇନା। ତମକୁ ନମସ୍କାର। ମୁଁ ବର୍ତ୍ତମାନ ତମକୁ ଈର୍ଷା କରୁଚି, ମୁଁ ତମ ଭଳିଆ ହୋଇ ପାରିଲିନି। ସେଇଭଳି ଲୋକଟିଏ ଥିଲ ବୋଲି ସହଜ-ମୃତ୍ୟୁଟିଏ ମଧ୍ୟ ପାଇଲ। ମତେ ସେଇଭଳି ମୃତ୍ୟୁଟିଏ ମିଳୁ, ଆଶୀର୍ବାଦ କର।

••••

# ଜଗଦୀଶବାବୁଙ୍କୁ ମୁଁ ଯେମିତି ଜାଣେ

**ପ୍ରଦୀପ ବିଶ୍ୱାଳ**

ଜଗଦୀଶବାବୁଙ୍କୁ ବ୍ୟକ୍ତିଗତ ଭାବେ ଜାଣିବା ପୂର୍ବରୁ ମୁଁ ଜାଣିଥିଲି ତାଙ୍କର ମାନସ ପୁତ୍ର 'ସମାବେଶ'ଙ୍କୁ । ସେତେବେଳେ ଜଗଦୀଶବାବୁଙ୍କ ଅପେକ୍ଷା ସମାବେଶ ଥିଲା ମୋ ଆଖିରେ ବଡ଼ । କିନ୍ତୁ ଯେବେଠାରୁ ଜଗଦୀଶବାବୁଙ୍କୁ ବ୍ୟକ୍ତିଗତ ଭାବେ ଜାଣିଲି ସମାବେଶଠାରୁ ଜଗଦୀଶବାବୁଙ୍କର ବ୍ୟକ୍ତିତ୍ୱ, ତାଙ୍କର ହୃଦୟର ଦୈର୍ଘ୍ୟ-ପ୍ରସ୍ଥ ଖୁବ୍ ବିଶାଳ, ଖୁବ୍ ବିସ୍ତୃତ ଲାଗିଲା ମୋତେ । ୧୯୭୯-୮୦ ମସିହାରେ ଯେତେବେଳେ ଓଡ଼ିଆ କବିତା ରାଜ୍ୟକୁ ନୂଆହେଇ ମୋର ପ୍ରବେଶ, ସମାବେଶରେ ମୋର ଏକ କବିତା ପ୍ରକାଶ ପାଇଲା- ସୋନାଗାଛି । ସଂପାଦକଙ୍କ ସହ ପରିଚୟ ନଥିଲା । ଏକଥା ମଧ୍ୟ ଜଣା ନଥିଲା ସେତେବେଳେ କବିତା ବିଭାଗର ସଂପାଦନା କରୁଥିଲେ କବି ରାଜେନ୍ଦ୍ର କିଶୋର ପଣ୍ଡା । ବାଣୀବିହାରରେ ନୂଆ ନୂଆ ପହଞ୍ଚିଥାଏ, ବିଶେଷ ପରିଚୟ ନଥାଏ ଭୁବନେଶ୍ୱରର ଲେଖକ/ସଂପାଦକମାନଙ୍କ ସହ । ପରେ ସମାବେଶ ପୃଷ୍ଠାରେ ମୋର କବିତାମାନ ପ୍ରକାଶ ପାଇଛି । ବନ୍ଧୁମାନଙ୍କ ସହିତ କ୍ୱାଲିଟି ପ୍ରେସ୍ ଯାଇଛି କିନ୍ତୁ ସଂପାଦକ ଜଗଦୀଶବାବୁଙ୍କ ସହ ଦେଖା ହୋଇଥିଲେ ବି ବିଶେଷ ମିଳାମିଶା କରିପାରି ନଥିଲି । ଅବଶ୍ୟ ସମାବେଶ ପ୍ରତି ଥାଏ ଏକ ଅହେତୁକ ଦୁର୍ବଳତା ଓ ଭଲପାଇବା । ବିଭିନ୍ନ ସଭାସମିତିରେ ଜଗଦୀଶବାବୁଙ୍କୁ ଦେଖିଛି, ତାଙ୍କ ସଂପର୍କରେ ବହୁତ କଥା ଶୁଣିଛି, ଏବଂ ତାଙ୍କ ପ୍ରତି ଦୂରରୁ କିଛିଟା ଶ୍ରଦ୍ଧା ଜନ୍ମ ହେଇଛି ମନରେ । ହଠାତ୍ ତାଙ୍କର ବଡ଼ପୁଅର ଦାରୁଣ ବିୟୋଗ ସଂବାଦ ମିଳିଲା । ଭୁବନେଶ୍ୱର ଲେଖକ ମହଲରେ ଦୁଃଖର ଛାୟା । ଯଦିଓ ଜଗଦୀଶବାବୁଙ୍କ ସହ ମୋର ବ୍ୟକ୍ତିଗତ ସଂପର୍କ ବିଶେଷ କିଛି ନଥିଲା ତେବେ ବି ଏ ପ୍ରକାର ଏକ ଦୁର୍ଘଟଣା ମୋତେ ତଥା ମୋର ବନ୍ଧୁମାନଙ୍କୁ ସେତେବେଳେ ବ୍ୟଥିତ କରିଥିଲା ।

ଭୁବନେଶ୍ୱର ଛାଡ଼ି ବାହାରକୁ ଗଲି । ଚାକିରୀ କଲି । ଲେଖାଲେଖି ପ୍ରାୟ ଧିମେଇ ଆସିବା ଦୃଷ୍ଟିରୁ ସମାବେଶ ସହିତ ଆଉ ଲେଖକ ଭାବରେ ସଂପର୍କ ରହିଲା ନାହିଁ । କେବଳ ପାଠକ ଭାବରେ ଯାହା ସଂପର୍କ । ଗତ ୧୯୯୦ ମସିହାରେ ପୁଣି ଭୁବନେଶ୍ୱର ଫେରିଲି । ଥରେ କାର୍ଯ୍ୟୋପଲକ୍ଷେ କ୍ୱାଲିଟି ପ୍ରେସ୍ ଯାଇଥିଲି । ଜଗଦୀଶବାବୁ ଏକା ଥିଲେ । ଗପିବାର ଏକ ସୁଯୋଗ ମିଳିଲା । ପୁରୁଣା ସମ୍ପର୍କର ସୂତାଖିଅକୁ ଧରି ଆମେ ପରସ୍ପରର ନିକଟତର

ହେଲୁ । ହଠାତ୍ ସେ ମୋର ଅନ୍ତରଙ୍ଗ ହୋଇଗଲେ । 'ସମାବେଶ' ପାଇଁ ସାହାଯ୍ୟ କରିବାକୁ ଅନୁରୋଧ କଲେ, କିନ୍ତୁ ସେ ଅନୁରୋଧ ଯେପରି ଥିଲା ମୋ ପାଇଁ କର୍ତ୍ତବ୍ୟର ଆହ୍ୱାନ । ଯେତେବେଳେ ଯେପରି ସୁଯୋଗ ଆସିଛି ମୁଁ ସେହି ଆହ୍ୱାନକୁ ସମ୍ମାନ ଦେଇଛି । ନାତି ବ୍ରତଘର ଆସିଲା ନିମନ୍ତ୍ରଣ କରିଗଲେ, ଲେଖା ମାଗିଲେ ଉପହାର ପୁସ୍ତିକା ପାଇଁ । ବ୍ରତଘର ଦିନ ଆଉ ଜଣେ ବଂଧୁଙ୍କର ବିବାହ ଉତ୍ସବ ନିମନ୍ତ୍ରଣ । ମୁଁ ଭାବିଲି ଜଗଦୀଶବାବୁଙ୍କୁ ଯାଇ ଦେଖାକରି ଆସିବି । କିନ୍ତୁ ଜଗଦୀଶବାବୁ ନଛୋଡ଼ବନ୍ଧା । କହିଲେ– "ନା, କଲିକତାରୁ କାରିଗର ମଗାଇଛି, ନ ଖାଇଲେ ଯାଇପାରିବେ ନାହିଁ । ଯାଆନ୍ତୁ ସେଠି ମହଁମାରି ଆସିବେ, ଏଠି ଖାଇବେ ।"

ଅନେକ ସମୟରେ ଜଗଦୀଶବାବୁ ନିଜ ଜୀବନ ସଂଗ୍ରାମର କଥା କୁହନ୍ତି । କଲିକତାରୁ କଟକ, ପୁଣି କଟକରୁ ଭୁବନେଶ୍ୱର । ପାରିବାରିକ ଜୀବନରେ ନାନାପ୍ରକାର ଦୁଃଖଦୁର୍ଦ୍ଦଶା ତାଙ୍କ ଜୀବନର ଶେଷ ପର୍ଯ୍ୟନ୍ତ ରହିଥିଲା । ଭାବିଲେ ଲାଗେ ଭିତରେ ସେ ଦୁଃଖୀ ମଣିଷଟିଏ, ସଂଗ୍ରାମୀ ମଣିଷଟିଏ, କିନ୍ତୁ ନିଜର 'ସତ୍' ରୁ ନିଷ୍ଠାରୁ ଦୂରେଇ ଯିବାର ଲୋକ ନୁହଁନ୍ତି । ଅନ୍ୟର ଦୁଃଖରେ ସମଭାଗୀ । ଏବେ ଦିନେ ବସି କଥା ହେଲାବେଳେ ମୁଁ କିପରି ଜନୈକ ଦୁଃଶ୍ଚରିତ୍ର ଉପରିସ୍ଥଙ୍କ ଦ୍ୱାରା ବିନାଦୋଷରେ ନିର୍ଯ୍ୟାତିତ ହେଲି ତାହା ଆଲୋଚନା କରୁଥିଲି । ଶୁଣିଲେ, କହିଲେ –" ବୁଝିଲେ ଆଜ୍ଞା ଆପଣଙ୍କ ଭଳି ଲୋକଙ୍କୁ ଏଭଳି ଦୁଃଖରେ ପଡ଼ିବା ଦେଖି କଷ୍ଟ ଲାଗୁଛି । ଏ ଦୁନିଆଁ ଏମିତି ହେଇଯାଇଛି । ସେଥିପାଇଁ ଭଗବାନଙ୍କୁ ଡାକୁଛି ମୋତେ ଶୀଘ୍ର ନେଇ ଯାଆନ୍ତୁ ।" ତାଙ୍କର ଏ ଆନ୍ତରିକ ସମବେଦନା କେତେଜଣ ଦେଇପାରିବେ । ପ୍ରଶଂସା କରିବାରେ ତାଙ୍କର କାର୍ପଣ୍ୟ ନଥିଲା । ବହୁତ ଲୋକଙ୍କୁ ମୋ ବିଷୟରେ କହୁଥିଲେ – "ଦେଖନ୍ତୁ ଜଣେ ଜୁଏଲ୍ । ଅଫିସର ଯେମିତି, କବି ସେମିତି, ମଣିଷ ବି ........ " । ମୁଁ ଏ ପ୍ରକାର ପ୍ରଶଂସାର ଯୋଗ୍ୟ କି ନୁହେଁ ଜାଣିପାରୁ ନାହିଁ କିନ୍ତୁ ସେ ସବୁ ପ୍ରଶଂସା ମୂଳକ ବାକ୍ୟ ତାଙ୍କର ନିଜର ମହନୀୟତା, ଉଦାରତା ଓ ମଣିଷ ପଣିଆର ପରିଚୟ କେବଳ ।

ପ୍ରେସ୍‌କୁ ଗଲେ ସବୁବେଳେ ଘରୁ ଚା' କିମ୍ବା କଫି ମଗାଇବେ । କେତେବେଳେ ନାତି ହାତରେ ମଧ । ବୟସ ଦୃଷ୍ଟିରୁ ସେ ମୋର ପିତୃତୁଲ୍ୟ । କିନ୍ତୁ ବ୍ୟବହାରରେ ସେ ମୋତେ ସମତୁଲ୍ୟ ବଂଧୁ ଭାବରେ କିମ୍ୱା ଅତିବେଶୀରେ ସାନଭାଇ ଭାବରେ ଦେଖୁଥିଲେ । ନାତିକୁ ଚିହ୍ନେଇ ଦିଅନ୍ତି – " ଆରେ ନମସ୍କାର କଲୁଣି ? ପ୍ରଦୀପବାବୁ ମୋ ସାଂଗ । ବଡ଼ ଅଫିସର, ବଡ଼ କବି ।" ମୋତେ ସଂକୋଚ ଲାଗେ । ଏ ସବୁ କ'ଣ ମୋର ପ୍ରାପ୍ୟ ? ମୁଁ କହେ– 'ଆମକୁ ଟିକେ ଆଶୀର୍ବାଦ କରୁଥିବେ ।' ଉତ୍ତର ମିଳେ । "ମୁଁ ଆଶୀର୍ବାଦ କରିବାକୁ କିଏ? ଜଗାର ଆଶୀର୍ବାଦ ଆପଣଙ୍କ ଉପରେ ଅଛି । ବହୁତ ଉପରକୁ ଯିବେ । ମୁଁ ତାଙ୍କୁ ହିଁ କହୁଛି ଆଶୀର୍ବାଦ କରିବେ ।" ଏ ତାଙ୍କର ପ୍ରଶସ୍ତ ହୃଦୟର ପ୍ରମାଣ ମାତ୍ର ।

ଗଲା ହୋଲି ଦିନର କଥା । କବି ହରିହର ମିଶ୍ର, ବଂଧୁ କ୍ଷୀରୋଦ ପରିଡ଼ା ଓ ଅକ୍ଷୟ ବେହେରା – ଆମେ ସବୁ ଯାଇ ପହଞ୍ଚିଲୁ ତାଙ୍କ ଘରେ । ତାଙ୍କ ପରିବାରରେ ସେତେବେଳେ ଏକ ଦୁର୍ଘଟଣା ଘଟିଯାଇଥାଏ । ତେଣୁ ଘର ଶୂନଶାନ୍ । କେହି କୁଆଡ଼େ ନଥାନ୍ତି । କଲିଂବେଲ୍ ମାରିବାର ବହୁତ ସମୟ ପରେ ନାତୁଣୀ ଆସି କବାଟ ଖୋଲିଲା । ଆମେ ଉପରକୁ ଉଠିଲୁ । ଜଗଦୀଶବାବୁ ଶୋଇଥିଲେ । ଆମେ ଆସିଛୁ ଶୁଣି ଉଠି ଆସିଲେ । ଦେହ ଅସୁସ୍ଥ, ମନ ବି ଅସୁସ୍ଥ । ତଥାପି ଆସିଲେ, ଅବିର ଆମ ହାତରୁ ନେଲେ । ବ୍ୟସ୍ତ ହେଲେ ଆମକୁ ଚର୍ଚ୍ଚା କରିବାକୁ । ଆମେ ବାରଣ କଲୁ । କହିଲେ, "ଭଗବାନ ଏତେ ଲୋକଙ୍କୁ ନେଉଛନ୍ତି, ମୋତେ କାହିଁକି ନେଇଯାଉ ନାହାନ୍ତି ?" ଏ ସବୁ କଥା କାହିଁକି ମୁଣ୍ଡରେ ପୂରାଉଛନ୍ତି କହି ଆମେ ଫେରିଆସିଲୁ ।

ଆଉ ଗୋଟିଏ ଘଟଣା ମନେ ପଡ଼ିଯାଉଛି । ଦିନେ ଡାକ୍ତର ଜଗନ୍ନାଥ ମହାପାତ୍ରଙ୍କ କ୍ଲିନିକ୍‌ରେ ପହଞ୍ଚିଲା ବେଳକୁ ଜଗଦୀଶ ବାବୁଙ୍କୁ ଦେଖିଲି । ମୁଣ୍ଡରେ ପଟି ଭିଡ଼ାଯାଇଛି । କଥା କ'ଣ ନା ଶିଡ଼ିରୁ ପଡ଼ି ମୁଣ୍ଡ ଫାଟିଯାଇଛି । ହଠାତ୍ ମୋତେ ଦେଖି ପ୍ରଗଲ୍‌ଭ ହୋଇ ଉଠିଲେ, ଗପ ଆରମ୍ଭ କରିଦେଲେ । ପତ୍ନୀଙ୍କ କଥା, ବୋହୂ କଥା, ମୋ କଥା କିଛି ଶୁଣିଲେ ନାହିଁ । ତା' ପରେ ଡାକ୍ତର ମହାପାତ୍ର ଆସି ଗାଳିବର୍ଷଣ କଲେ । ସେଇଠୁ ଜଗଦୀଶବାବୁ ଟିକେ ଥମିଗଲେ । ମୁଁ ବାହାରି ଆସୁଛି ପୁଣି ଡ଼ାକ – 'ମୋ ଭାଇଟା, ମୋର ଗୋଟେ କାମ ଟିକେ କରିବେ । ଉତ୍ତମବାବୁ (ଗାଳ୍ପିକ ଉତ୍ତମ ପ୍ରଧାନ) ସମାବେଶ ପାଇଁ ଗପଟେ ଦେବାକୁ କହିଥିଲେ ଏ ପର୍ଯ୍ୟନ୍ତ ପାଇଲି ନାହିଁ । କାମ ସରିଆସିଲାଣି । ଟିକେ କହିବେ ଆଜି ଗପଟା ଯେମିତି ହେଲେ ଦେବାପାଇଁ ।' ଏ ଅନୁରୋଧ ଟାଳିବା ସମ୍ଭବ ନଥିଲା । ଯେ ନର୍ସିଂହୋମ୍ ବେଡ଼ରେ ସାହିତ୍ୟ ପାଇଁ 'ସମାବେଶ' ପାଇଁ ପାଗଳ ସେ ଲୋକର ଏ ସାମାନ୍ୟ ଅନୁରୋଧ ମୋ ପାଇଁ ଅସାମାନ୍ୟ ଆଦେଶ ଭଳି ଲାଗିଲା । ମୁଁ ଉତ୍ତମବାବୁଙ୍କ ଘରକୁ ସିଧା ଗ୍ଭଲିଲି । ଏମିତି ସାହିତ୍ୟପ୍ରାଣ ମଣିଷଟିଏ ଆମ ଭିତରେ କାହିଁ ?

••••

*ଅହଂଭାବ ଏକ ଜ୍ୱର; ଏହା କ୍ଷଣିକ ଓ ସ୍ୱପ୍ନତୁଲ୍ୟ । ସତ୍ୟ ସ୍ୱାସ୍ଥ୍ୟକର, ମହତ୍ତମ ଓ ଚିରନ୍ତନ । ସତ୍ୟହିଁ ଅମୃତତ୍ତ୍ୱ । ସତ୍ୟ ନିତ୍ୟ ଓ ଶାଶ୍ୱତ ।*

# ଦୂର ନକ୍ଷତ୍ର

**ଡଃ ପ୍ରକାଶ କୁମାର ପରିଡ଼ା**

ନକ୍ଷତ୍ରମାନଙ୍କ ପ୍ରତି ମୋର ପ୍ରଚଣ୍ଡ ଶ୍ରଦ୍ଧା ଓ ଦୁର୍ବଳତା। ସେମାନେ ହେଇଥାନ୍ତି ନାକ୍ଷତ୍ରିକ ସୁଷମାର ଉଦାର ଅଧିକାରୀ। ସେମାନଙ୍କୁ ଭଲପାଇବାରେ ମୋର ଥାଏ ପ୍ରଚ୍ଛନ୍ନ ଆନନ୍ଦବୋଧ। କତିପୟ ନକ୍ଷତ୍ର ହେଇଥାନ୍ତି ବର୍ଣ୍ଣାଢ଼୍ୟ, ତେଜସ୍ୱିୟ, ଜ୍ୟୋତିଷ୍ମାନ୍ ଓ କତିପୟ ନକ୍ଷତ୍ରଙ୍କ ଥାଏ ବିଶାଳ ବଳୟ। ସେ ବର୍ଣ୍ଣବିଭା, ତେଜ, ଜ୍ୟୋତି ଓ ବଳୟ ଅତିକ୍ରମ କରି ନକ୍ଷତ୍ରଙ୍କ ସାମୀପ୍ୟ ଲଭିବାର ଆଶା ଯେ ହୁଏନାହିଁ ନୁହେଁ। ମାତ୍ର ଚେଷ୍ଟିତ ହୋଇ ହୁଏନାହିଁ। କଦାଚିତ ତେମନ୍ତ ମହାର୍ଘ ସୁଯୋଗ ଜୁଟେ ବି। ତେବେ ବି ସେ ସୁଯୋଗ ଉପଯୋଗ କରେନାହିଁ। ଭୟହୁଏ ମଦୃଶ ଅକାଞ୍ଚନଟି ଯଦି ତେମନ୍ତ ଗରୀୟାନ ନକ୍ଷତ୍ରଙ୍କ ସାମୀପ୍ୟ–ସାହଚର୍ଯ୍ୟ ଏତେ କିଞ୍ଚିତରେ ଲଭିପାରେ, ତେବେ ମୋ ପ୍ରିୟ ଓ ବିସ୍ମୟଭାଜନ ନକ୍ଷତ୍ରଙ୍କ ଗୁରୁତ୍ୱ ଆଉ କି ମହନୀୟତା ! ନକ୍ଷତ୍ରମାନେ ମୋର ଅପହଞ୍ଚ ଏମିତି ଏକ ପ୍ରବୋଧ ନିଜକୁ ଦେବାପାଇଁ ମୁଁ ନକ୍ଷତ୍ରମାନଙ୍କ ଠାରୁ ଦୂରସ୍ଥ ରହେ। କେବଳ ମୁଗ୍ଧ ହୁଏ; ନାନା କାରଣ, ଘଟଣା, ଚର୍ଚ୍ଚା ଓ ସମ୍ବାଦ ମାର୍ଫତରେ ମୁଗ୍ଧତା ବଜାୟ ରଖେ।

ବେଳେ ବେଳେ ନକ୍ଷତ୍ରମାନେ ମହାଶୂନ୍ୟରେ ବିଲୀନ ହେଇଯାନ୍ତି। ଫଟୋ ପାଲଟିଯାନ୍ତି। ସ୍ମୃତି ପାଲଟିଯାନ୍ତି। କିମ୍ବଦନ୍ତୀ ପାଲଟିଯାନ୍ତି। ତେତେବେଳେ କାହାରି କାହାରି କ୍ଷେତ୍ରରେ ଅବଶୋଷ ହୁଏ, ଘୃଷ୍ଟୁଷ ଦର୍ଶନ ଲଭି ନପାରିବାର ଅବଶୋଷ।

ବହୁ ବ୍ୟକ୍ତିତ୍ୱର ଅଧିକାରୀ ଜଗଦୀଶ ପାଣି ମହୋଦୟ ଥିଲେ ତେମନ୍ତ ଏକ ଦୂର ନକ୍ଷତ୍ର, ଅବଶୋଷ ରହିଲା ଭଳି ନକ୍ଷତ୍ର।

ତାଙ୍କୁ ପ୍ରଣତିଟିଏ ଦିଏ।

••••

# ଗୁଂଥିବାକୁ ଇଚ୍ଛା ମୋର ଫୁଲହାରଟିଏ

ଡଃ ଉପେନ୍ଦ୍ର ନାୟକ

ଅନେକ ସୃଷ୍ଟିକୁ ସାଉଁଟି ଆଣି ଫୁଲ ଗୁଂଥି
ସୁନ୍ଦର ସୁଶୋଭିତ ମାଳା ଗଢ଼ିବାରେ
ତୁମେ ଥିଲ ଦକ୍ଷ କାରିଗର ।
ହସର ପାଖୁଡ଼ା ଦେଇ
କିଣି ପାରୁଥିଲ ମନ ଓ ହୃଦୟ ।
ସୃଜନଶୀଳ ସୃଷ୍ଟିରେ ସଂଭାବନାର ଉତ୍ସ ବାଢ଼ି
ଇତିହାସର ମୋଡ଼ ବଦଳାଇବାକୁ
ତୁମ ଚେଷ୍ଟା ଥିଲା ଅକଳନ ।

ସାଧନାର ସାଧୁବାଦ କରି
ତୁମେ ଯେଉଁ ଜୟମାଳ ପିନ୍ଧିଥିଲ
ମୁଁ ଜାଣିପାରୁନି ନିଜେ
ଆଜି ଅଗ୍ନିକେ କେମିତି
ସ୍ତବ୍ଧ ହୋଇଗଲା
ତୁମର ସେ ମୁଗ୍ଧ ଅନୁଭବ ।

ତୁମେ ମୂକ ପାଲଟିଗଲ
ତୁମ ହାତର ଗଢ଼ା
ଫୁଲମାଳ ଗୁଡ଼ିକ
ତୁମ ହାତରୁ ଖସିପଡ଼ି
ତୁମ ସ୍ମୃତି ତୁମ ପ୍ରତିଭାକୁ ଜପାମାଳି କରି
ଇତିହାସର ପୃଷ୍ଠାରେ ରହିଲେ ।

ଏଇମିତି ତ ମଣିଷ ଇତିହାସ ହୋଇଯାଏ
ତୁମେ ବି ଇତିହାସ ହୋଇଗଲ
ତୁମରି ପ୍ରେରଣା ନେଇ
ଠିକ୍ ତୁମରି ପରି ନହେଲେ ବି
ତୁମରି ଅନୁକରଣରେ
ସୁନ୍ଦର ଫୁଲହାରଟିଏ
ଗୁଂଥି ପାରିଲେ
ହୁଏତ ତୁମେ ବେଶୀ ଆନନ୍ଦିତ ହେବ ।

# ନିଶବ୍ଦ ଉଜାଣି

## ପ୍ରସନ୍ନ କୁମାର ମହାନ୍ତି

ଜଗଦୀଶ ପାଣି ନୁହନ୍ତି, ତାଙ୍କର ସ୍ୱର୍ଗତ ପୁତ୍ର ବାବୁଲି ଥିଲେ ମୋର ବନ୍ଧୁ।

ବୟସର ଏଇ ଦୀର୍ଘ ତାରତମ୍ୟ ସତ୍ତ୍ୱେ ଜଗଦୀଶବାବୁଙ୍କ ବ୍ୟକ୍ତିତ୍ୱର ବିଶେଷତା ଯୋଗୁଁ ତାଙ୍କ ସହ ଅନ୍ତରଙ୍ଗ ନହେଲେ ବି ସୌହାର୍ଦ୍ଦ୍ୟ ସଂପର୍କର ଭୂମିକାଟିଏ ଆପେ ତିଆରି ହୋଇଯାଇଥିଲା।

ସେଦିନ ଖବରକାଗଜର ସେଇ ଦୁଃସମ୍ବାଦଟି ପାଖରେ ହଠାତ୍ ଆଖି ଓ ସମସ୍ତ ଭାବନା ଅଟକି ଗଲେ। ମୁହୂର୍ତ୍ତକ ପରେ ପତ୍ନୀ ଜ୍ୟୋତ୍ସ୍ନାଙ୍କୁ ସ୍ୱୟଂଚାଳିତ ପରି ପାଖକୁ ଡ଼ାକି ଦୁଃସମ୍ବାଦଟି କହିପକାଇଲି। ସେ ମଧ୍ୟ ମୋ' ଭଳି ସ୍ତମ୍ଭିତ ରହିଗଲେ। ଭୁବନେଶ୍ୱରରେ ଥାଇ ମଧ୍ୟ ଆଗରୁ ଜାଣିପାରିଲିନି ବୋଲି ନିଜକୁ ଧିକ୍କାର କଲି।

'ସମାବେଶ' ପ୍ରଥମେ ପ୍ରକାଶ (୧୯୫୮) ପାଇବାର ମାତ୍ର ୨ ବର୍ଷ ପୂର୍ବରୁ ମୋର ଜନ୍ମ। ଜଗଦୀଶବାବୁ ଓ ଅସୀମ ଦା'ଙ୍କ ମୁହଁରୁ, ଅସୀମ ଦା'ଙ୍କ 'କଥାରେ କଥାରେ' ଆତ୍ମଜୀବନୀମୂଳକ ରଚନାରୁ ତଥା ଅନ୍ୟମାନଙ୍କଠୁ ମୁଁ ଶୁଣିଚି କଲିକତାରେ କେତେ ଅବିଶ୍ୱାସ୍ୟ ଭାବେ କଠୋର ପ୍ରତିକୂଳ ଅବସ୍ଥା ଓ ଅର୍ଥାଭାବ ମଧ୍ୟରେ ଜଗଦୀଶବାବୁ 'ସମାବେଶ' ପ୍ରକାଶ କରୁଥିଲେ !

ଜଗଦୀଶବାବୁ ନିଜେ ଜଣେ ସର୍ଜନଶୀଳ ଲେଖକ ନଥିଲେହେଁ ତାଙ୍କ ହୃଦୟରେ ସାହିତ୍ୟ, ସାହିତ୍ୟିକମାନେ ଓ 'ସମାବେଶ' ଆସ୍ଥାନ ଜମେଇ ତାଙ୍କ ଅସ୍ତିତ୍ୱର ଏକ ଅବିଚ୍ଛେଦ୍ୟ ଅଙ୍ଗ ପାଲଟି ଯାଇଥିଲେ। ତାଙ୍କ ଭଳି ସାହିତ୍ୟ-ନିଶା-ପାଗଳ କ୍ୱଚିତ୍ ଜନ୍ମ ହେଉଥିବେ !

୧୯୭୭ ମସିହା ଉତ୍କଳ ବିଶ୍ୱବିଦ୍ୟାଳୟ (ବାଣୀବିହାର) ରେ ଏମ୍. ଏ. ଶେଷବର୍ଷର ଛାତ୍ରଥାଏ ମୁଁ। ସେଇ ମାତ୍ର ୨/୩ ବର୍ଷ ହେବ ଝଙ୍କାର, ନବରବି, ଆସନ୍ତାକାଲି ପ୍ରଭୃତି ପ୍ରତିଷ୍ଠିତ ପତ୍ରିକାମାନଙ୍କରେ ମୋର କବିତା ପ୍ରକାଶ ପାଇବା ଆରମ୍ଭ ହୋଇଥାଏ ! 'ସମାବେଶ'ରେ ପ୍ରକାଶ ପାଇନଥାଏ ମୋର କବିତା। ବଡ଼ ବଡ଼ ପତ୍ରିକାର ସଂପାଦକମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ ବ୍ୟକ୍ତିଗତ ଭାବରେ ଚିହ୍ନିନଥାଏ; କେତେକଙ୍କୁ ବିଲ୍‌କୁଲ୍ ଦେଖି ମଧ୍ୟ ନଥାଏ। ଜଗଦୀଶବାବୁଙ୍କୁ ମଧ୍ୟ।

ସେ ବର୍ଷ ପୂଜାସଂଖ୍ୟା 'ସମାବେଶ'ରେ ପ୍ରକାଶ ପାଇଥାଏ ମୋର ଏକ ଦୀର୍ଘ କବିତା । ତା' ପୁଣି ସମୁଦାୟ ୨୫/୩୦ଟିଯାକ କବିତା ମଧ୍ୟରେ ରମାକାନ୍ତ–ସୀତାକାନ୍ତ ପ୍ରମୁଖ ମାତ୍ର ୬/୭ ଜଣଙ୍କ କବିତା ତଳକୁ !

ସହପାଠୀ କବିବନ୍ଧୁ ହୃଷୀକେଶ ମଲ୍ଲିକ, ଶତ୍ରୁଘ୍ନ ପାଣ୍ଡବ, ପ୍ରବାସିନୀ ମହାକୁଡ଼, ନିଳୟକାନ୍ତ ମହାପାତ୍ର, ହୃଦାନନ୍ଦ ପାଣିଗ୍ରାହୀ, ସୁକାନ୍ତ ମିଶ୍ର, ଜ୍ୟୋତ୍ସ୍ନା ରାଉତ ପ୍ରମୁଖଙ୍କ କବିତା ସେତେବେଳକୁ ଯେତେଦୂର ମନେପଡୁଚି 'ସମାବେଶ'ରେ ପ୍ରକାଶ ପାଇନଥାଏ । 'ସମାବେଶ' ପୂଜାସଂଖ୍ୟାର କପିଟିଏ କିଣି ହାତରେ ଧରି ଏକୁଟିଆ ଯାଇ କ୍ୟାମ୍ପସ୍ ମଧ୍ୟସ୍ଥିତ ହ୍ରଦ କୂଳରେ ଗୋଟିଏ ନିଛାଟିଆ ଗଛମୂଳେ ବସିପଡ଼ିଲି । ଧୂ–ଧୂ ଖରାବେଳ । ଏକା ଏକା ନିଜ କବିତାଟିକୁ ବାରମ୍ବାର ପଢ଼ିଲି । 'ସମାବେଶ' ଆମ ସାହିତ୍ୟର ଅନ୍ୟତମ ଶ୍ରେଷ୍ଠ ଓ ସମ୍ଭ୍ରାନ୍ତତମ ପତ୍ରିକା । ତା'ର ପୁଣି ପୂଜାସଂଖ୍ୟାରେ ପ୍ରକାଶ ପାଇଛି ମୋର କବିତା! ସେ ସମୟର ସେଇ ଅନୁଭୂତି ଜୀବନରେ ସବୁଦିନ ପାଇଁ ଅବିସ୍ମରଣୀୟ ।

ସେ ଘଟଣାର କିଛି ବର୍ଷ ପରେ ଜଗଦୀଶବାବୁଙ୍କ ସହ ପ୍ରଥମ ଦେଖା ଓ ପରିଚୟ ହୁଏ । ପ୍ରସନ୍ନ ମହାନ୍ତି ବିଶ୍ୱବିଦ୍ୟାଳୟର ଅଧ୍ୟାପକ ନୁହେଁ, ୨୨/୨୩ ବର୍ଷର ତରୁଣଟିଏ ଜାଣି ସେ ଆଶ୍ଚର୍ଯ୍ୟ ହୁଅନ୍ତି ।

ଦୁହିଁଙ୍କ ବୟସ ମଝିରେ ଥିବା ଏତେ ବଡ଼ ଫାଙ୍କ ତାଙ୍କୁ ସାମାନ୍ୟ ସଚେତନ କରିଦେବାର କେବେ ଦେଖିନି । ଦୀର୍ଘସମୟ ପୁତ୍ରବୟସର ଜଣେ ତରୁଣ ସହ ଗପିବାରେ ସାମାନ୍ୟ କ୍ଳାନ୍ତି ବା ବୟସ୍କ ସୁଲଭ ସଂଭ୍ରମ ସହ ସ୍ୱଳ୍ପବାକ୍ ହେବାର ପ୍ରବଣତା ତାଙ୍କଠି' ନଥାଏ । ସାହିତ୍ୟିକମାନଙ୍କ ପକ୍ଷରେ 'ସମାବେଶ'ର ବିରାଟ ଲେଖକ– ପରିବାର ମଧ୍ୟରେ ସାମିଲ୍ ହେବା ଜଗଦୀଶବାବୁଙ୍କ ଯୋଗୁଁ ହୋଇଯାଇଥିଲା ଏକାନ୍ତ ସରଳ ଓ ସୁଲଭ ।

ବାବୁଲିଙ୍କର ବଜ୍ରପାତ ସଦୃଶ ଅକାଳ ବିୟୋଗ ପରେ 'ସମାବେଶ' କାର୍ଯ୍ୟାଳୟ ଯାଇଚି କମ୍‌ଥର । ଅନୁଜପ୍ରତିମ ସୁଲେଖକ ବନ୍ଧୁ ଅସିତ୍ ମହାନ୍ତି 'ସମାବେଶ' ର ପରିଚାଳନା ସଂପାଦକ ଥିବାବେଳେ କେତେଥର ସେଠାକୁ ଯାଇଛି । ଅସିତ୍ 'ସମାବେଶ'ରୁ ବିଦାୟ ନେବାପରେ ଜଣେ ଯୋଗ୍ୟ ସହଯୋଗୀ ବଡ଼ ବ୍ୟସ୍ତହୋଇ ଜଗଦୀଶବାବୁ ସଂଧାନ କରୁଥିଲେ ।

୧୯୮୦–୮୨ ମସିହା ବେଳେ କ୍ୱାଲିଟି ପ୍ରେସ୍ ପରିସରର ଛୋଟିଆ ଅଥଚ ସୁନ୍ଦର ଘାସର ଲନ୍‌ଟି ଅନେକ ସମୟରେ ସଂଧ୍ୟା ଆସିବା ସଙ୍ଗେ ସଙ୍ଗେ କବିତାର ଅଡ଼ରେ ବାସି ଉଠୁଥିଲା । ଅଖିଳ ମୋହନ ପଟ୍ଟନାୟକ, ରମାକାନ୍ତ ରଥ, ରାଜେନ୍ଦ୍ର କୁମାର ପଣ୍ଡା, ଶାନ୍ତନୁ ଆଚାର୍ଯ୍ୟ, ଚିନ୍ତାମଣି ବେହେରା, ଚନ୍ଦ୍ରଶେଖର ରଥ, ମହାପାତ୍ର ନୀଳମଣି ସାହୁ, କୃଷ୍ଣ ପ୍ରସାଦ ମିଶ୍ର, ପ୍ରଫୁଲ୍ଲ କୁମାର ତ୍ରିପାଠୀ, ଡଃ ଭାବଗ୍ରାହୀ ମିଶ୍ର, ହରିହର ମିଶ୍ର, ଅସୀମ ବସୁ, ଗଣେଶ୍ୱର ମିଶ୍ର, ଭଗବାନ ନାୟକବର୍ମା, ଅମରେଶ ପଟ୍ଟନାୟକ, ଡଃ ଦୀନନାଥ

ପାଠୀ, ପ୍ରଭାତ ମହାପାତ୍ର, ଜଗଦୀଶ ମହାନ୍ତି, ହରପ୍ରସାଦ ପରିଛା ପଟ୍ଟନାୟକ , ସୌଭାଗ୍ୟ ମିଶ୍ର ପ୍ରମୁଖଙ୍କ ଉପସ୍ଥିତିରେ ସମାବେଶ ପରିସର ବାଗ୍‌ଦେବୀଙ୍କ ଅତିଥି କୁଞ୍ଜରେ ପରିଣତ ହେଉଥିଲା । ଏସବୁ ସାରସ୍ୱତ ସମାବେଶ ମୂଳରେ ସ୍ୱାଭାବିକ ଭାବେ ଜଗଦୀଶବାବୁ ହିଁ ଥାଆନ୍ତି ।

୫/୬ ବର୍ଷ ତଳେ ଗୋଟିଏ ଗପ ଲେଖିଥିଲି 'ଶଂଖ' ପତ୍ରିକାରେ । 'ଅନ୍ୟ ସମୟ' ଥିଲା ତା'ର ନାଁ । ସେଥିରେ ଗୋଟିଏ ସାହିତ୍ୟ ପତ୍ରିକାର କାର୍ଯ୍ୟାଳୟ କଥା; ଏବଂ ଏକ ପତ୍ରିକାର ସଂପାଦକ ଭାବରେ ପ୍ରମୁଖ ଚରିତ୍ରଟିଏ ଅଛି । କାରଣ କ'ଣ କେଜାଣି, ପୂରା ଗପଟିକୁ ଲେଖିବାବେଳେ ମୋ' ଆଖିଆଗରେ 'ସମାବେଶ' କାର୍ଯ୍ୟାଳୟ ଏବଂ ଜଗଦୀଶବାବୁ ହିଁ ମୂର୍ତ୍ତିମାନ୍ ହୋଇ ରହିଥିଲେ । ଆଜି ସେସବୁ କଥା ସ୍ୱପ୍ନପ୍ରାୟ ବାରମ୍ବାର ମନେପଡୁଛି ।

ଖ୍ୟାତନାମା କଥାକାର ଅଖିଳ ମୋହନ ପଟ୍ଟନାୟକ 'ସମାବେଶ' ପରିବାରର ଅନ୍ୟତମ ପ୍ରମୁଖ ମୁରବି ଥିଲେ । ବଡ଼ପୁଅ ଏବଂ ଅଖିଳବାବୁଙ୍କୁ ଅକାଳରେ ହରାଇ ଜଗଦୀଶବାବୁ ଭିତରେ ଭିତରେ ଅନେକ ଭାଙ୍ଗି ପଡ଼ିଥିଲେ । ତଥାପି ଜଗଦୀଶ ପାଣିଙ୍କ ପରି ଲୋକ ସହଜରେ ପରାଜୟ ମାନିନେବାକୁ ଜନ୍ମ ହୋଇନଥାନ୍ତି । ଅସୀମ୍ ଦା, ହରିଭାଇନା, ବାଦଲ୍‌ଭାଇ, (ଅମରେଶ ପଟ୍ଟନାୟକ) ପ୍ରମୁଖଙ୍କ ସହଯୋଗରେ 'ସମାବେଶ'ର ଦୃପ୍ତ ସାରସ୍ୱତ ଅଭିଯାତ୍ରା ଅବ୍ୟାହତ ରଖନ୍ତି ସେ ।

'ସମାବେଶ'ର ଆଙ୍ଗିକ ଓ ଆତ୍ମିକରେ ଯେଉଁ ମୁଦ୍ରା ନୂତନ ଉନ୍ନତ ରୁଚିର ତଥା ଉଚ୍ଚ ସାତନ୍ତ୍ର୍ୟର ଉପୋଦ୍‌ଘାତ ହୋଇଥିଲା, ତାହା ଅନ୍ୟ ସାହିତ୍ୟ ପତ୍ରିକାମାନଙ୍କ ପାଇଁ ଈର୍ଷା ଓ ଅନୁକରଣର ଏକ ବିଷୟ ହୋଇପଡ଼ିଥିଲା । ଏବଂ ସେମାନଙ୍କୁ ସୁସ୍ଥ ପ୍ରତିଯୋଗିତାମୂଳକ ମାନସିକତା ପ୍ରଦାନ କରି ସେମାନଙ୍କ ସାମଗ୍ରିକ ସ୍ଥିତାବସ୍ଥାକୁ ମଧ୍ୟ ନୂତନ ରୁଚି ଆଡ଼କୁ ବାଟ ଦେଖାଇଥିଲା ।

ଜଗଦୀଶ ପାଣିଙ୍କୁ ଓଡ଼ିଆ ସାହିତ୍ୟ ଓ ସାହିତ୍ୟିକ କେବେହେଲେ ଭୁଲିଯାଇନପାରେ ।

ଲେଖକଟିଏର ଜୀବନରେ ଅନେକ ଦୁଃଖ ! ତା'ର ପରିବାର କେଡ଼େ ବିରାଟ ! ଏବଂ ଏଡ଼େ ବଡ଼ ଲେଖକ–ପରିବାରରେ ମଝିରେ ମଝିରେ ବାରମ୍ବାର ସୋଦର ବିୟୋଗର ଦାରୁଣ ଧକ୍‌କା ସାଙ୍ଗେ ମୁହାଁମୁହିଁ ହେବା ତା'ର ନିର୍ଦ୍ଧାରିତ ଭାଗ୍ୟ !



# ଗୁରୁ ସ୍ମରଣେ

## ସଚି ମହାପାତ୍ର

୧୯୬୮ ମସିହା । ରାଜେନ୍ଦ୍ରାସନରୁ ଫକୀର ହୋଇ ମୁଁ ଢେଙ୍କାନାଳରୁ ଭୁବନେଶ୍ୱର ଆସିଲି । ନୂତନ କର୍ମକ୍ଷେତ୍ର ଖୋଜି ବୁଲୁଥାଏ । ଦିନେ ମୋର ଭେଣେଇ ଶ୍ରୀ ନାରାୟଣ ରଥ ସେତେବେଳର ସେଲ୍‌ସଟାକ୍‌ସ ଅଫିସର ମୋ ସାଙ୍ଗରେ ବୁଲି ଆସୁ ଆସୁ କ୍ୱାଲିଟି ପ୍ରେସ୍‌ରେ ଦୁହେଁ ପହଞ୍ଚିଲୁ । ସେହି ସଂଧ୍ୟାରେ ମୋର ଜଗଦୀଶ ପାଣିଙ୍କ ସହିତ ପ୍ରଥମ ସାକ୍ଷାତ । ମୁଁ ତାଙ୍କୁ ପୂର୍ବରୁ ଦେଖିନଥିଲି । ଜଣେ ଧାରାବାହିକ ପାଠକ ମୁଁ ସମାବେଶ ପତ୍ରିକାର । ସେତେବେଳେ କଲିକତାରୁ ସମାବେଶ ବାହାରୁଥିଲା । ସେଥିରୁ ଜାଣିଥିଲି ଜଗଦୀଶ ପାଣି ସମାବେଶର ସଂପାଦକ ତେଣୁ ପ୍ରଥମ ସାକ୍ଷାତରେ ଯେତେବେଳେ ଜାଣିଲି ଏହି ଜଗଦୀଶ ପାଣି ସମାବେଶର ସଂପାଦକ । ସ୍ୱତଃ ମୋର ମୁଣ୍ଡ ତଳକୁ ନଇଁଗଲା । କିନ୍ତୁ ସେ ଯେତେବେଳେ ମୋର ଓ ନାରାୟଣ ରଥଙ୍କ ସଂପର୍କ ଜାଣିଗଲେ ହଠାତ୍ ଉଠିଆସି କହିଲେ, "ତୁମେ ମୋ ସ୍ତ୍ରୀର ବଡ଼ଭାଇ ହୋଇ ମୋତେ କିପରି ନମସ୍କାର କଲ"? ମୁଁ ସେତେବେଳେ ଜାଣିନଥିଲି ସେ ପୀତବାସର ବଡ଼ଭାଇ । ପୀତବାସ ବି ମୋର ଭେଣେଇ । ନାରଣ୍‌ଠାରୁ ମୋ ବିଷୟ ସବୁ ଶୁଣି ତହିଁ ଆରଦିନ ୧୦ଟା ବେଳେ ପ୍ରେସ୍‌କୁ ଆସିବାକୁ ମତେ ଅନୁରୋଧ କଲେ ।

ସେହିବର୍ଷ କ୍ୱାଲିଟି ପ୍ରେସ୍ ନୂଆ ଖୋଲିଥାଏ । ଗୋଟିଏ ଟ୍ରେଡ଼ଲ ମେସିନ୍ । ଏତେ କାମ ଆସୁଥିଲା ଯେ ମେସିନ୍ ଚଲାଉଥିବା ସ୍ୱର୍ଗତ ଦେବେନବାବୁ ଦିନରାତି ମିଶି ୨୦ ଘଣ୍ଟା କାମ କରୁଥିଲେ । ଗୁନୀ, ତାଙ୍କ ସାନ ଭାଇ ପ୍ରୁଫ୍ ଦେଖୁଥାଏ, କିନ୍ତୁ ତାର ଗ୍ୱକିରି ହୋଇଯିବାରୁ ସେ ଅଫିସ୍ ଗ୍ୱଲିଯାଏ, ତେଣୁ ମେସିନ୍ ଦିନରେ ଗ୍ୱଲିଲେ ପ୍ରୁଫ୍ ଦେଖିବାକୁ କେହି ନଥିଲେ ।

ମୁଁ ତହିଁ ଆରଦିନ ସକାଳ ୧୦ଟାରେ ପ୍ରେସ୍‌ରେ ପହଞ୍ଚିଲି । ତାଙ୍କ ଛୋଟ ଅଫିସ ଗୋଟିଏ ଛୋଟିଆ ଦରକାର । ଅନ୍ୟମାନଙ୍କ ମଧ୍ୟରେ ତାଙ୍କ ସ୍ତ୍ରୀ ଟୁନା ମଧ୍ୟ ସେଠାରେ ବସିଥାଏ । ମୁଁ ପହଞ୍ଚୁ ପହଞ୍ଚୁ ସେ ଟୁନାକୁ ଚିହ୍ନାଇଦେଲେ ଇଏ ତୁମର ବଡ଼ଭାଇ । ଟୁନା ଭାଇନା ଡାକି ମତେ ନମସ୍କାର କଲା ଓ କହିଲା, 'ମୋର ଭାଇନା କେହି ନଥିଲେ, ମୁଁ ଜଣେ ଭାଇନା ପାଇଲି ।

ଶ୍ରୀ ହୃଦୟ ବଲ୍ଲଭ ମହାନ୍ତି (ଟୁକୁନାବାବୁ) ଜଗଦୀଶ ବାବୁଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ । ସେଦିନ ସେ ସେଠାରେ ବସି ପ୍ରୁଫ୍ ଦେଖୁଥିଲେ । ବୋଧହୁଏ ମତେ ପରୀକ୍ଷା କରିବା

ନିମିତ୍ତ ଯେ ଟୁକୁନାବାବୁଙ୍କୁ କହିଲେ 'ଭାଇନାଙ୍କୁ ପ୍ରୁଫ୍ ଗୁଡ଼ା ଦିଅ ସେ ଦେଖିବେ । ଗୋଟିଏ ପ୍ରୁଫ୍ ଦେଖିବା ପରେ ପରେ ସେଇଟି ଚେକ୍ କରିବାକୁ ଟୁକୁନାବାବୁଙ୍କୁ ଦିଅନ୍ତି । ଅଳ୍ପ ସମୟ ମଧ୍ୟରେ ୪/୫ଟି ପ୍ରୁଫ୍ ଦେଖି ସଂଶୋଧନ କଲି ଓ ସବୁ ଟୁକୁନାବାବୁ ଦେଖନ୍ତି ! ଟୁକୁନାବାବୁ ଶେଷରେ କହିଲେ Most perfect, ସେଦିନ ମୁଁ ହେଲି କ୍ୱାଲିଟି ପ୍ରେସ୍‌ର ପ୍ରଥମ ମ୍ୟାନେଜର ଓ ମୋ ଜୀବନର ପ୍ରଥମ ଚାକିରି ।

ମୁଁ ପ୍ରେସ୍ ମୋ ଜୀବନରେ କେଭେ ଦେଖିନଥିଲି । ମୋର କୌଣସି ଅଭିଜ୍ଞତା ନଥିଲା । କିନ୍ତୁ ଜଗଦୀଶ ବାବୁଙ୍କର ସ୍ନେହ ଓ ପ୍ରେରଣା ମତେ ୧୫ ଦିନ ମଧ୍ୟରେ ଜଣେ ଅଭିଜ୍ଞ ପ୍ରେସ୍ ମ୍ୟାନେଜର ଭାବେ ଆପେ ଆପେ ଗଢ଼ି ଦେଇଥିଲା । ମୋ ସାଙ୍ଗରେ ପ୍ରେସ୍‌ରେ ପ୍ରାୟ ୧୫ ଜଣ କର୍ମଚାରୀ ଥିଲେ । ଆମେ ସମସ୍ତେ ସତେ ଯେମିତି ପରଶମଣି ସଂସ୍ପର୍ଶରେ ଆସି ସୁନା ହୋଇ ଯାଇଥିଲୁ । ଗୋଟିଏ ମେସିନ୍‌ର ଆମେ ସମସ୍ତେ ଥିଲୁ ଗୋଟିଏ ଗୋଟିଏ ଅଂଶବିଶେଷ । ସେହି କରିତ୍‌କର୍ମା ଜଗଦୀଶ ପାଣି ସେହି ମେସିନ୍‌ର ଜଣେ ଦକ୍ଷ ଚାଳକ ଥିଲେ ।

ମୁଁ ୧୯୭୭ ମସିହାରୁ ନିଜର ଗୋଟିଏ ପ୍ରେସ୍ କରିଛି ଓ ପ୍ରେସ୍‌ଟି ଭଲ ଚାଲୁଛି । ପ୍ରେସ୍ ପରିଚାଳନା ମୁଁ ନିଜେ କରେ । ପ୍ରତି ମୁହୂର୍ତ୍ତରେ ମୁଁ ଭାବେ, ମୁଁ କ୍ୱାଲିଟି ପ୍ରେସ୍‌ରେ ସତେ ଯେମିତି କାମ କରୁଛି, ଜଗଦୀଶ ପାଣିଙ୍କର ଅଦୃଶ୍ୟ ଶକ୍ତିବଳରେ ।

ତାଙ୍କର ଅକାଳ ବିୟୋଗରେ ମୁଁ ମର୍ମାହତ । ବିଶେଷତଃ ଚୁନା ଓ ଟୁଟୁଙ୍କୁ ମୁଁ କି ପ୍ରକାର ଶାନ୍ତ୍ୱନା ଦେବି ମୁଁ ନିଜେ ହିଁ ସନ୍ତପ୍ତ । ବୟସରେ ବଡ଼ ହେଲେ ମଧ୍ୟ ଗୁରୁ ହିସାବରେ ତାଙ୍କୁ ମୋର ବିନମ୍ର ପ୍ରଣତି ।

(ଓଁ ଶାନ୍ତିଃ, ଶାନ୍ତିଃ, ଶାନ୍ତିଃ)

••••

*କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ ।*
*ମା କର୍ମଫଳହେତୁର୍ଭୂର୍ମା ତେ ସଙ୍ଗୋଽସ୍ତ୍ୱକର୍ମଣି ॥*

ଭାଇନା ଗ୍ଲିଗଲେ,

ଏହି କଥା ଶୁଣିଲା ପରେ, ହଠାତ୍, ବିଶ୍ୱାସ କରିପାରିଲି ନାହିଁ। ମାତ୍ର ପରେ ଜାଣିବାକୁ ପାଇଲି ଯେ, ଏହା ସତ୍ୟ। ଜଗଦୀଶ ଭାଇନାଙ୍କ ସହିତ ମୋର ଦୀର୍ଘ ୩୦ ବର୍ଷର ସମ୍ପର୍କ। ସେ କଲିକତାରେ ରହୁଥିବା ସମୟରେ, ମୋର ତାଙ୍କ ସହିତ ପ୍ରଥମ ପରିଚୟ ହୋଇଥିଲା। ତାଙ୍କର ଦୀର୍ଘ ୬୭ ବର୍ଷର କର୍ମମୟ ଜୀବନ ଥିଲା। ବହୁ ଘଟଣା ବହୁଳ ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ, ଅସୀମ ଧୈର୍ଯ୍ୟ, ଏବଂ କାର୍ଯ୍ୟ ଦକ୍ଷତା ଯୋଗୁଁ ସେ ସବୁ କ୍ଷେତ୍ରରେ ସଫଳତା ହାସଲ କରିଥିଲେ। ମୁଁ ତାଙ୍କୁ ମୋର ବଡ଼ଭାଇ ତଥା ଗୁରୁଜନ ହିସାବରେ ସମ୍ମାନ କରୁଥିଲି ଏବଂ ସେ ମଧ୍ୟ ମୋତେ ଅତି ନିଜର ବୋଲି ଭାବୁଥିଲେ। କୌଣସି ସୁବିଧା ଅସୁବିଧାରେ ମୁଁ ତାଙ୍କ ପାଖରେ ପହଞ୍ଚିଲେ, ସେ ମୋତେ ନିଜର ବୋଲି ଭାବି ପରାମର୍ଶ ଦେଉଥିଲେ। ଖୁବ୍ କମ୍ ବୟସରୁ ସେ ତାଙ୍କର କର୍ମମୟ ଜୀବନ ଆରମ୍ଭ କରି ବାଧାବିଘ୍ନ ସହି, ତାଙ୍କ କର୍ତ୍ତବ୍ୟରୁ ନିବୃତ୍ତ ହେଉନଥିଲେ। ଯେକୌଣସି ପରିଚିତ କିମ୍ବା ଅପରିଚିତ ଲୋକ ଅସୁବିଧାରେ ପଡି ତାଙ୍କ ପାଖରେ ପହଞ୍ଚିଲେ ସେ ତାଙ୍କୁ ଅକୁଣ୍ଠ ଚିତ୍ତରେ ସାହାଯ୍ୟ କରୁଥିଲେ। ସେ ଏକାଧାରରେ ଜଣେ ସାହିତ୍ୟିକ, ସାମ୍ବାଦିକ, ପ୍ରକାଶକ, ଲେଖକ ଏବଂ ସମାଜସେବୀ ଥିଲେ। ସେ ଏ ସମସ୍ତ କ୍ଷେତ୍ରରେ ଲୋକପ୍ରିୟତା ହାସଲ କରିଥିଲେ।

ତାଙ୍କର ଏ ଅକାଳ ମୃତ୍ୟୁ ଅତ୍ୟନ୍ତ ହୃଦୟ ବିଦାରକ। ତାଙ୍କର ଆତ୍ମା ସଦ୍‌ଗତି ଲାଭ କରୁ। ଏହାହିଁ ମୋର ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା।

ଅଗଣୀ ପ୍ରହରାଜ

••••

# ସେଇ ମୋର ଶେଷ ଦେଖା !

## କୃଷ୍ଣଚନ୍ଦ୍ର ସୁଆର

ବିଶ୍ୱସ୍ରଷ୍ଟା ଭଗବାନଙ୍କ ସୃଷ୍ଟି ବଡ଼ ବିଚିତ୍ର । କେତୋଟି ମୁହୂର୍ତ୍ତରେ କେତେ ପରିବର୍ତ୍ତନ ସତରେ ଘଟିଯାଏ। ପାର୍ଥିବ ଜଗତରୁ ପରମାର୍ଥିକ ଆଡ଼କୁ ଲମ୍ଫିଯାଏ..........ଅପହୁଞ୍ଚ ଜଗତ...... ମନକୁ ଜମା ସତପରି ମନେ ହେଉନଥିଲେ ହେଁ ବାସ୍ତବ କ୍ଷେତ୍ରରେ ଅସଲ ଘଟଣାଟାଏ ସଂଘଟିତ ହୋଇଥାଏ । ହଠାତ୍ ଗତ ତିନି ତାରିଖରେ ଦୈନିକ ଖବରକାଗଜ ଦେଖିଲାବେଳକୁ ସାହିତ୍ୟ ପତ୍ରିକା 'ସମାବେଶ'ର ସୁଯୋଗ୍ୟ ସଂପାଦକ ତଥା କ୍ୱାଲିଟି ପ୍ରେସ୍‌ର ସ୍ୱତ୍ୱାଧିକାରୀ ଶ୍ରୀଯୁକ୍ତ ଜଗଦୀଶ ପାଣିଙ୍କ ଦେହାନ୍ତ ଖବର ପାଇ ମୁଁ ମର୍ମାହିତ ହେଲି । ଓଡ଼ିଶାର ମୁଦ୍ରଣ ଶିଳ୍ପରେ ସେ ଏକ ଝଲକ ସୃଷ୍ଟି କରିଥିଲେ । ପତ୍ରିକା ପ୍ରକାଶନରେ ଯୁବ ସାହିତ୍ୟିକମାନଙ୍କୁ ବହୁ ପ୍ରେରଣା ଓ ଉତ୍ସାହ ଦେଇ ଆସିବା ସଙ୍ଗେ ତାଙ୍କ ଭଳି ସ୍ନେହୀ ଶାନ୍ତ, ସରଳ ଓ ନିରାଡ଼ମ୍ବର ପ୍ରକୃତିର ମଣିଷଟିଏ ବାସ୍ତବରେ ବିରଳ । ସେ ଥିଲେ ଏକାଧାରରେ ସାହିତ୍ୟିକ, ସଂପାଦକ, ସଂଗଠକ, ମିଷ୍ଟଭାଷୀ ଓ ବହୁଜନପ୍ରିୟ । ତାଙ୍କ ଭାଇ ଶ୍ରୀ ପୀତବାସ ପାଣିଙ୍କ ସହ ଏକ ଦଶନ୍ଧିରୁ ଅଧିକ ହେବ ପ୍ରାୟ ପାରିବାରିକ ସଂପର୍କ....... । ତାଙ୍କ ତିରୋଧାନର ସପ୍ତାହେ ପୂର୍ବରୁ ଅର୍ଥାତ୍ ଗତ ୨୫.୮.୯୪ରେ ତାଙ୍କ ସହ ଏକ ଅନ୍ତରଙ୍ଗ ସାକ୍ଷାତ ହୋଇଥିଲା । ମୁଁ 'ସମାବେଶ'ର ଆଗାମୀ ପୂଜାସଂଖ୍ୟାରେ ପ୍ରକାଶ ଉଦ୍ଦେଶ୍ୟରେ ଗୋଟିଏ ପ୍ରବନ୍ଧ ଦେବାପାଇଁ ତାଙ୍କରି ପ୍ରେସ୍‌କୁ ଯାଇଥିଲି । ସାମ୍ବାଦିକ ବନ୍ଧୁ ଶ୍ରୀ ଶେଷଦେବ ମିଶ୍ର ମଧ୍ୟ ଯାଇଥିଲେ । ଓଡ଼ିଆ କଥା ସାହିତ୍ୟକୁ ସୁସମୃଦ୍ଧ ଓ ଜନାଦୃତ କରିବାରେ ଯେଉଁ ମହାନ୍ ସ୍ରଷ୍ଟାଙ୍କର ନିରବଚ୍ଛିନ୍ନ ସାଧନା ଜାତିସ୍ମର ସେହି ବିପୁଳଯଶା ଶିଳ୍ପୀ ରାଜ କିଶୋର ପଟ୍ଟନାୟକଙ୍କ ସଂକ୍ରାନ୍ତରେ ପ୍ରବନ୍ଧଟି ଥିଲା– "ରାଜ କିଶୋର ପଟ୍ଟନାୟକଙ୍କ କ୍ଷୁଦ୍ରଗଳ୍ପ : ଏକ ଦୃଷ୍ଟିପାତ" । ତାଙ୍କର ହସ ହସ ମୁହଁ ପରକୁ ଆପଣାର କରିବାର ବ୍ୟକ୍ତିନିଷ୍ଠତା ମାନସପଟରେ ଚିରସ୍ମରଣୀୟ ହୋଇ ରହିବା ସଙ୍ଗେ ସଙ୍ଗେ ସେହି ଦିନର ଦେଖାସାକ୍ଷାତ ହିଁ ଶେଷ ଦେଖା ହେବ ବୋଲି ଭାବିଲେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ପଡ଼େ ।

ତାଙ୍କର ଶୋକସନ୍ତପ୍ତ ପରିବାରବର୍ଗଙ୍କୁ ଭଗବାନ ଅଧିକ ଶକ୍ତି, ସାହସ ଦେବା ସଙ୍ଗେ ସଙ୍ଗେ ତାଙ୍କର ଅମର ଆତ୍ମାର ସଦ୍‌ଗତି କାମନା କରୁଛି ।

••••



ଭୁବନେଶ୍ୱରରେ ବିଶିଷ୍ଟ ଲେଖକମାନଙ୍କ ଗହଣରେ

Time heals but does not erase memories.
Most pious, religious & advisor, derived strength
from his love for literary and social work.
Always had something to offer in terms of
encouragement, honesty and love; this is
what going to be missed. With all the pain
in heart, one has to reconcile to the inevitable
that 'One born has to finally leave the mortal coils'.
The body dissolves but the soul lives on
May his noble soul rest in peace
With Profound grief,

**K.Narasimhan**

●●●●

ଦୁର୍ଲ୍ଲଭ ମାନବଜନ୍ମ ଲାଭ କରି ଯିଏ ଈଶ୍ୱରଙ୍କୁ ପାଇବା ପାଇଁ
ଯତ୍ନଶୀଳ ନହୁଏ, ତାର ଜୀବନ ବୃଥା । ଭଗବାନଙ୍କ ନାମ ସ୍ମରଣ,
ତାଙ୍କର ଯଶ କୀର୍ତ୍ତନ ଏବଂ ଗୁଣ ଗାୟନ, ସାଧୁସେବା ଏବଂ
ଏକାନ୍ତରେ ଭଗବତ୍ ଧ୍ୟାନ ଭଗବାନଙ୍କୁ ପାଇବାର ଉପାୟ ।

# ଜାତସ୍ୟ ହି ଧ୍ରୁବ ମୃତ୍ୟୁ

**ବିଶ୍ୱନାଥ ଶତପଥୀ**

ଜୟ ସୀତାରାମ

ବିଶ୍ୱାସ ହେଉନି । କେଇଟା ବର୍ଷ ଭିତରେ ଓଡ଼ିଆ ସାହିତ୍ୟର ଇମାରତରୁ ଗୋଟିକ ପରେ ଗୋଟିଏ ସ୍ତମ୍ଭ ଖସି ପଡ଼ିବାକୁ ଆରମ୍ଭ କରିଛି । କାଳିନ୍ଦୀ ଚରଣ, ସୁରେନ୍ଦ୍ର ମହାନ୍ତି, ଅନନ୍ତ ପଟ୍ଟନାୟକ, ଗୋପିନାଥ ମହାନ୍ତି ଯିବା ପରେ ପରେ ଡକାଡକି ହେଇ ଚାଲିଗଲେ ତାଙ୍କର ସତୀର୍ଥ ବନ୍ଧୁମାନେ ।

ଏହା ଥିଲା ଗତ ବିଷୁବ ସଂଖ୍ୟା ସମାବେଶରେ "ମଉଷା"ଙ୍କର ଶେଷପୃଷ୍ଠା । ସେ ଯେ ଏତେ ଶୀଘ୍ର ବିନା ଡକରାରେ ଚାଲିଯିବେ, ଏକଥା ବିଶ୍ୱାସ କରି ହେଉନାହିଁ । ଏବେ ମଧ୍ୟ ପ୍ରିୟ ବନ୍ଧୁ ମାଇତି ଦାଦାଙ୍କର ଡାକରାରେ ସେ ଯାଇଛନ୍ତି ବୋଲି ବିଶ୍ୱାସ କରିବାକୁ ହେବ । ଯେକୌଣସି ଆବଶ୍ୟକତା ପଡ଼ିଲେ, ଜରୁରି ଭାବେ, ଯୁଦ୍ଧକାଳୀନ ଭିତ୍ତିରେ କାର୍ଯ୍ୟ ସମାପନ କରିବା ପାଇଁ ମତେ ଡାକରା ପଡ଼େ । ବେଳେ ବେଳେ ସକାଳ ୬ରୁ ମଧ୍ୟ ମଉଷା ଗେଟ୍ ପାଖକୁ ଆସି ଡାକି ଦିଅନ୍ତି, ଉପରକୁ, ବରାଦ ହୁଏ ଗୋଟେ କପ୍ ବିନା ଚିନି, ଆଉ ଗୋଟେ ବାବୁଲିର । ସେଦିନ ସେହି ଦ୍ୱାଦଶୀ ସକାଳୁ ଯେତେବେଳେ ଡକରା ଆସିଲା । ଜ୍ୱାଲିଟି ପ୍ରେସ୍‌ରୁ ତୁମକୁ ଡାକୁଛନ୍ତି, ମଉଷା ଚାଲିଗଲେ । ଏକାଦଶୀ ପରେ ଦ୍ୱାଦଶୀ ପଖାଳକଂସା ପାଖରୁ ଉଠିଆସିଲି । କିଏବେ ତୁ, ଏତେ ବଡ଼ କଥା କହୁଛୁ । ଧାଇଁଗଲି ପଛଗେଟ୍ ଦେଇ । ବାହାରେ କେତେଜଣ ଛିଡ଼ା ହୋଇଛନ୍ତି । ଉଦାସୀନ ଭାବ, ହଜିଲା ହଜିଲା ଲାଗୁଛି । କୁକୁରଟି ଦୂରରେ ଥାଇ ଭୋ–ଭୋ ହେଉଥାଏ । ପାହାଚ ଡେଇଁ ଚାଲିଲି ଉପରକୁ । ମଉସା ଶୋଇଛନ୍ତି, ନିର୍ବିକାର ଭାବେ, ମାଉସୀ କାନ୍ଦିଉଠି ମତେ କହିଲେ, " ଆଉ ମଉସା ବୋଲି କାହା ପାଖକୁ, ପଗ୍ଭରିବାକୁ ଆସିବୁରେ ବାବୁଲି" ।

ମୁଁ ପ୍ରବଚନ କରେ, ବକ୍ତାଭାବେ ମଞ୍ଚଉପରେ ଲୋକଙ୍କୁ ବୁଝାଏ ଜାତସ୍ୟ ହି ଧ୍ରୁବ ମୃତ୍ୟୁ । ତଥାପି ମୁଁ ବୁଝିପାରୁ ନଥାଏ । ମଉସାଙ୍କ ଚୈତନ ହୀନ ଶବ ଉପରେ ମୁଁ ଫୁଲ ସଜାଇଲାବେଳେ, ଅମାନିଆ ଅଶ୍ରୁ ବୋଲ ମାନୁନଥାଏ । ମାମା ଓ ଜିତୁ ଉଭୟଙ୍କ ଅତିଶୟ ବ୍ୟାକୁଳତା ପରିବେଶକୁ ଶୋକାଚ୍ଛନ୍ନ କରି ଦେଉଥାଏ । ମୁଁ ଜାଣୁଥାଏ ଭଲଭାବେ ଏ ଶବ ଚୈତନ୍ୟ ହରାଇଛି । ଯମଦୂତମାନେ ସୂକ୍ଷ୍ମ ଶରୀରକୁ ଗିରଫ କରିସାରିଲେଣି । ତଥାପି

ମଉସାଙ୍କ ପ୍ରତି ଅତ୍ୟଧିକ କଥାଶକ୍ତି ହିଁ ଏ ଅମାନିଆ ଅଶ୍ରୁ ବର୍ଷଣର କାରଣ ଏହା ହୃଦୟଙ୍ଗମ କରିପାରୁଥାଏ।

କିଛିଦିନ ତଳେ ମଉସାଙ୍କ ସାଙ୍ଗରେ କାର୍‌ରେ ଝିଣ୍ଟି ଆଶ୍ରମକୁ ଯାଉଥାଏ। ରାମାୟଣ ଉପରେ ମୁଁ ଆଲୋଚନା କରୁଥାଏ।

*ରାମ ରାମ କହି ଯେ ଜମୁହାହିଁ।*

*ତିନ୍ହ କି ନ ପାପ ପୁଞ୍ଜ ସମୁହାଇ।*

ଆଲୋଚନା ପ୍ରସଙ୍ଗରେ ମଉସା କହିଥିଲେ ମୋ ମଲାବେଳକୁ ଖୁବ୍ କୀର୍ତ୍ତନ କରିବ ରାମ ନାମ ନେବ। ଦୁଃଖର କଥା ସେହି ମୁହୂର୍ତ୍ତରେ କୌଣସି ବ୍ୟବସ୍ଥା ହୋଇପାରିଲା ନାହିଁ। ଏହାହିଁ ପ୍ରାରବ୍ଧ। ଅବଶ୍ୟ ମଉସାଙ୍କ ମୃତ୍ୟୁ ଏକ Royal Death ଏଥିରେ ତିଳେମାତ୍ର ସନ୍ଦେହ ନାହିଁ। କିନ୍ତୁ ଖୁବ୍ ସଂକୀର୍ତ୍ତନର ଆୟୋଜନ ଆଜି ହେବା ପାଇଁ ବୁଢୁ ପ୍ରୟାସ କରିବା ପାଇଁ ଅନୁରୋଧ କରୁଛି।

*କେହି ରହିନାହିଁ ରହିବେ ନାହିଁଟି*

*ଭବରଂଗ ଭୂମି ତଳେ*

*ସର୍ବେ ନିଜ ନିଜ ଅଭିନୟ ସାରି*

*ବାହୁଡ଼ିବେ କାଳବଳେ*

ଦିବ୍ୟ ଆତ୍ମାର ସଦ୍‌ଗତି ହେଉ, ଏହାହିଁ ସୀତାରାମ ଚରଣାରବିନ୍ଦେ ଆକୁଳ ପ୍ରାର୍ଥନା।

••••

*ଯଃ ସର୍ବତ୍ରାନଭିସ୍ନେହ, ସ୍ତତତ୍‌ପ୍ରାପ୍ୟ ଶୁଭାଶୁଭଂ।*
*ନାଭିନନ୍ଦତି ନ ଦ୍ୱେଷ୍ଟି, ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା ॥*

# କରିତ୍‌କର୍ମା

**ରବୀନ୍ଦ୍ର ପ୍ରସାଦ ପଣ୍ଡା**

ବୟସରେ ମୋ'ଠାରୁ ଦଶବର୍ଷ ବଡ଼। ପାଠଶାଠ ସାମାନ୍ୟ। ପେସାରେ ତେଲ ଆଉ ପାଣି ଭିତରର ଅସାମଞ୍ଜସ୍ୟ। ସାନ୍ନିଧ୍ୟର ଅବକାଶ ସେଥିପାଇଁ କ୍ଷୀଣ। କିନ୍ତୁ, ପଚାଶ ଦଶକରେ ଗୋଟିଏ ନୁହେଁ, ତିନି-ତିନିଟା ସାହିତ୍ୟ ପତ୍ରିକା ବାହାରୁଥାଏ କଲିକତାରୁ। ସବୁଠୁଁ ପୁରୁଣା 'ଆସନ୍ତାକାଲି' ହାଡ଼କଟା ଗଳିରୁ; 'ସମାବେଶ' ହିଦାରାମ ବାନାର୍ଜୀ ଲେନ୍‌ରୁ; ଆଉ 'ତରଙ୍ଗ' କେଉଁଠୁ ବାହାରୁଥିଲା ମନେନାହିଁ। ରେଭେନ୍‌ସା କଲେଜ ଇଷ୍ଟ ହଷ୍ଟେଲରୁ ଯେଉଁମାନେ ଏ'ସବୁଠି ଲେଖୁଥିଲେ, ଯେପରି ଚୌଧୁରୀ ହେମକାନ୍ତ ମିଶ୍ର ବା ରମାକାନ୍ତ ରଥ, ତାଙ୍କ ଭିତରେ ମୁଁ ଥିଲି ସର୍ବକନିଷ୍ଠ। ଯେତେବେଳେ ଜଗଦୀଶବାବୁଙ୍କୁ ଦେଖିଲି, ମନେହେଲା ଭାଗ୍ୟ ଅନ୍ୱେଷଣରେ ରାସ୍ତାକୁ ବାହାରି ଆସିଥିବା ବହେମିୟାନ୍। ତେଣୁ. ନିଉଜ୍‌ପ୍ରିଣ୍ଟ ରେ ଛାପା ଡିମାଇ ସାଇଜ୍‌ର ସେଇ କୃଶକାୟ 'ସମାବେଶ'ର ଦୁଇ ମଲାଟ ମଝିରେ ଆମର ସଂପର୍କର ସୀମା। ମାତ୍ର ଜୀବନର ଯେତେ ମଡ଼େଲ୍ ମଣିଷ ଆଜିଯାଏଁ କଳ୍ପନା କରିଚି, ନିଜେ ଜୀବନ ସେଇସବୁ ମଡ଼େଲ୍‌ଠାରୁ ସୂକ୍ଷ୍ମତର, ଏବଂ ଏଇ ସତ୍ୟଟି ଜଗଦୀଶ ବାବୁଙ୍କର ପରବର୍ତ୍ତୀ ଜୀବନ।

ଓଡ଼ିଶାର ରାଜନୀତିରେ ବିଜୁ-ବୀରେନ୍-ନୀଳମଣି, ଏଇ ତ୍ରିନିଟିର ଜନକ ଏକ ବିଶାଳ ବଟବୃକ୍ଷ; ହରେକୃଷ୍ଣ ମହତାବ୍। ପରେ ସେଇ ସଂହାର କରିଥିଲେ ନିଜ ହାତରେ ଶିଷ୍ୟ ସଂପ୍ରଦାୟ। ପ୍ରଧାନତଃ ଏଇ କାରଣରୁ ଯେ ଏମାନେ କେହି ବୁଝିନଥିଲେ ତାଙ୍କର ଜୀବନର ଆଦର୍ଶ, ଖାଲି ସ୍ୱାର୍ଥସିଦ୍ଧି ପାଇଁ ବ୍ୟବହୃତ ହୋଇଥିଲେ ବା ବ୍ୟବହାର କରିଥିଲେ। ଯେଉଁ ଜଣେ ମାତ୍ର ଅନୁଚର ସେଇ ଜୀବନ ଆଦର୍ଶକୁ (ତା'ର ସ୍ୱରୂପ ବା ଶକ୍ତି ଯାହା ହେଉ ପଛେ) ଉପଲବ୍ଧି କରିଥିଲେ ସମ୍ୟକ ଏବଂ କରି, ନିଜ ପାଇଁ କରିଥିଲେ ମଡ଼େଲ୍, ସେ ହେଲେ ଜାନକୀ ବଲ୍ଲଭ ପଟ୍ଟନାୟକ। ଏଇ ବଟବୃକ୍ଷର ଛତ୍ର ଛାୟାରେ ଜଗଦୀଶବାବୁଙ୍କୁ ବି ମିଳିଥିଲା ଆଶ୍ରୟ। ଭାଗ୍ୟ ଅନ୍ୱେଷଣରେ କଲିକତା ପ୍ରବାସୀ ବୋହେମିୟାନ୍ ଯୁବକକୁ ହିଦାରାମ ବାନାର୍ଜୀ ଲେନ୍‌ର ଧୂମ୍ରାଭ ଅସ୍ପଷ୍ଟ ଜଗତରୁ ଉଠିଆସି ବସିଥିବାର ଦେଖାଯାଏ କଟକରେ; ପ୍ରଜାତନ୍ତ୍ର ପ୍ରେସ୍‌ର ମ୍ୟାନେଜର। ଅବଲୀଳାକ୍ରମେ ଭୁବନେଶ୍ୱରର କ୍ୱାଲିଟି ପ୍ରିଣ୍ଟିଂ ପ୍ରେସ୍‌ର ଅସଲ ମାଲିକ, 'ସମାବେଶ' ଅନିୟମିତ ସାହିତ୍ୟପତ୍ରର କର୍ଣ୍ଣଧାର। ତାଙ୍କର ସହକାରୀ ଚିତ୍ରଶିଳ୍ପୀ ଅସୀମ ବସୁ, ଅଧ୍ୟାପକ ହରିହର ମିଶ୍ର। ମୁଁ ପରିହାସ କରି କହୁଥିଲି, ଫ୍ରମ୍ ଲଗ୍ କ୍ୟାବିନ୍ ଟୁ ଦି ହ୍ୱାଇଟ୍ ହାଉସ୍। ଜଗଦୀଶବାବୁ, ଯିଏ ହିଦାରାମ ବାନାର୍ଜୀ ଲେନ୍‌ର ଫୁଟ୍‌ପାଥିରୁ ଜିଲିପି ଓ ମାଟିଖୁରୀରୁ ଚା' ଖୋଇବା ପରେ ମୋତେ ବହୁବାର

ଡଉବଜାର୍ ଷ୍ଟ୍ରୀଟ୍‌ର ବେଶ୍ୟାପଡ଼ା ପାର୍‌କରାଇ ବସ୍‌ରେ ଉଠାଇ ଦେଇଚ଼ନ୍ତି, କେବେହେଲେ ଛଳ କରି ନାହାନ୍ତି । ମୋର ଠଙ୍ଗାର ଜବାବ ତାଙ୍କର ସିଗାରେଟ୍ ଧୂଆଁ ।

ମହତାବଙ୍କଠାରୁ ବେଶୀକିଛି ନେବାର ସାମର୍ଥ୍ୟ ତାଙ୍କର ନଥିଲା । ଲୁଙ୍ଗି–ଗେଞ୍ଜିର ଜାଗା ନେଇଚ଼ି ଦୁଗ୍ଧଫେନନିଭ ଖଦଡ଼ ଧୋତି ପଞ୍ଜାବି, ପାନର ଜାଗା ସିଗାରେଟ୍, ଗୋଡ଼ର ଜାଗା ଗାଡ଼ି, କୁଟୀରର ଜାଗା ହର୍ମ୍ୟ । ତଥାପି ଚତୁର୍ବର୍ଗର ବଡ଼ ଅଂଶଟା ବାକି ରହିଗଲା; ଧର୍ମ ଆଉ ମୋକ୍ଷ । ଏଇ ଅକ୍ଷମତା ଓ ଅପ୍ରାପ୍ତିର ଅନ୍ତର୍ଦାହ ତାଙ୍କ ମୁଖକୁ ମୁଖା, ଜଟକୁ ଜଟା, ମନକୁ ମାନ, ଲୁହକୁ ଲୁହା ଆଡ଼କୁ ଦିନ ପରେ ଦିନ ପେଲିନେଇ ଯାଇଚ଼ି; ପୁତ୍ରଶୋକରେ କ୍ଲିଷ୍ଟ ଜଗଦୀଶବାବୁ ପ୍ରତିରୋଧର କ୍ଷମତା ଅନେକ ଆଗରୁ ହରାଇ ବସିଚ଼ନ୍ତି । ଏବଂ ଶେଷ ପର୍ଯ୍ୟନ୍ତ ରହିଯାଇଚ଼ନ୍ତି ଜଣେ ଦୁଃଖୀ ଆଉ ନିଃସହାୟ ମଣିଷ ।

ସେ ମୋ ବାହାଘରରେ ବରଯାତ୍ରୀ ଯାଇଚ଼ନ୍ତି; ମୁଁ କିନ୍ତୁ ତାଙ୍କର ଅନ୍ତିମ ଦିନରେ ବି ଦେଖିବାକୁ ଯାଇନାହିଁ । ସେ ଜାଣିଥିଲେ ମୂର୍ଖ ସାମାଜିକ ନୁହେଁ । ସେଥିପାଇଁ ଭରସା ରଖୁଚ଼ି, ସେ ଯେଉଁଠି ଥା'ନ୍ତୁ ତ୍ରିକିଶି ବର୍ଷ ବ୍ୟାପୀ ମୂର୍ଖର ନାନାବିଧ ଅବିମୃଶ୍ୟକାରିତାକୁ ଯେପରି ପ୍ରଶ୍ରୟ ଦେଇ ଆସିଚ଼ନ୍ତି ସିଗାରେଟ୍ ଧୂଆଁରେ, ଶେଷଟର ପାଇଁ କୁଣ୍ଠିତ ହେବନାହିଁ ସେଇ ବୋହିମିୟାନ୍ ଉପେକ୍ଷା ।



ସଂସ୍କାର ଓ ପରଂପରାର ଡୋରିରେ ବୁନ୍ଥା ଏତେକାଳର ସଂସାର ପଲକ ମାତ୍ରକେ ବିପର୍ଯ୍ୟସ୍ତ ହୋଇଗଲା । କାଲି ଏତେବେଳକୁ ସବୁ ଠିକ୍ ଥିଲା ଆଜି ଏତେବେଳକୁ ସବୁ ଓଲଟପାଲଟ । ସବୁ ଯେମିତି ଚ୍ଳୁଥିଲା ସେମିତି ଚ୍ଳୁଛି ଗତାନୁଗତିକ ଧାରାରେ. ମାତ୍ର ଜଗଦୀଶ ଭାଇ ନାହାନ୍ତି । ଆପଣା ଶିଂଗରେ ମାଟି ତାଡ଼ିବାର ସାମର୍ଥ୍ୟ ଏବଂ ଆତ୍ମବିଶ୍ବାସରେ ଉଚ୍ଛୁଳା ଭିତରର ମଣିଷପଣିଆ–ବଡ଼ ଓଜନିଆ–ବିରାଟ ସତ୍ୟ ଉପଲବ୍ଧି କରିବାର ସାହସ ସଂଚ୍ୟ କରି କରି ମଣିଷଟିର ଜୀବନଟି କଟିଗଲା । ସେଠି ଛଳନା ନାହିଁ, ସବୁ ଖୋଲା, ମେଲା । ସ୍ୱାଭିମାନର ଐଶ୍ବର୍ଯ୍ୟରେ ମହିମାମୟ ଚିର ସନ୍ତୁଳିତ ଜୀବନ ।

ସମସ୍ତଙ୍କର ହୃଦୟ ବିଦାରକ ଅକପଟ ନିଃସଙ୍କୋଚ ଶୋକକୁ ଅବଜ୍ଞା କରି ଆତ୍ମା ମାଟିପିଣ୍ଡ ଛାଡ଼ିଗଲାଣି । ସଂସାରର ସମସ୍ତ ସୁଖ ଦୁଃଖର ଉର୍ଦ୍ଧ୍ୱରେ କାରଣ :

*ଅଛେଦ୍ୟୋୟମଦାହ୍ୟୋୟ ମକ୍ଲେଦ୍ୟୋଶୋଷ୍ୟ ଏବ ଚ ।*
*ନିତ୍ୟ ସର୍ବଗତଃ ସ୍ଥାଣୁରଚ଼ଃଳୋୟଂ ସନାତନ ।*

**ଅଶୋକ କୁମାର ସାହୁ**

*ପ୍ରକୃତିଂ ସ୍ୱାମବଷ୍ଟଭ୍ୟ, ବିସୃଜାମି ପୁନଃ ପୁନଃ ।*
*ଭୂତିଗ୍ରାମମିମଂ କୃତ୍ସ୍ନ, ମବଶଂ ପ୍ରକୃତେର୍ବଶାତ୍ ॥*

# ଜଣେ ହୃଦୟବାନ୍ ଲୋକ

## ସାତକଡ଼ି ହୋତା

ଜଗଦୀଶବାବୁଙ୍କ ସହିତ ମୋର ପ୍ରଥମ ପରିଚୟ ଚାଳିଶ ବର୍ଷ ପୂର୍ବେ କଲିକତାରେ। ମୁଁ ଡିସେମ୍ବର ଅଣତିରିଶ ତାରିଖ ୧୯୫୪ ମସିହାରେ ରେଳବାଇ ଚାକିରିରେ ଯୋଗଦିଏ କଲିକତାରେ। ମୀର୍ଜାପୁର୍ ଷ୍ଟ୍ରୀଟ୍‌ରେ ଥିବା ଇଣ୍ଡିଆ ହୋଟେଲରେ ରହୁଥାଏ। କଲିକତାପରି ବଡ଼ ସହରରେ ଏକୁଟିଆ ଲାଗୁଥାଏ। 'ଆସନ୍ତାକାଲି' ଅଫିସ୍ ଥିଲା ପ୍ରେମ୍‌ଚାନ୍ଦ ବରାଳ ଷ୍ଟ୍ରୀଟ୍‌ରେ। ମିର୍ଜାପୁର ଷ୍ଟ୍ରୀଟ୍‌ରୁ କଲେଜ ଷ୍ଟ୍ରୀଟ୍ ଏବଂ ସେଠାରୁ ପ୍ରେମଚାନ୍ଦ ବରାଳ ଷ୍ଟ୍ରୀଟ୍ ବେଶୀ ବାଟ ନୁହେଁ। ପାଦରେ ଚାଲିଗଲେ ପନ୍ଦର କୋଡ଼ିଏ ମିନିଟ୍‌ରୁ ବେଶୀ ଲାଗେ ନାହିଁ। ଏବଂ ପ୍ରେମଚାନ୍ଦ ବରାଳ ଷ୍ଟ୍ରୀଟ୍‌ରୁ ଆଉ ଗୋଟେ ପାଖ ବାଟରେ ଗଲେ ଆହୁରି ଟିକେ କମ୍ ବାଟ। କିନ୍ତୁ ସେଇଟା ଥିଲା ରେଡ୍‌ଲାଇଟ୍ ଏରିଆ– ବେଶ୍ୟାପଡ଼ା। ରାସ୍ତାରେ ଯିବାବେଳେ ଦୁଇକଡରେ ଛିଡ଼ା ହୋଇଥିବା ରୂପଜୀବୀମାନେ ପସରା ମେଲାଇ ବସିଥିବା ଦୃଶ୍ୟ ଆଖିରେ ପଡ଼େ। ସେଇ ବାଟଦେଇ ଯିବାବେଳେ ବେଳେ ବେଳେ ଦେଖାହୁଏ କେତେକ ପରିଚିତଙ୍କ ସହିତ। 'ଆସନ୍ତାକାଲି' ଅଫିସ୍ ସେତେବେଳେ କଲିକତାର ବୁଦ୍ଧିଜୀବୀ ଓଡ଼ିଆମାନଙ୍କର ତୀର୍ଥସ୍ଥାନ। ସଂଧ୍ୟାବେଳେ ଅନେକ ଆସୁଥିଲେ ସେଠାକୁ ଆଳାପ ଆଲୋଚନା କରି ସମୟ କାଟିବା ପାଇଁ। 'ଆସନ୍ତାକାଲି' ଅଫିସ୍‌ରେ ପ୍ରଥମ ସାକ୍ଷାତ ହୁଏ ଜଗଦୀଶ ପାଣିଙ୍କ ସହିତ। ସେ ମୋଠାରୁ ତିନି ଚାରିବର୍ଷ ବୟସରେ ବଡ଼। ସାମ୍ବାଦିକତା କରୁଥିଲେ। ସାହିତ୍ୟାନୁରାଗୀ ବ୍ୟକ୍ତି। ସରଳ ଓ ମେଳାପୀ। ଦେଖିବାକ୍ଷଣି ଆପଣାର କରି ନିଅନ୍ତି। ତା ଛଡା ମୁଁ ମଧ୍ୟ ଲେଖେ ବୋଲି ଜାଣିବା ପରେ ତାଙ୍କ ସହିତ ଅନ୍ତରଙ୍ଗତା ବଢ଼ିଲା। ଜଗଦୀଶବାବୁ ବନ୍ଧୁ ହୋଇଗଲେ। ଏକତ୍ର ମିଳିମିଶି ଓଡ଼ିଆମାନଙ୍କ ସାଂସ୍କୃତିକ ଅଭ୍ୟୁତ୍‌ଥାନ ପାଇଁ କାମ କରୁଥିଲୁ। ଜଗଦୀଶବାବୁ, ଆକୁଳି ମିଶ୍ର ପ୍ରଭୃତି ଓଡ଼ିଆମାନଙ୍କୁ ଏକତ୍ରିତ କରିବା ପାଇଁ ବହୁ ଉଦ୍ୟମ କରୁଥିଲେ। ଆସନ୍ତା କାଲି ଥିଲା ସାଂସ୍କୃତିକ ମିଳନ ଭୂମି। 'ଆସନ୍ତାକାଲି'ର ପ୍ରତିଷ୍ଠାତା ପାତିରାମ ପରିଜା ଓ ତାଙ୍କ ସାନଭାଇ ଯଦୁମଣି ପରିଜାଙ୍କ ଅକୃପଣ ଆତିଥ୍ୟ ମିଳୁଥିଲା ସମସ୍ତଙ୍କୁ। ଜଗଦୀଶବାବୁ କଲିକତାରୁ ସାମୟିକଭାବେ ପ୍ରକାଶ ପାଉଥିବା ଆଉ ଗୋଟେ ଦୁଇଟା ପତ୍ରିକା ସହିତ ମଧ୍ୟ ସଂପୃକ୍ତ ଥିଲେ। ସାହିତ୍ୟ ସଂସ୍କୃତି ଚର୍ଚ୍ଚା ଯେଉଁଠି ହେଉଥିଲା ସେଠାକୁ ଯାଉଥିଲେ ଏବଂ ଓଡ଼ିଆମାନଙ୍କୁ ସାମାଜିକ ଓ ସାଂସ୍କୃତିକ କ୍ଷେତ୍ର ସଂଗଠିତ କରିବା ଲାଗି ଚେଷ୍ଟା ମଧ୍ୟ କରୁଥିଲେ। ତେଣୁକରି କହିବା ବାହୁଲ୍ୟ ଯେ ସେ ଅନେକ ଓଡ଼ିଆ ଅନୁଷ୍ଠାନ ସହିତ ସଂପୃକ୍ତ ହୋଇଯାଇଥିଲେ ଏବଂ ଏସବୁ କାର୍ଯ୍ୟରେ ଅଗ୍ରଣୀ ଭୂମିକା ଗ୍ରହଣ କରୁଥିଲେ। ସେତେବେଳେ ଆର୍ଥିକ ସ୍ୱଚ୍ଛଳତା ନଥିଲେ ହେଁ ଜଗଦୀଶବାବୁ ବନ୍ଧୁମାନଙ୍କୁ କେବଳ

ଆପ୍ୟାୟିତ କରୁନଥିଲେ, ବରଂ କାହାର ହଠାତ୍ କିଛି ବିପଦ ଆପଦ ପଡ଼ିଲେ ସେ ତାଙ୍କ ପାଖକୁ ଧାଇଁ ଆସୁଥିଲେ ସହାନୁଭୂତି ଓ ସାହାଯ୍ୟ ପାଇଁ। ତାଙ୍କ ପାଖରୁ କେହି ନିରାଶ ହୋଇ ଫେରିଯିବାର ମୁଁ ଦେଖିନାହିଁ। ନିଜର କ୍ଷମତାଠାରୁ ଅଧିକ ସାହସ ଥିଲା ତାଙ୍କର। ସେଥିପାଇଁ ବେଳେ ବେଳେ ପକେଟ୍ ଶୂନ୍ୟ ଥିଲେ ବି ଦଶପନ୍ଦର ଟଙ୍କା ସାହାଯ୍ୟ ଦବାପାଇଁ ରାଜି ହୋଇ ଯାଉଥିଲେ ଏବଂ ନିଜେ ଧାରଉଧାର କରି ଅନ୍ୟ କୌଣସିଠାରୁ ସେଇ ଟଙ୍କା ଯୋଗାଡ଼ କରି ବନ୍ଧୁମାନଙ୍କୁ ସାହାଯ୍ୟ କରୁଥିଲେ। ଜଗଦୀଶବାବୁଙ୍କ ଏହା ଥିଲା ସବୁଠାରୁ ବଡ଼ ଗୁଣ ଓ ମହତପଣିଆ ଯାହା ଏବେ ସଂଭ୍ରାନ୍ତ ଓ ସ୍ୱଚ୍ଛଳମାନଙ୍କ ମଧ୍ୟରେ ବି ଦୁର୍ଲଭ ପରି ଲାଗୁଛି।

କଲିକତାରୁ ମୁଁ ବଦଳି ହୋଇ ଅନ୍ୟତ୍ର ଚାଲିଗଲି। ସେ ଚାଲିଆସିଲେ ଓଡ଼ିଶା। ମହତାବବାବୁଙ୍କ ସହିତ ତାଙ୍କର ସଂପର୍କ ଥିଲା କଲିକତାରେ ଥିବାବେଳୁ। ତେଣୁ ତାଙ୍କୁ ମାଧ୍ୟମ କରି ମହତାବବାବୁ ମଧ୍ୟ କିଛି କାମ କରାଉଥିଲେ ଓଡ଼ିଆମାନଙ୍କ ମଧ୍ୟରେ । ସେ ପ୍ରଜାତନ୍ତ୍ର ଅନୁଷ୍ଠାନ ସହିତ ଆହୁରି ଘନିଷ୍ଠ ହେଲେ ପରବର୍ତ୍ତୀ ସମୟରେ ମହତାବବାବୁଙ୍କ ଦୁର୍ଦ୍ଦିନରେ। ଜଗଦୀଶବାବୁଙ୍କ ଭଲ ଗୁଣ ଚିହ୍ନିଥିଲେ ମହତାବ ଏବଂ ସେଥିପାଇଁ ତାଙ୍କୁ ପୁତ୍ରୋପମ ସ୍ନେହ ଓ ବିଶ୍ୱାସ ମଧ୍ୟ କରୁଥିଲେ। ଦୁର୍ଦ୍ଦିନରେ ସାହାଯ୍ୟ କରିବା ଥିଲା ଜଗଦୀଶବାବୁଙ୍କ ବଡ଼ ଗୁଣ। ତେଣୁ ଯେତେବେଳେ ଇମରଜେନ୍ସି ଜାରୀ ହେଲା, ମହାତବବାବୁ ଜେଲ୍ ଭିତରେ ରହିଲେ, ସେତେବେଳେ ତାଙ୍କ ଦ୍ୱାରା ପରିଚାଳିତ ଅନୁଷ୍ଠାନ ସବୁକୁ ଜୀଆଁଇ ରଖିବା ପାଇଁ ଯେଉଁ କେତେଜଣ ସହକର୍ମୀ ତାଙ୍କୁ ସାହାଯ୍ୟ କରିଥିଲେ ସେମାନଙ୍କ ମଧ୍ୟରେ ଥିଲେ ଜଗଦୀଶ ପାଣି। ଜଗଦୀଶବାବୁଙ୍କୁ ଦେଖିଲେ ସେ ଛୋଟ ମଣିଟିଏ ପରି ଦିଶନ୍ତି, ହୁଏତ ଆଖିରେ ନପଡ଼ିବା ଭଳି ତାଙ୍କ ଚେହେରା; କିନ୍ତୁ ତାଙ୍କ ଉଦାର ମାନବିକତା ଯେଉଁମାନେ ଦେଖିଛନ୍ତି ସେମାନଙ୍କ ଦୃଷ୍ଟିରେ ସେ ଥିଲେ ଜଣେ ବଡ଼ ମଣିଷ, ଭଲ ମଣିଷ.....ନିର୍ଭୀକ ମଣିଷ......ସହଜରେ ଏପରି ଏକାଧିକ ବ୍ୟକ୍ତି ଆଖିରେ ପଡ଼ନ୍ତି ନାହିଁ।

ତା'ପରେ ତାଙ୍କ ସହିତ ସଂପର୍କ ପ୍ରାୟ ନଥିଲା କହିଲେ ଚଳେ। ମୁଁ ଓଡ଼ିଶାକୁ ଫେରିଲି କୋଡ଼ିଏ ବର୍ଷ ପରେ ୧୯୭୪ ପ୍ରାରମ୍ଭରେ। ସେତେବେଳକୁ ଜଗଦୀଶବାବୁ ବେଶ୍ ଆସନ ଜମେଇ ବସିଗଲେଣି ଭୁବନେଶ୍ୱରରେ। ଖବରକାଗଜରେ ପଢ଼ିଲି ଲେଖକ ସାମ୍ମୁଖ୍ୟ ଗଠିତ ହେବା ସମ୍ବନ୍ଧରେ। ଅଖିଳ ପଟ୍ଟନାୟକ, ମହାପାତ୍ର ନୀଳମଣି ସାହୁ, ଶାନ୍ତନୁ ଆଚାର୍ଯ୍ୟ, ଚନ୍ଦ୍ରଶେଖର ରଥ, କୃଷ୍ଣପ୍ରସାଦ ମିଶ୍ର ପ୍ରଭୃତିଙ୍କ ସହିତ ତାଙ୍କ ନାମ ବି ପଢ଼ିଲି ଖବରକାଗଜ ପୃଷ୍ଠାରୁ। ଲେଖକ ସାମ୍ମୁଖ୍ୟର ମାସିକ ବା ବିଶେଷ ବୈଠକ ବସୁଥିଲା କ୍ୱାଲିଟି ପ୍ରେସ୍‌ରେ। ଜଗଦୀଶବାବୁଙ୍କ ବନ୍ଧୁଚର୍ଚ୍ଚା ମନେରଖିବା ଭଳି, ସେଥିପାଇଁ କୁଣ୍ଠା ବା କୃପଣତା କୌଣସି ଦିନ ନଥିଲା ତାଙ୍କର।

ପରେ ଲେଖକ ସାମ୍ମୁଖ୍ୟ ରେଜେଷ୍ଟ୍ରୀଭୁକ୍ତ ଅନୁଷ୍ଠାନ ହେଲା । ବାର୍ଷିକ ସମ୍ମିଳନୀ ଆରମ୍ଭ ହେଲା । ମୁଁ ଏହି ଅନୁଷ୍ଠାନ ସହିତ ସଂପୃକ୍ତ ହୋଇଚାଲି ଏବଂ ଜଗଦୀଶବାବୁଙ୍କ ସହିତ ପୁନର୍ବାର ବନ୍ଧୁତ୍ୱ ଗଢିଉଠିଲା । ଲେଖକ ସାମ୍ମୁଖ୍ୟର ବାର୍ଷିକ ଅଧିବେଶନ ଉପଲକ୍ଷେ ଯେଉଁ ସ୍ମରଣିକା ପ୍ରକାଶ ପାଉଥିଲା ପ୍ରଥମ ଚାରି ପାଞ୍ଚବର୍ଷ ତାହା କ୍ୱାଲିଟି ପ୍ରେସ୍‌ରେ ଜଗଦୀଶବାବୁଙ୍କ ତତ୍ତ୍ୱାବଧାନରେ ହିଁ ଛାପା ହୋଇଥିଲା । ଛାପାକାର୍ଯ୍ୟ ତ ଶେଷ ପର୍ଯ୍ୟନ୍ତ ସରେନାହିଁ । ମୁଁ ଉତ୍କଣ୍ଠିତ ହେଲେ ସେ କହନ୍ତି–ମୁଁ ଯେଉଁ ଦାୟିତ୍ୱ ନେଇଛି ସେଥିରେ ଫେଲ୍ ମାରିବି ନାହିଁ । ଆପଣମାନେ ନିଶ୍ଚିନ୍ତରେ ଯାଆନ୍ତୁ, ମୁଁ ଉଦ୍‌ଘାଟନ ଉତ୍ସବ ବେଳକୁ ଠିକଣା ସ୍ଥାନରେ ପହଂଚି ସାରିଥିବି । ଠିକ୍ ତାହାହିଁ ହୁଏ । ଶେଷ ମୁହୂର୍ତ୍ତରେ ଜଗଦୀଶବାବୁ ପହଂଚିଯାନ୍ତି ନିଜେ ଗାଡ଼ି ଭଡ଼ା କରି, ନିଜେ ନେଇଥିବା ଦାୟିତ୍ୱ ନିର୍ବାହ କରିବା ପାଇଁ । ଏପରି ଦ୍ୱିତୀୟ ବ୍ୟକ୍ତି ମୁଁ ଦେଖିନାହିଁ ।

ଅନୁଭାୟନ ୧୯୮୧ ଜାନୁଆରୀରେ ପ୍ରଥମ ପ୍ରକାଶ ପାଏ । ସେତେବେଳେ ଥାଏ ତ୍ରୈମାସିକ । ଗୀତା ଦେବୀ କେତେଥର କ୍ୱାଲିଟି ପ୍ରେସ୍‌ରେ ଏହା ଛାପିଥିଲେ ଜଗଦୀଶବାବୁଙ୍କ ସହାୟତାରେ । କ୍ୱାଲିଟି ପ୍ରେସ୍ ଭୁବନେଶ୍ୱରର ଏକନମ୍ବର ପ୍ରେସ୍ ଭାବେ ପ୍ରତିଷ୍ଠିତ ହେଲା । କାମ ବଢିଲା । ସମାବେଶ ପ୍ରସାରିତ ହେଲା । କିନ୍ତୁ କେହି ଯଦି ତାଙ୍କୁ କୌଣସି ଅନୁରୋଧ କରୁଥିଲା ବହୁ ଜରୁରୀ କାର୍ଯ୍ୟ ଓ ଅସୁବିଧା ପ୍ରତି ଭ୍ରୂକ୍ଷେପ ନକରି ସେଇ କାମ କରି ଦେଉଥିଲେ ସେ । ସେଥିପାଇଁ ସରକାରୀ ବିଭାଗର କର୍ମକର୍ତ୍ତାମାନେ ଜଗଦୀଶବାବୁଙ୍କ ଦ୍ୱାରସ୍ଥ ହେଉଥିଲେ । ଶୀଘ୍ର ଛାପା ହେବ ଅଥଚ ଦୀର୍ଘଦିନ ପରେ ପଇସା ମିଳିବ । ଏପରି କାମ କେହି କରିବାକୁ ରାଜି ନହେଲେ ବନ୍ଧୁତ୍ୱର ଖାତିରରେ ଜଗଦୀଶବାବୁ ହାତକୁ ନେଉଥିଲେ ଏପରି କାମ ।

ଦିନେ କ୍ୱାଲିଟି ପ୍ରେସ୍‌ରେ (ଅଫ୍‌ସେଟ୍ ପଡୁଥାଏ ସେତେବେଳେ) ମତେ କହିଲେ– ଗୋଟାଏ ଦୁଃସାହାସ କହି ପାରନ୍ତି, କିନ୍ତୁ ଏଇ ପ୍ରେସ୍ ମୂଳରେ ଆଉ ଯାହା ପ୍ରେରଣା ଥାଉ ବା ନଥାଉ ସମାବେଶକୁ ବଂଚାଇ ରଖିବାର ପ୍ରୟାସ ଅଛି । ଲେଖକମାନଙ୍କୁ ଗୋଟେ ପ୍ଲାଟଫର୍ମ, ଖର୍ଚ୍ଚ ମାଧ୍ୟମ ଯୋଗାଇ ଦବାଲାଗି ମୁଁ ଅଂଗୀକାରବଦ୍ଧ । ତାହା ପାଳନ କରିବି ନିଶ୍ଚୟ ।

ଏବଂ ଯେଉଁମାନେ 'ସମାବେଶ' ଏବଂ କ୍ୱାଲିଟି ପ୍ରେସ୍ ସମ୍ବନ୍ଧରେ ଖବର ଜାଣନ୍ତି ସେମାନେ ଏହା ମଧ୍ୟ ଜାଣନ୍ତି ଯେ ବହୁ ବାଧାବିଘ୍ନ ସତ୍ତ୍ୱେ ଶେଷ ପର୍ଯ୍ୟନ୍ତ ସେ 'ସମାବେଶ' ପାଇଁ ସଚେଷ୍ଟ ଥିଲେ । ଏପରି ପ୍ରତିବଦ୍ଧତା କମ୍ ଲୋକଙ୍କର ଅଛି ।

ତାଙ୍କ ପୁଅ ମୋ ପୁଅର ସହପାଠୀ । ଦୁହେଁ ଏକାସାଙ୍ଗରେ ଷ୍ଟୁଆର୍ଟ ସ୍କୁଲ୍‌ରେ ପଢୁଥିଲେ । ତାଙ୍କ ବଡ଼ପୁଅର ବାହାଘରକୁ ଭୋଜି ଖାଇବାକୁ ଯାଇଥାଏ । ଜଗଦୀଶବାବୁଙ୍କ ଲେବର‌କଲୋନୀ ସ୍ଥିତ ବାସଭବନ ଲୋକାରଣ୍ୟ । ନିମନ୍ତ୍ରିତଙ୍କ ଅପେକ୍ଷା ଅନିମନ୍ତ୍ରିତଙ୍କ ସଂଖ୍ୟା ବେଶୀ । ଆମେ ଧୈର୍ଯ୍ୟର ସହିତ ଅପେକ୍ଷା କରିଥାଉ । ସେ ଆଦେଶ ଦେଉଥାନ୍ତି–

ଯିଏ ବି ଆସିଛି–ନିମନ୍ତ୍ରିତ ବା ଅନିମନ୍ତ୍ରିତ–ସମସ୍ତଙ୍କର ଯତ୍ନ ନିଅ–ସମସ୍ତଙ୍କୁ ଭଲଭାବେ ଆପ୍ୟାୟିତ କର। କିନ୍ତୁ ଏଇ ରାଜଧାନୀରେ ଆଉ ଜଣେ ବଡ଼ ସରକାରୀ ଅଫିସରଙ୍କ ପୁଅ ବାହାଘର ଭୋଜିରେ ଠିକ୍ ଦେଖିଥିଲି ବିପରୀତ କଥା। ମୋ ପାଖରେ ବସିଥିବା ଅନିମନ୍ତ୍ରିତଙ୍କୁ ଠାବ କରି ବରପିତା କହଲେ–ତମେ କେମିତି ବସିଯାଇଛ ? ତାଙ୍କରି ଇଂଗିତରେ ତାଙ୍କ ପତ୍ରରେ କେହି କିଛି ନପରଷିବା ଦେଖି ଶେଷରେ ମୁଁ କହିଲି– ତାଙ୍କୁ ନଦେଲେ ମୁଁ ମଧ ଖାଇବି ନାହିଁ। ଜଗଦୀଶବାବୁଙ୍କ ମଣିଷପଣିଆ ଏହିପରି ଛୋଟ ଛୋଟ ଘଟଣାରୁ ବାରିହୋଇପଡ଼େ।

ଥରେ ଦିଲ୍ଲୀର ଜଣେ ବ୍ୟବସାୟୀ ବିପଦରେ ପଡ଼ି ଜଗଦୀଶବାବୁଙ୍କୁ ସାହଯ୍ୟ ଲୋଡ଼ିଲା। ପ୍ରାୟ ପଚାଶ ଲକ୍ଷ ଟଙ୍କାର ଖାଦ୍ୟଶସ୍ୟ ଡେଲିଭରି ନବାଦେଲେ ଉପଯୁକ୍ତ ଦଲିଲ ଦେଖାଇ ନପାରିବାରୁ ରେଳବାଇ ଡେଲିଭରି ଦେଲେନାହିଁ। ଶୀଘ୍ର ମାଲ ଖଲାସ ନକଲେ ଡେମରେଜ ପଡିବ ଏବଂ ଖାଦ୍ୟଶସ୍ୟ ନଷ୍ଟ ହୋଇଯିବାର ଆଶଙ୍କା ମଧ ଥିଲା। ସେଇ ବ୍ୟବସାୟୀ ସୂତ୍ରଧରି ଆସି ଜଗଦୀଶବାବୁଙ୍କୁ ଧରିଲେ ଏବଂ ଜଗଦୀଶବାବୁ ଏବିଷୟର ଗୁରୁତ୍ୱ ନବୁଝି ଶରଣାପନ୍ନଙ୍କୁ ସାହାସ ଦେଲେ ସଙ୍କଟରୁ ଉଦ୍ଧାର କରିବା ପାଇଁ। ତା'ପରେ ତାଙ୍କୁ ନେଇ ମୋ ପାଖକୁ ଆସିଲେ ଏବଂ କହିଲେ ଯେ ବ୍ୟବସାୟୀ ସିନା ଅଜଣା, ଅପରିଚିତ, କିନ୍ତୁ ତାଙ୍କ ପକ୍ଷରୁ ସେ ଜିମା ରହିବା ପାଇଁ ପ୍ରସ୍ତୁତ। ଜଗଦୀଶ ପାଣି ରେଳବାଇକୁ ଫାଙ୍କି ଦବନାହିଁ ଏହା ଆପଣ ଜାଣନ୍ତି। ମୁଁ ତାଙ୍କର ସାହସ, ଆତ୍ମବିଶ୍ୱାସ ଦେଖି ଚକିତ ହୋଇଗଲି।

ଜଗଦୀଶ ପାଣି ଆଉ ଆମ ଗହଣରେ ନାହାନ୍ତି। ତାଙ୍କ ସାନ୍ନିଧ ଆଉ ଆମକୁ ମିଳିବ ନାହିଁ। ସେ ସ୍ୱ–ଶରୀରରେ ଆଉ ବନ୍ଧୁମାନଙ୍କୁ କ୍ୱାଲିଟି ପ୍ରେସ୍‌ରେ ଚର୍ଚ୍ଚା କରିପାରିବେ ନାହିଁ, ଶରଣାପନ୍ନ ବନ୍ଧୁମାନଙ୍କୁ ସାହାଯ୍ୟ କରିବା ପାଇଁ ବା ଅନିମନ୍ତ୍ରିତ ଅତିଥିଟି ଲାଂଛିତ ହୋଇ ଉଠିଗଲାବେଳେ ତା ପିଠି ଥାପୁଡାଇ ବସେଇ ଦେଇ କହିବେ ନାହିଁ ଯେ ବସ ବସ, ନଖାଇ ଚାଲିଯିବ, କିମ୍ବା ଅସମୟରେ ହାତ ପାତିଥିବା କର୍ମଚାରୀ ବା ଲେଖକଙ୍କୁ ନିଜ ସାଧର ବାହାରେ ସାହାଯ୍ୟ କରିବା ପାଇଁ ଆଉ ତାଙ୍କ ହାତ ପ୍ରସାରିତ ହେବନାହିଁ; କିନ୍ତୁ ସେଇ ନାମ ରହିଯିବ ବନ୍ଧୁ ଓ ଅବନ୍ଧୁଙ୍କ ମନରେ, ହୁଏତ କ୍ୱାଲିଟି ପ୍ରେସ୍‌ର ଆକାଶରେ ଦିନେ ଯେଉଁ ଇନ୍ଦ୍ରଧନୁ ଦେଖାଦେବ ତାହା ଯେ ଜଗଦୀଶ ପାଣିଙ୍କର ପାଳେ ହସ ଏ'ୟା ବୁଝିବାକୁ ବାକି ରହିବ ନାହିଁ ସେଦିନ।

ପୃଥିବୀ ଏପରି ସାଧାରଣ ଲୋକଙ୍କ ଅସାଧାରଣତ୍ୱ ପାଇ ଧନ୍ୟ ବୋଲି ଏତେ ସୁନ୍ଦର, ଏଠାରେ ବଂଚିବା ପାଇଁ ଭଲ ଲାଗେ ଏତେ !

**ଜୟ, ଜଗଦୀଶବାବୁଙ୍କ ଜୟ ?**



# ଜଗଦୀଶ ପାଣି ଏକ ସାରସ୍ୱତ ଅନୁଷ୍ଠାନ

## ନଟବର ମହାନ୍ତି

ଜୀବନ ହିଁ ସଂଘର୍ଷ। ସଂଘର୍ଷ ନଥିଲେ ଜୀବନର ସ୍ୱାଦ ଚାଖିହୁଏନା। ନିଜେ ଭଗବାନ ଶିବ ଗରଳକୁ ଅମୃତ ପରି ପାନ କରିବା ଭଳି ଯିଏ ଜୀବନରେ ସଂଘର୍ଷକୁ ଆଦର କରେ, ଏକାନ୍ତଭାବେ ନିଜସ୍ୱ କରିନିଏ ସେ ପ୍ରକୃତରେ ଚିରଂଜୀବୀ ହୁଏ। ତାହାହିଁ ପ୍ରତିଫଳିତ ହୁଏ ଜଗଦୀଶ ପାଣିଙ୍କ ଜୀବନରେ। ଘାତ ପ୍ରତିଘାତ ଭିତରେ ଜୀବନକୁ ଏକାନ୍ତ ସରଳ ଭାବେ ଦେଖୁଥିଲେ ସେ। ତାଙ୍କର ଅମାୟିକ ବ୍ୟବହାର, କର୍ତ୍ତବ୍ୟନିଷ୍ଠା ଓ କାମ କରିବାର ଶୈଳୀ ତାଙ୍କୁ ପ୍ରତିଷ୍ଠିତ କରିଥିଲା ଏକ ଅନୁଷ୍ଠାନ ଭାବେ।

ତାଙ୍କ ଭିତରେ ନଥିଲା ଆଧୁନିକତାର ଛଳନା। ଯେ କେହି ଘନିଷ୍ଠ ଭାବେ ତାଙ୍କ ସହିତ ମିଶିଛି ସେ ବର୍ଣ୍ଣନା କରି ବସନ୍ତି ତାଙ୍କ ଜୀବନର ସୁଖ ଦୁଃଖ, ଅଭାବ ଅନାଟନ ସଂପର୍କରେ ନିଛକ ଭାବରେ। ଏହାହିଁ ଥିଲା ତାଙ୍କ ବ୍ୟକ୍ତିତ୍ୱର ସ୍ୱଚ୍ଛନ୍ଦତା।

ପ୍ରତ୍ୟେକ ସାହିତ୍ୟିକ ସେ କବି ହୁଅନ୍ତୁ ବା ଗାଳ୍ପିକ ହୁଅନ୍ତୁ ସେ ଜଣେ ସ୍ରଷ୍ଟା। କିନ୍ତୁ ପାଣିବାବୁ ଥିଲେ ସେହି ସ୍ରଷ୍ଟାମାନଙ୍କର ସ୍ରଷ୍ଟା। ତାଙ୍କର ପ୍ରଚେଷ୍ଟା ତାଙ୍କରି ପ୍ରେରଣା ସୃଷ୍ଟି କରିଥିଲା ଅଗଣିତ ସାହିତ୍ୟିକ। ସେ ପ୍ରକୃତରେ ଥିଲେ ଏ ଯୁଗର ଜଣେ ବ୍ରହ୍ମା।

ସେ ନିଜେ ଯେ ସାହିତ୍ୟିକ ସୃଷ୍ଟି କରନ୍ତି ତା ନୁହେଁ, ପ୍ରେରଣା ଦିଅନ୍ତି ଅନ୍ୟମାନଙ୍କୁ ଏଥିରେ ସାମିଲ ହେବା ପାଇଁ। ବହୁବାର ତାଙ୍କ ସାଙ୍ଗରେ ମୁଁ ଆଲୋଚନା କରିଛି ମୋ ପତ୍ରିକା ସଂପର୍କରେ। ବେଳେବେଳେ ବ୍ୟସ୍ତହୋଇ ମୁଁ କହିପକାଏ ପତ୍ରିକା ପ୍ରକାଶନ ବହୁତ ଦୁର୍ବିସହ ବ୍ୟାପାର। ବହୁତ କ୍ଷତି ହେଲାଣି ଆଉ ବାହାର କରିପାରିବିନି। କିନ୍ତୁ ଉପଦେଶ ଛଳରେ ସେ ମୋତେ କହନ୍ତି, "ପତ୍ରିକା କେବେ ବନ୍ଦ କରନ୍ତୁନି। ଓଡ଼ିଆ ସାହିତ୍ୟ ପାଇଁ ଆପଣଙ୍କର ଅବଦାନ ଚିରସ୍ଥାୟୀ ହେବ। ବହୁତ ଲୋକ ବହୁତ ଟଙ୍କାର ଅଧିକାରୀ ହୋଇପାରନ୍ତି କିନ୍ତୁ ଏଭଳି ସାରସ୍ୱତ କାର୍ଯ୍ୟ ସମସ୍ତେ କରିପାରିବେନି। ବନ୍ଦ କରିବାକଥା କେବେ ମନରେ ଉଠାନ୍ତୁନି"।

ତାଙ୍କରି ପ୍ରଚେଷ୍ଟାରେ "ସମାବେଶ" ଓଡ଼ିଆ ପତ୍ରିକା ଜଗତରେ ଏକ ସ୍ୱତନ୍ତ୍ର ସ୍ଥାନ ରଖି ପାରିଛି। କି ପ୍ରବଳ ଆକାଂକ୍ଷା ତାଙ୍କର ପତ୍ରିକାକୁ ରୁଚିସଂପନ୍ନ ତଥା ପାଠକୀୟ କରିବାକୁ। ଯେତେବେଳେ ଦେଖାହୁଏ ତାଙ୍କ ସାଙ୍ଗରେ ପ୍ରଥମେ ପ୍ରଶ୍ନ ତାଙ୍କର "କେଉଁ ଲେଖକଙ୍କଠାରୁ ଲେଖା ପାଇଲେଣି ଏବଂ ବିଜ୍ଞାପନ କେଉଁଠୁ ମିଳିଲା," ମୋଠାରୁ ଉତ୍ତର ପାଇଲା ପରେ ଗାଡିଟିଏ ଧରି ବୁଲିଲେ ଲେଖକଙ୍କ ପାଖକୁ ଏବଂ ବିଜ୍ଞାପନ ଦାତାମାନଙ୍କ ପାଖକୁ। ବେଳେବେଳେ ମୋତେ ଆଶ୍ଚର୍ଯ୍ୟ ଲାଗେ, ସମାବେଶ ତ ନିୟମିତ ବାହାରୁନି

ତଥାପି ପ୍ରତିଷ୍ଠିତ ଲେଖକମାନେ ତାଙ୍କ ପତ୍ରିକା ପାଇଁ ଲେଖା ପଠାଉଛନ୍ତି କାହିଁକି ? ଆଜେ ମାସ ମାସ ପରିଶ୍ରମ କରି ବିଜ୍ଞାପନ ଦୁଇଟା ପାଇବା କଷ୍ଟ ହେଉଛି ଅଥଚ ସେ ଚ଼ରିଦିନ ବୁଲିଆସିଲେ ବିଜ୍ଞାପନ ଯାହାକୁ ଯେତେ। ଏହା କେବଳ ସମ୍ଭବ ହେଉଥିଲା ତାଙ୍କର କର୍ତ୍ତବ୍ୟନିଷ୍ଠା ତଥା ଓଡିଆ ସାହିତ୍ୟକୁ ଅବଦାନ ପାଇଁ।

ତାଙ୍କର ଆତ୍ମଜୀବନୀ ଯଦି ସେ ଲେଖିଯାଇଥାନ୍ତେ ନିଶ୍ଚିତଭାବେ ଆଗାମୀ ପିଢିର ସାହିତ୍ୟପ୍ରେମୀ ତଥା ପତ୍ରିକା ପ୍ରକାଶକମାନଙ୍କ ପାଇଁ ବତୀଖୁଣ୍ଟ କାର୍ଯ୍ୟ କରିଥାନ୍ତା। କିନ୍ତୁ ସେ ଥିଲେ ଆତ୍ମାଭିମାନୀ। ଆତ୍ମଜୀବନୀ ଲେଖିଲେ ହୁଏତ ତାଙ୍କର ଘଂଘାତମୟ ଜୀବନ ସହିତ ସଂପର୍କିତ ବହୁତ ପ୍ରତିଷ୍ଠିତ ବ୍ୟକ୍ତିଙ୍କ ବିଷୟରେ କିଛି ଘଟଣା ଉପସ୍ଥାପନ କରିଥାନ୍ତେ. ସେଥିପାଇଁ କେହି କାଳେ ବ୍ୟଥିତ ହେବେ ଭାବି ଆତ୍ମଜୀବନୀ ନ ଲେଖିବା ଶ୍ରେୟସ୍କର ମଣିଲେ ବୋଧହୁଏ। ପ୍ରତ୍ୟେକ ବିବେକୀ ଲୋକ କେବଳ ଏହି କାରଣରୁ ଆତ୍ମଜୀବନୀ ଲେଖିବାକୁ ଇତସ୍ତତଃ ହୁଅନ୍ତି। କିନ୍ତୁ ସବୁବେଳେ ସେ ନିଜ କର୍ତ୍ତବ୍ୟ ସମ୍ବନ୍ଧରେ ଥିଲେ ଆସ୍ଥାବାନ୍।

ଦୁର୍ଗାପୂଜା ଆସନ୍ନପ୍ରାୟ। "ସମାବେଶ"ର ଶାରଦୀୟ ବିଶେଷାଙ୍କ ବାହାରିବ ନିଶ୍ଚୟ। କିନ୍ତୁ ସେ ଆଜି ପତ୍ରିକା ପ୍ରକାଶନର ସମସ୍ତ ବ୍ୟଥା ବେଦନାକୁ ସବୁଦିନ ପାଇଁ ଆଡ଼କରି ବହୁ ଦୂରକୁ ଚାଲିଗଲେ। ପୂଜାସଂଖ୍ୟା "ସମାବେଶ"କୁ ତାର ପାଠକମାନେ ପତ୍ରିକା ଦୋକାନରେ ଦେଖିଲାବେଳେ ଗଭୀରଭାବେ ଉପଲବ୍ଧି କରିବେ ପାଣିବାବୁଙ୍କର ଚିର ଅନୁପସ୍ଥିତି। ସେ କିନ୍ତୁ ସ୍ୱର୍ଗପୁରରେ ଚିରଂଜୀବୀ ହୋଇ ଆତ୍ମତୃପ୍ତି ଲାଭ କରିବେ ପାଠକମାନଙ୍କର ବ୍ୟାକୁଳତା ଦେଖି।

ତାଙ୍କର ଆତ୍ମା ଅନନ୍ତ ଲାଭକରୁ ଏହାହିଁ ଈଶ୍ୱରଙ୍କ ନିକଟରେ ଗୁହାରି।

❖ ❖ ❖

*ଆତ୍ମା ଅବ୍ୟକ୍ତ, ଅଚିନ୍ତ୍ୟ ଏବଂ ଅପରିବର୍ତ୍ତନୀୟ। ଏହି ଆତ୍ମାକୁ ଜାଣିପାରିଲେ ମନୁଷ୍ୟକୁ ଆଉ ଦୁଃଖକଷ୍ଟ ଭୋଗ କରିବାକୁ ହୁଏନାହିଁ।*

# ଜଗଦୀଶ ପାଣି–ସମ୍ମାନିତ ରୁଚିର ପ୍ରତିଶ୍ରୁତି

**ସତ୍ୟ ମହାପାତ୍ର**

ସକାଳୁ ସକାଳୁ ଖବର ପାଇଲି ଜଗଦୀଶ ପାଣି ଆଉ ନାହାନ୍ତି । ପୂର୍ବଦିନ ସବୁଦିନ ପରି କାମ କରିଥିଲେ । କ୍ୱାଲିଟି ପ୍ରେସ୍‌ର ପରିଚାଳନା ବୁଝିଥିଲେ । ସମାବେଶ ପୂଜାସଂଖ୍ୟା ବିଷୟରେ ଯୋଜନା କରୁଥିଲେ । ଯୁଦ୍ଧକ୍ଷେତ୍ରରେ ଲଢାଇ କରୁ କରୁ ଜଗଦୀଶ ଭାଇନା ଜଣେ ବୀର ସୈନିକପରି ସହିଦ୍ ହୋଇଗଲେ ଯେପରି । ପରେ ଯେତେବେଳେ ତାଙ୍କୁ ମହାନିଦ୍ରାରେ ଦେଖିଲି ଫୁଲମାଳଟିଏ ଦେଇ ଶ୍ରଦ୍ଧାଞ୍ଜଳି ଅର୍ପଣ କଲି ସେତେବେଳେ ଯୁଧିଷ୍ଠିରଙ୍କର ମହାଯାତ୍ରା କଥାଟି ମନେ ପଡିଗଲା । ଏକୁଟିଆ ଆଉ ପଛକୁ ଥରଟିଏ ବି ନଚାହିଁ ସେ ଯେପରି ଚାଲିଛନ୍ତି ସେମିତି ମନେହେଲା । ମୁହଁଟି ଖୁବ୍ ଶାନ୍ତ ଓ ହସ ହସ ଥିଲା । ଦୁଃଖ ବେଦନା ଯନ୍ତ୍ରଣାର ଚିହ୍ନବର୍ଣ୍ଣ ବିଲ୍‌କୁଲ ନଥିଲା ।

ସ୍ମୃତି ସବୁ ସମୁଦ୍ରର ଢେଉପରି ବାରମ୍ବାର ଫେରି ଆସୁଥିଲା । ୫୭ରେ ପୁରୀଠାରୁ ଆରମ୍ଭ କରି କଲିକତା, କଟକ ଆଉ ଶେଷରେ ଭୁବନେଶ୍ୱରରେ ତାଙ୍କ ସହିତ ଦେଖାର ସ୍ମୃତି ସବୁ । ସେ'ତ ବନ୍ଧୁବତ୍ସଳ ଥିଲେ, ଏକଥା ସମସ୍ତେ କହିବେ । କିନ୍ତୁ ସମାବେଶକୁ ଏକ ସୁରୁଚିପୂର୍ଣ୍ଣ ସାହିତ୍ୟ ପତ୍ରିକାରେ ପରିଣତ କରିବାରେ ତାଙ୍କର ଅବଦାନକୁ ମଧ୍ୟ ସ୍ୱୀକାର କରିବେ । ତାଙ୍କ ପ୍ରେସ୍‌ରେ ପ୍ୟାଡ଼ଟିଏ ହେଉ. ନିମନ୍ତ୍ରଣ ପତ୍ର ହେଉ କିମ୍ବା ଭିଜିଟିଂ କାର୍ଡ଼ଟିଏ ହେଉ ଛାପିଲେ ତାଙ୍କର ପରାମର୍ଶରେ ସେ ଯେଉଁ ଆକାର ଧାରଣ କରେ ତାର ତୁଳନା କରି ହୁଏନାହିଁ । ଏହି ଅନନ୍ୟସାଧାରଣ ରୁଚିବୋଧ ଜଗଦୀଶ ଭାଇନାଙ୍କ ବ୍ୟକ୍ତିତ୍ୱର ଥିଲା ବଳିଷ୍ଠ ଓ ପ୍ରଧାନ ଶକ୍ତି ।

ଭୁବନେଶ୍ୱର ସାହିତ୍ୟ ସମାଜର ପ୍ରଥମ ଅଧିବେଶନରେ ସେ ଥିଲେ ଅତିଥି । ଜଣେ ସଂପାଦକ ରୂପେ ତାଙ୍କର ପରାମର୍ଶ ଥିଲା ଯୁବ ପ୍ରତିଭାର ବିକାଶ ଉପରେ ଗୁରୁତ୍ୱ ଦିଅ । ଏହା ଯୁବ ପ୍ରତିଭା ହିଁ ଆମର ସଂପତ୍ତି, ଆମ ସାହିତ୍ୟର ଭବିଷ୍ୟତ ।

ଦୀର୍ଘଦିନର ବଂଧୁତା, ପ୍ରଜାତନ୍ତ୍ର ସହ ଗୋଟିଏ କେନ୍ଦ୍ରରେ ସହଯୋଗୀ ହିସାବରେ କାର୍ଯ୍ୟ କରିବାବେଳୁ । ପରବର୍ତ୍ତୀ ସମୟରେ ଦୀର୍ଘ ଦଶବର୍ଷ ଧରି ପଡିଶା ହୋଇ କାର୍ଯ୍ୟ କରିଛୁ । ସମୟ ଅସମୟରେ ପରାମର୍ଶ ପାଇଁ ଦଉଡ଼ି ଯାଇଛି । ଅନାବିଳ ସ୍ନେହବୋଳା କଥାରେ ସଂଶୟ ତୁଟିଯାଇଛି । ଛାପାଖାନାର ପ୍ରତ୍ୟେକ ଦିଗ ସଂପର୍କରେ ତାଙ୍କର ଜ୍ଞାନ ଥିଲା ବାସ୍ତବ ଅଭିଜ୍ଞତା ଉପରେ ପ୍ରତିଷ୍ଠିତ । ତେଣୁ ତାଙ୍କଠାରୁ ଶିକ୍ଷା କରିବାରେ ଥିଲା ବହୁତ କିଛି ।

ଜୀବନଯାଁକ ସେ ସଂଗ୍ରାମ କରିଛନ୍ତି । ଗୋଟିଏ ଦୁଇଟି ପିଢ଼ିର କବି ଓ ସାହିତ୍ୟିକ ଏବଂ ଚିତ୍ରକାରମାନଙ୍କୁ ଅତି ନିକଟରୁ ଦେଖିଛନ୍ତି । ନିବିଡ଼ ଭାବରେ ଭଲ ପାଇଛନ୍ତି । କବିତା ନଲେଖି ମଧ୍ୟ ସେ କବି । ଚିତ୍ରଟିଏ ନ ଆଙ୍କି ବି ସେ ଚିତ୍ରକର । ଗପଟିଏ ନଲେଖି ବି ସେ ଗାଳ୍ପିକ । କ୍ୱାଲିଟି ପ୍ରେସ୍ ଓ ସମାବେଶ ପତ୍ରିକାର କାର୍ଯ୍ୟାଳୟ ଥିଲା ଓଡ଼ିଶାର ତରୁଣ ଓ ପ୍ରତିଷ୍ଠିତ କବି ଲେଖକମାନଙ୍କର ଏକ ସାରସ୍ୱତ ମନ୍ଦିର । ସେଠି ଥିଲା ଖାଲି ଭଲ ପାଇବା ଓ ହସି ହସି ନୂତନ ପ୍ରେରଣା ସବୁ ସାଉଁଟି ନେବାର ଅସରନ୍ତି ଭଣ୍ଡାର । ଜଗଦୀଶ ଭାଇନା ତାଙ୍କର ସମ୍ମାନିତ ରୁଚିବୋଧ ପାଇଁ ଓଡ଼ିଶାରେ ଅମର ହୋଇ ରହିଯିବେ ।

ତାଙ୍କ ଆତ୍ମା ପ୍ରତି ହୃଦୟର ଗଭୀରତମ ପ୍ରଦେଶରୁ କେବଳ ମୋର ସମ୍ମାନିତ ଶ୍ରଦ୍ଧାଞ୍ଜଳି ଜଣାଇ ରହୁଛି ।



*ଆତ୍ମା ଅମର । ତା'ର ମୃତ୍ୟୁ ନାହିଁ । ଯିଏ ଆତ୍ମାକୁ ହତ ହୋଇଛି ବୋଲି ମନେକରେ ଏବଂ ଯିଏ ଆତ୍ମାକୁ ହତ୍ୟାକାରୀ ବୋଲି ମନେକରେ, ସେ ଉଭୟ ଆତ୍ମାର ପ୍ରକୃତ ସ୍ୱରୂପ ଜାଣନ୍ତି ନାହିଁ । ଆତ୍ମା ହତ୍ୟା କରେନାହିଁ କିମ୍ବା ହତ ହୁଏନାହିଁ ।*

# ସମାବେଶ ହିଁ ଆପଣଙ୍କ ପୁଅ

**ଗଣେଶ୍ୱର ମିଶ୍ର**

ଓଡ଼ିଶାର ଅଧିକାଂଶ କବି/ଲେଖକଙ୍କ ପରି ଜଗଦୀଶବାବୁଙ୍କ ସହିତ ମୁଁ ପରିଚିତ ହୋଇଥିଲି ସମାବେଶ ମାଧ୍ୟମରେ। ସମାବେଶ କଲିକତାରୁ ପ୍ରକାଶିତ ହେଉଥିବା ସମୟରେ ସେଥିରେ ମୋର କେତୋଟି କବିତା ପ୍ରକାଶିତ ହୋଇଥିଲା। ସେତେବେଳେ ମୁଁ ପୁରୀ କଲେଜରେ ପଢୁଥାଏ, ସମୟ ୧୯୫୯ ରୁ ୬୩।

ପରେ ଜଗଦୀଶବାବୁ ଭୁବନେଶ୍ୱର ଆସିବା ପରେ ତାଙ୍କ ସହିତ ବ୍ୟକ୍ତିଗତ ପରିଚୟ ହେଲା। ସେ ରହୁଥାନ୍ତି ଲେବର କଲୋନୀ (ଖାରବେଳନଗର) ରେ ଛୋଟ ଦୁଇଖୁରିଆ ଘରଟିରେ; ପ୍ରେସ୍ ପକାଇଥାନ୍ତି ଅରବିନ୍ଦ ଭବନ ନିକଟରେ। ଛୋଟିଆ ପ୍ରେସ୍; ସ୍ଥାନ ସଂକୀର୍ଣ୍ଣ। ଅଥଚ ସବୁବେଳେ ସେଠି କବି-ଲେଖକ-ବ୍ୟବସାୟୀମାନଙ୍କ ଆଡ୍‌ଡା। ରାସ୍ତାକଡ଼ରୁ ପ୍ରତି ଦଶମିନିଟରେ ଆସୁଥାଏ ଗ୍ଲାସ୍ ଚା'-ଆଲୋଚନାର ଧୂଆଁ ଉଠୁଥାଏ ଆକାଶକୁ।

ସମାବେଶର ସମ୍ପାଦକ ଭାବରେ ଜଗଦୀଶବାବୁଙ୍କୁ ଚିହ୍ନିଥିଲି। ବର୍ତ୍ତମାନ ଚିହ୍ନିଲି ତାଙ୍କ ମଣିଷପଣିଆକୁ। ନିହାତି ମେଳାପୀ, ଖୋଲା, ବନ୍ଧୁବତ୍ସଳ-ସମାଜର ସବୁ ସ୍ତରର ଲୋକଙ୍କ ସହିତ ସମ୍ପର୍କ ସ୍ଥାପନ କରିବାର କୌଶଳଟି ତାଙ୍କୁ ଭଲ ଭାବରେ ଜଣା ଥିଲା। ସେଇ ଛୋଟିଆ ପ୍ରେସ୍‌ର ଅଣଓସାରିଆ ବାରଣ୍ଡାର ଟୁଲ୍ ଉପରେ ହରେକୃଷ୍ଣ ମହତାବଙ୍କଠାରୁ ଆରମ୍ଭ କରି କେବିନ୍‌ର ପାନଦୋକାନୀ ପର୍ଯ୍ୟନ୍ତ ସମସ୍ତେ ଆସି ବସୁଥିଲେ। ସମସ୍ତଙ୍କୁ ଆକର୍ଷଣ କରିପାରିବାର ଚୁମ୍ବକୀୟ ଶକ୍ତି ଥିଲା ଜଗଦୀଶବାବୁଙ୍କର। ସେ ଶକ୍ତିଟି ସେ କେଉଁଠୁ ହାସଲ କରିଥିଲେ କେଜାଣି ? ଦୁଃଖ-କଷ୍ଟ, ଅଭାବ-ଅସୁବିଧା, ଭିତରେ ସାରା ଜୀବନ ଗତି କରି ହୁଏତ ସେ ଠିକ୍ ଚିହ୍ନିଥିଲେ ମଣିଷକୁ- ସେଇଥିପାଇଁ ବୋଧହୁଏ ମଣିଷଙ୍କୁ ବୁଝିବାରେ ତାଙ୍କର ଭୁଲ ହେଉନଥିଲା। ସେଇଥିପାଇଁ ହୁଏତ ତାଙ୍କୁ ଜଣା ଥିଲା କାହା ସହିତ କିପରି ଯୋଗସୂତ୍ର ବାନ୍ଧିହୁଏ।

ଜଗଦୀଶବାବୁ ଥିଲେ ଆମ ସମୟର ଅନ୍ୟତମ ଶ୍ରେଷ୍ଠ ସମ୍ପାଦକ। ଏଥିରେ ଦ୍ୱିମତ ନାହିଁ। ପ୍ରବୀଣ ଓ ତରୁଣ-ସବୁ ପୁରୁଷର ଲେଖା ସେ ସମାବେଶରେ ଛାପୁଥିଲେ। ସମାବେଶ ପୃଷ୍ଠାରେ ସେ ପରିଚିତ କରାଇଛନ୍ତି ବହୁ କବି, ଲେଖକଙ୍କୁ। ତାଙ୍କର ରୁଚିବୋଧ, ସୌନ୍ଦର୍ଯ୍ୟବୋଧ, ସାହିତ୍ୟ ଚେତନାର ପରିଚୟ ସମାବେଶ। ସେ ନିଜେ ହୁଏତ ଖୁବ୍ ଉଚ୍ଚ ଶିକ୍ଷିତ ବା ସାହିତ୍ୟିକ ନ ଥିଲେ। କିନ୍ତୁ ବହି ଓ ପତ୍ରପତ୍ରିକା ପଢ଼ିବାରେ ତାଙ୍କର

ଢ଼ୁଙ୍କ ଥିଲା । ଦୀର୍ଘକାଳ ପ୍ରେସ୍ ଓ ପତ୍ରପତ୍ରିକା ସହିତ ସମ୍ପର୍କିତ ହେବାର ଅନୁଭୂତିରୁ ସେ ଶିଖି ନେଇଥିଲେ ଉତ୍ତମ ସମ୍ପାଦନାର କଳା ଓ କୌଶଳ । ସମାବେଶ ପତ୍ରିକାରେ ସେଇ କଳା ଓ କୌଶଳର ସେ ପ୍ରୟୋଗ କରିଥିଲେ ।

ଦିନେ ଖୁବ୍ ସକାଳୁ ଦେଖିଲି ଆମ ଗେଟ୍ ପାଖରେ କାଣ୍ଡିଆଟିଏ ଘୋଡି ହୋଇ କେହି ଜଣେ ଠିଆ ହୋଇଛନ୍ତି । ଭାବିଲି, ଜଣେ ଭଦ୍ର ମହିଳା କୌଣସି କାରଣରୁ ଆସିଛନ୍ତି ହୁଏତ । ଗେଟ୍ ପାଖକୁ ଯାଇ ଦେଖେ ତ ଜଗଦୀଶବାବୁ । କହିଲେ, 'କ୍ଷୀର ବା ଚିନି ପଡିବ ନାହିଁ, ଖାଲି ନାଲି ଚା' ।

ଚା' ଖାଇବା ପାଇଁ ଏତେ ସକାଳୁ ସେ ଆମ ଘରକୁ ଆସିନଥିଲେ । ଉଦ୍ଦେଶ୍ୟ ଥିଲା ଭିନ୍ନ । "ଆପଣଙ୍କ ନିକଟରେ କେତେଟୁଡ଼ିଏ ପୁରୁଣା ସମାବେଶ ଅଛି ବୋଲି ଆପଣ କହୁଥିଲେ । ମୋତେ ସେଗୁଡ଼ିକ ଦିଅନ୍ତୁ, ଜେରକ୍ସ କରି ଫେରାଇ ଦେବି ।"

ମୁଁ ତାଙ୍କ ପ୍ରସ୍ତାବ ଗ୍ରହଣ କଲି । 'ମୋର ପୁରୁଣା ସମାବେଶ ଗୁଡ଼ିକ ଅଛି ପୁରୀରେ । ପରେ ସୁବିଧା ଦେଖି ଆଣିଦେବି ।'

ସାତ ଆଠ ବର୍ଷ ତଳର କଥା ଯେ । ଏଯାଏଁ ସେ ପ୍ରତିଶ୍ରୁତି ପାଳନ କରିନାହିଁ । ଜଗଦୀଶବାବୁଙ୍କ ପାଖରେ ସବୁ ପୁରୁଣା ସମାବେଶ ନଥିଲା । ସେସବୁ ସଂଗ୍ରହ କରିବା ପାଇଁ ସେ ଉଦ୍ୟମ କରୁଥିଲେ । ସଫଳ ହୋଇପାରି ନଥିଲେ ।

ସମାବେଶ ଥିଲା ତାଙ୍କ ଜୀବନର ଏକମାତ୍ର ପରିଚୟ-ସ୍ୱପ୍ନ । ପରେ ସେ ତିନି ନମ୍ବରର ଶିଳ୍ପାଞ୍ଚଳରେ ଆଧୁନିକ ପ୍ରେସ୍‌ଟିଏ କଲେ; ନିଜର ମନମୁତାବକ ବାସଗୃହଟିଏ ବନାଇଲେ । ତାଙ୍କ ସହିତ ଦେଖାହେଲେ ସେ କିନ୍ତୁ ଗପନ୍ତି ସମାବେଶ ସମ୍ପର୍କରେ । ସମାବେଶ ପାଇଁ ଲେଖା ଯୋଗାଡ଼ କରିବା ତାଙ୍କର ଥିଲା ଗୋଟାଏ ନିଶା ।

ହରେକୃଷ୍ଣ ମହତାବଙ୍କ ମୃତ୍ୟୁରେ ସେ ଖୁବ୍ ଆଘାତ ପାଇଥିଲେ । ମହତାବଙ୍କ ସମ୍ପର୍କରେ ଲେଖା ସଂଗ୍ରହ କରି ପ୍ରଜାତନ୍ତ୍ରରେ ମଧ ପ୍ରକାଶ କରିବାକୁ ଦେଉଥିଲେ । ଫୋନ୍‌ରେ ସେ ମୋ'ଠାରୁ ଆଦାୟ କରି ନେଇଥିଲେ ପ୍ରତିଶ୍ରୁତି- ଯେ ମହତାବଙ୍କ ସମ୍ପର୍କରେ ମୁଁ ତାଙ୍କୁ ଲେଖାଟିଏ ଦେବି । ମୁଁ ଡିପାର୍ଟମେଣ୍ଟରେ କ୍ଲାସ୍ ନେଉଛି. ହଠାତ୍ କବାଟ ଖୋଲି ଭିତରକୁ ପଶିଆସିଲେ ଜଗଦୀଶବାବୁ । ମୁହଁରେ ଅଳ୍ପ ଅଳ୍ପ ଦାଢ଼ି, ବିମର୍ଷ ଦିଶୁଥାନ୍ତି । ମହତାବଙ୍କ ତିରୋଧାନ ଦୁଃଖ ତାଙ୍କ ମୁଖମଣ୍ଡଳରେ । ମୁଁ କ୍ଲାସ ବନ୍ଦ କଲି । ସେ ଆସିଥିଲେ ମୋର ଲେଖାଟି ନେବାପାଇଁ । ଲେଖା ନ ପାଇଲେ ଛାଡ଼ିବେ ନାହିଁ ।

ଜଗଦୀଶବାବୁ ତାଙ୍କର ବ୍ୟକ୍ତିଗତ ପାରିବାରିକ ଦୁଃଖ ମୋତେ ପ୍ରାୟ କହୁନଥିଲେ । ଥରେ କିନ୍ତୁ ତାଙ୍କ ବଡ଼ପୁଅର ମୃତ୍ୟୁ କଥା କହିଲେ । ଦୁଃଖରେ ସେ ଭାଙ୍ଗି ପଡ଼ିଛନ୍ତି- ଏହିପରି ମୋର ମନେହେଲା । ସେତେବେଳେ ତାଙ୍କୁ ମୁଁ କହିଥିଲି, 'ଦେଖନ୍ତୁ, ସମାବେଶ ହିଁ ଆପଣଙ୍କ ପୁଅ । ସମାବେଶ ହିଁ ଆପଣଙ୍କ ନାଁ ରଖିବ ।'

ତା'ପରେ ତାଙ୍କର ଭାବଭଙ୍ଗୀ ବଦଳିଗଲା। 'ସମାବେଶକୁ ଆପଣ ନିୟମିତ ପ୍ରତିମାସରେ ବାହାର କରନ୍ତୁ। ମୁଁ କହିଲି। ସେ ଉତ୍ତର ଦେଲେ, 'ସମାବେଶକୁ ବେଶ୍‌ପରି ସାପ୍ତାହିକ କରିବା ମୋର ଇଚ୍ଛା।'

ପୁଅର ଭବିଷ୍ୟତ ସମ୍ପର୍କରେ ଏପରି ସ୍ୱପ୍ନଟିଏ ଦେଖିବା ଜଣେ ବାପା ପକ୍ଷରେ ସ୍ୱାଭାବିକ। 'ସମାବେଶ'ର ବାପା ତ ଚାଲିଗଲେ। ତାଙ୍କର ସ୍ୱପ୍ନକୁ ସାକାର କରିବାର ଦାୟିତ୍ୱ ବର୍ତ୍ତମାନ ଜଗଦୀଶବାବୁଙ୍କ ଶୁଭେଚ୍ଛୁ, ବନ୍ଧୁ ତଥା ଓଡ଼ିଶାର ସାହିତ୍ୟିକମାନଙ୍କ ଉପରେ। ଏହି ଦାୟିତ୍ୱ ତୁଲାଇ ପାରିଲେ ସେମାନେ ଜଗଦୀଶବାବୁଙ୍କ ପ୍ରତି ଯଥାର୍ଥ ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରିପାରିଲେ ବୋଲି କୁହାଯିବ।

କୌଣସି ସାହିତ୍ୟର ବିକାଶ ଓ ପ୍ରସାରରେ ପତ୍ରପତ୍ରିକାର ସମ୍ପାଦକମାନେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାନ୍ତି। କଳ୍ପନା କରନ୍ତୁ-ଓଡ଼ିଆ ପତ୍ରପତ୍ରିକା ସବୁ ହଠାତ୍ ବନ୍ଦ ହୋଇଗଲେ କ'ଣ ହେବ ସାହିତ୍ୟ ଓ ଲେଖକମାନଙ୍କର ଅବସ୍ଥା ? ହୁଏତ ବହୁ ଲେଖକଙ୍କ ଲେଖାର ସ୍ରୋତ ସ୍ଥିର ହୋଇଯିବ ଆପେ ଆପେ। କାରଣ ପୁସ୍ତକ ବା ପତ୍ରପତ୍ରିକାର ଆଶ୍ରୟ ବ୍ୟତିରେକେ ସାହିତ୍ୟ ନବର୍ତ୍ତନ୍ତେ। ସମ୍ପାଦକମାନେ ଲେଖା ସଂଗ୍ରହ ଓ ନିର୍ବାଚନ କରି ସାହିତ୍ୟକୁ ଏକ ଦିଗ୍‌ଦର୍ଶନ ଦେବା ସଙ୍ଗେ ସଙ୍ଗେ ପାଠକ ଶ୍ରେଣୀଟିଏ ପ୍ରସ୍ତୁତ କରନ୍ତି। ସେମାନଙ୍କର ସାହିତ୍ୟପ୍ରୀତି ସହିତ ବ୍ୟବସାୟିକ ବୁଦ୍ଧି ମଧ୍ୟ ଲୋଡ଼ାହୁଏ। ଲେଖକଠାରୁ ପତ୍ରିକାର ହକରଯାଏଁ-ସମସ୍ତଙ୍କ ସହିତ ସେମାନଙ୍କୁ ସମ୍ପର୍କ ରଖିବାକୁ ହୁଏ। ସେମାନଙ୍କ ଦାୟିତ୍ୱ ଯଥାର୍ଥରେ କଠିନ। ଅଥଚ କୌଣସି ସାହିତ୍ୟର ଇତିହାସରେ ସେମାନଙ୍କର ନାମୋଲ୍ଲେଖ ସୁଦ୍ଧା କରାଯାଏ ନାହିଁ। ଓଡ଼ିଆ ସାହିତ୍ୟର ଇତିହାସ କଥା ଛାଡନ୍ତୁ, ଇଂରାଜୀ ସାହିତ୍ୟର ଇତିହାସରେ ମଧ୍ୟ 'ସମ୍ପାଦନା' ସମ୍ପର୍କରେ ପରିଚ୍ଛେଦଟିଏ ଯୋଡ଼ା ହୁଏନାହିଁ।

ଓଡ଼ିଆ ସାହିତ୍ୟର ଏକ ପୂର୍ଣ୍ଣାଙ୍ଗ ଇତିହାସ ରଚିତ ହେଲେ ଜଣେ ସଫଳ ସମ୍ପାଦକ ହିସାବରେ ଜଗଦୀଶ ପାଣିଙ୍କ ନାମ ଚିରଦିନ ସ୍ମରଣୀୟ ରହିବ, ଏଥିରେ ସନ୍ଦେହ ନାହିଁ।

*ଯେ ଦୃଷ୍ଟଶୀଳ ଅଜିତେନ୍ଦ୍ରିୟ-ବେଦ, ତ୍ୟାଗ, ଯଜ୍ଞ, ନିୟମ ଓ ତପ ଅନ୍ୟାନ୍ୟ ଭଲକାର୍ଯ୍ୟ ତାହାଦ୍ୱାରା କରିହୁଏ ନାହିଁ।*

# ଚୁକ୍ତିଭଙ୍ଗ

## ଗୋରାଚାନ୍ଦ ମିଶ୍ର

ତା' ସହିତ ମୋର ଶେଷ ସାକ୍ଷାତ। ୧୯୯୪ ଜୁଲାଇ ୮ ତାରିଖ। ଅପରାହ୍ନ ଗ୍ଟାରିଟା। ଜଗଦୀଶ ଅଫିସ ଚୌକିରେ ବସି ଗୀତା ଶିକ୍ଷାମୃତ ପଢୁଥିଲା। ସ୍ୱାମୀ ଅରୂପାନନ୍ଦଙ୍କ ଭାଷ୍ୟ। ଭାରି ଭଲ ଲାଗୁଚି କହିଲା। ମୋ ରଚନାର ଭାଷା, ଶୈଳୀ ଓ ଅକ୍ଷର ସହିତ ତା'ର ପରିଚୟ ୧୯୪୮ରୁ। ଗୀତା ଭାଷ୍ୟର କେତୋଟି ପୃଷ୍ଠା ପଢିସାରି କହିଲା, ଏହି ବହିର ଉପଶିରୋନାମା (ସବ୍‌ହେଡ଼ିଂ) ଗୁଡ଼ିକ ତୁ କରିଥିବା ଭଳି ମନେ ହେଉଛି। ମୁଁ ଟିକିଏ ହସିଦେଲି। କହିଲା, ଦେଖ୍ ମୁଁ କିମିତି ଧରିପାରିଲି।

ଏବେ ମନେପଡୁଛି ୧୯୪୮ରେ ପୁରୀରେ ତା' ସହିତ ପ୍ରଥମ ସାକ୍ଷାତବେଳେ ଜଗଦୀଶ ଏହି ଗୀତା ହିଁ ପଢୁଥିଲା। ପୁରୀ ବ୍ରାହ୍ମଣଙ୍କ ଭଳି ତିନି ଗ୍ରିହାତିଆ ଗାମୁଛା ଖଣ୍ଡିଏ ଥିଲା ତା ଦେହରେ। ସକାଳେ ଗାଧୁଆ ପାଧୁଆ ସାରି ଚିତାଚଇତନ କାଟି ଏକ ଆସନ ଉପରେ ଚକାମୁଣ୍ଡି ପକାଇ ବସିଥିଲା-ମଠ ଭିତରେ ଏକ ଛୋଟ କୋଠରୀରେ। କଛା ଭିଡ଼ିଥିଲା ଦଉଡ଼ି ଭଳି ଜୋରରେ। ବଡ଼ପାଟିରେ ଗୀତା ଶ୍ଳୋକ ଗାଉଥିଲା। ସେ ଦୃଶ୍ୟ ସ୍ମୃତିପଟରେ ଝଲସି ଉଠୁଛି।

ସେ ଥିଲା ସଂସ୍କୃତ କଲେଜର ଛାତ୍ର–ଆୟୁର୍ବେଦ ବିଭାଗର। ମୁଁ ଥିଲି ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜର ଛାତ୍ର। ତା' ପାଖରେ ମୁଣ୍ଡ ଗୁଂଜିବା ପାଇଁ ଯାଇଥିଲି ତା' ପାଖକୁ। ତା'ର ଗୀତାପାଠ ସରିବା ପରେ ଦୁହିଁଙ୍କ ଭିତରେ ଇମିତି ଅନ୍ତରଙ୍ଗ କଥାବାର୍ତ୍ତା ହେଲା, ଯେପରିକି ଆମେ ଦୁହେଁ ଯାଆଁଳା ଭାଇ ଏକ ମା' ପେଟରୁ ଆଗପଛ ହୋଇ ଜନ୍ମ ହୋଇଚୁ। ପରିଚୟ, ଅପରିଚୟର କୌଣସି ପ୍ରଶ୍ନ ରହିଲା ନାହିଁ। କ୍ରମଶଃ ଇମିତି ସଂପର୍କ ବଢି ଉଠିଲା ଯେ ଏକାଠି ତ ରହିଲୁ, ଏକାପଟରରେ ଖାଇଲୁ। ଏକା ଶେଯରେ ଶୋଇଲୁ। ମଠରୁ ଦିନ ୩ଟାରେ ଯେଉଁ ଗଣ୍ଡିଏ ବଗଡ଼ା ଅନ୍ନ ମିଳେ, ଦୁହେଁ ବାଣ୍ଟି ଖାଉ। ସେ ମତେ ଯିମିତି କିମିଆ କରିଦେଲା। ସେ ଯାହା କହିଲା, କଲି–କର୍ମ ଅକର୍ମ ସବୁକିଛି।

ଭୋ'ରୁ ଉଠି ଦେହରେ ମାଲପା ବୋଳିହୋଇ ଜାଗାଘରକୁ ଯାଉ। ଦୁହେଁ ଥିଲୁ ପତଳା। କିମିତି ମୋଟା ହେବୁ ମନରେ ଥିଲା ସେହି ଚିନ୍ତା। ବଣ୍ଡ ବୈଠକ କରୁ। ଜାଗାଘର ପୋଖରୀରେ ଗାଧୋଉ। ଦିନେ ମନରେ ଉଠିଲା, ସଂଗୀତ ଶିଖିବା। ସିଂହାରୀ ଶ୍ୟାମସୁନ୍ଦର କରଙ୍କୁ ଗୁରୁ କଲୁ। ଇମିତି କଡ଼ା ଗୁରୁ କୋଉଠି ଦେଖିନୁ। ଜାଗାଘର ପୋଖରୀର କାକର ପାଣି। ଗୁରୁ ବସନ୍ତି ପୋଖରୀ ପାହାଚ ଉପରେ। ଆମେ ବେକେ ପାଣିରେ ବୁଡ଼ି ଖାଲି ଆ, ଆ କରୁ ଘଡ଼ିଏକାଳ। ଉପରକୁ ଉଠିଲେ ଗୁରୁଙ୍କ ବେତମାଡ଼!

ଦିନେ ଜଗଦୀଶ ସକାଳୁ ଉଠି କହିଲା ଗୋରା ! ଆଉ ଯିବାନି । ଗଲୁନି । ସଂଗୀତ ଶିକ୍ଷା ମେଣ୍ଟିକିରେ ରହିଲା । ଡ଼ୋରି ବନ୍ଧାଗଲା । କୁସ୍ତିକସରତ ମଧ୍ୟ ସେଦିନଠୁ ବନ୍ଦ ।

ଦିନେ ଜଗଦୀଶ କହିଲା, ଡ୍ରାମା କରିବା, ମୁଁ ହିରୋ ହେବି, ତୁ ହିରୋଇନ୍ । କି ଡ୍ରାମା ? ଜଗଦୀଶ କହିଲା, କାଳିଦାସଙ୍କ ମେଘଦୂତ । କିଂତୁ ଭାଷା ସଂସ୍କୃତ । ରୋକ୍‌ଠୋକ୍ ମନାକଲି, ନା ବାପା, ପାରିବିନି । ସଂସ୍କୃତ ମୋ ତୁଣ୍ଡରେ ଲେଉଟିବନି । ଜଗଦୀଶ କହିଲା, ତୁ କେବଳ ଝିଅପିଲା ସାଜି ବସିରହିବୁ । ନଈ ନ ଦେଖୁଣୁ ଲଂଗଳା ହୋଇପଡୁଛୁ କାହିଁକି? ଗୀତିନାଟ୍ୟ ନିର୍ଦ୍ଦେଶକ କିଏ ଜାଣୁ ? ଆମ ସାର୍, ଅମରବାବୁ । ସାରା ପୁରୀ ସହରରେ ସେତେବେଳେ ଅମରବାବୁଙ୍କ ନାଁ ଡାକ । ସଂସ୍କୃତ କଲେଜର ଅଧ୍ୟାପକ । ବୀଣାଜିଣା କଣ୍ଠ । ମୁଁ ଇଂରାଜୀ କଲେଜର ଛାତ୍ର । ପିଲାଦିନେ ସ୍କୁଲରେ ପଢୁଥିବାବେଳେ ଶ୍ଳୋକାନ୍ତର ଲାଗି ଶହେ ଖଣ୍ଡେ ଶ୍ଳୋକ ଘୋଷି ମନେ ରଖିଥିଲି । ସେଥିରୁ କେତୋଟି ମେଘଦୂତ କାବ୍ୟର । ଜଗଦୀଶ ମୋ ପିଛା ଲାଗିଲା । ରାଜି ହେଲି । ମୁଁ ହେଲି ଯକ୍ଷପ୍ରିୟା, ସେ ହେଲା ଯକ୍ଷ । ପନ୍ଦରଦିନ ରିହର୍ସାଲ । ପୁରୀ ନାରୀସେବା ସଦନରେ ମଂଚସ୍ଥ ହେଲା । ଯେତେଦୂର ମନେ ପଡୁଛି ଗଭର୍ଣ୍ଣର ଆସିଥିଲେ ଉଦ୍‌ଘାଟନ କରିବା ଲାଗି । ଆମ ଦୁହିଁଙ୍କ ଅଭିନୟ ଦେଖି ପୁରସ୍କାର ପ୍ରଦାନ କରିଥିଲେ, କିଂତୁ ଦି'ଜଣ ଲାଗି ଗୋଟିଏ ମେଡ଼ାଲ । ସେ ମେଡ଼ାଲ ବହୁବର୍ଷ ଧରି ତା' ପାଖରେ ଥିଲା । ଗୋଟିଏ ଟିଣ ବାକ୍‌ସରେ । ସେ ବାକ୍‌ସଟି ଧରି ସେ କଲିକତା ଯାଇଥିଲା । ପୁରୀରେ ତା ପାଠପଢ଼ା ଅଧା ରହିଗଲା । ବୋଧହୁଏ, ମଧ୍ୟମା ପର୍ଯ୍ୟନ୍ତ ପଢିଥିଲା ନା କ'ଣ ! ଆମ ଦୁହିଁଙ୍କର ସ୍କୁଲ ସାର୍ଟିଫିକେଟ ସେଇ ଟିଣ ବାକ୍‌ସରେ ଥିଲା । ଦିନେ ମୋ ମନକୁ କ'ଣ ଉଠିଲା କେଜାଣି କହିଲ, ଗୋରା, ଜଗନ୍ନାଥଙ୍କୁ ସାକ୍ଷୀରଖି ଶପଥ କର, ଆମେ ଦୁହେଁ ସରକାରୀ ଚାକିରି କରିବା ନାହିଁ । ସମାଜସେବା କରିବା । ସେହିଦିନ ଦୁହେଁ ସମୁଦ୍ରକୂଳକୁ ଯାଇ ସାର୍ଟିଫିକେଟ ଚିରି ଫିଙ୍ଗିଦେଲୁ, ସମୁଦ୍ର ଭିତରକୁ ।

ହଜିଲା ସ୍ମୃତି ଗୁଡ଼ାକ ଲହଡ଼ି ଭାଂଗିବାରେ ଲାଗିଛି ମୋ ମନ ଭିତରେ । ଆମ ଦୁହିଁଙ୍କ ମଧ୍ୟରେ କି ପ୍ରକାରର ସଂପର୍କ ଥିଲା, ତାକୁ କଳନା କରିବାକୁ ଗଲାବେଳେ ମୁଣ୍ଡ ଗୋଳମାଳ ହୋଇଯାଉଛି । ଭାବୁଚି ସେ କେବଳ ମୋ'ଠୁ ଚିରବିଦାୟ ନେଇ ଚାଲିଗଲା, ଆଉ କାହାଠୁ ନୁହଁ । ପ୍ରାଚୁର୍ଯ୍ୟ ଭିତରେ ଦାରିଦ୍ର୍ୟ, ଦାରିଦ୍ର୍ୟ ଭିତରେ ପ୍ରାଚୁର୍ଯ୍ୟ ତା'ର ସେବା କରିବା ମୁଁ ଦେଖିଛି । ସବୁଥିରେ ବେପରୁଆ । ସବୁ କ୍ଷେତ୍ରରେ ଦୁଃସାହସୀ । କରିବା ତ କରିବା ଯେତେ ପଇସା ଖର୍ଚ୍ଚ ହେଉ, ଯେତେ ପରିଶ୍ରମ କରିବାକୁ ପଡ଼ିବ, ପଡୁ । ଦେହ ତା'ର ପ୍ରତିବନ୍ଧକ ନଥିଲା । ସ୍ୱାସ୍ଥ୍ୟ ପ୍ରତି ଖାତିର୍ ନଥିଲା ।

ପଟ୍ଟାମୁଣ୍ଡାଇରୁ ପୁରୀ, ପୁରୀରୁ କଲିକତା, କଲିକତାରୁ ଭୁବନେଶ୍ୱର–ଦୀର୍ଘ ଯାତ୍ରା । କୋଡ଼ିଏ ବର୍ଷକୁ ବାଦ୍ ଦେଲେ ଦୀର୍ଘ ସତଚାଳିଶ ବର୍ଷ ଧରି ଆମ ଦୁହିଁଙ୍କ ସଂପର୍କ ସଂଯୋଗ ଥିଲା ନିବିଡ଼ । ପୁରୀରେ ଥିଲାବେଳେ ସେ ମତେ ରାଜନୀତି ଭିତରକୁ ଟାଣି

ନେଇଥିଲା । ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ଭାଷଣ ଶୁଣି ସେ ଏପରି ଉଦ୍‌ବୁଦ୍ଧ ହୋଇପଡ଼ିଲା ଯେ ରାତିକ ଭିତରେ ସେ ସୋସାଲିଷ୍ଟ ହୋଇଗଲା । ସେତେବେଳେ ସୋସାଲିଷ୍ଟମାନଙ୍କ ଶିବିର ପଡ଼ିଥିଲା, ଚକ୍ରତୀର୍ଥରେ । ବାଙ୍କ ବିହାରୀ ଦାସ, ନିଶାମଣି ଖୁଣ୍ଟିଆ ହେରିକା ସେଇଠି ରହୁଥିଲେ । ପୁରୀର ନେତା ଥିଲେ ଡାକ୍ତର ବସନ୍ତ କୁମାର ନନ୍ଦ, ହରିଭାଇନା (ବାହିନୀପତି) ପଂକୁ ଭାଇନା । ସାରଙ୍ଗଧର ଦାସ ଓ ସୁରେନ୍ଦ୍ର ନାଥ ଦ୍ୱିବେଦୀ ମଝିରେ ମଝିରେ ଯାଇ ପାଠଚକ୍ର କରୁଥିଲେ । ଏମାନଙ୍କ ବ୍ୟତୀତ ଦୁଇଥାକିଆ ନେତା ମଧ୍ୟ ଯାଉଥିଲେ । ରାଜନୀତି ନାଁ ଧରିଲେ ମୁଁ ନାକ ଟେକୁଥିଲି । ସ୍କୁଲରେ୍ ପଢ଼ିବାବେଳେ ମହାତ୍ମାଗାନ୍ଧୀ କି ଜୟ କହି କହି, ବାନରସେନା ହୋଇ ବାଣପୁର ଥାନା ଦାରୋଗାଠୁ ବହୁବାଡ଼ି ମାଡ଼ ଆଉ ହାତ ଆଙ୍ଗୁଠି ନଖ ଉପରେ ପିନ୍‌କଂଟା ଫୋଡ଼ା ଖାଇଥିଲି । ଛାତ୍ର କଂଗ୍ରେସର ମୁଖପତ୍ର 'ସାଥୀ' ପତ୍ରିକାରେ ମୋ କବିତା ପ୍ରକାଶ ପାଉଥିଲା । ପୁରୀଜିଲ୍ଲା ଛାତ୍ରକଂଗ୍ରେସ ବାର୍ଷିକ ସମ୍ମିଳନୀ ଉପଲକ୍ଷେ କବିତା ପ୍ରତିଯୋଗିତାରେ ମୁଁ ପ୍ରଥମ ସ୍ଥାନ ଅଧିକାର କରିଥିଲି । କିଂତୁ ସ୍ୱାଧୀନତା ହାସଲ ଓ ଗାନ୍ଧିଜୀଙ୍କ ହତ୍ୟାପରେ କାହିଁକି ରାଜନୀତି ମତେ ପିତା ଲାଗିଲା । ଜଗଦୀଶ ଏସବୁ ଜାଣିଥିଲା । ତାରି ଉସ୍‌କାଣରେ ମୁଁ ପୁଣି ରାଜନୀତି ବଣ ଭିତରେ ପଶିଲି । ତା' ଭଳି ମୁଣ୍ଡରୁ ଗାନ୍ଧୀଟୋପି ଫିଙ୍ଗି ନାଲିଟୋପି ପିନ୍ଧିଲି । ପାର୍ଟିଚାନ୍ଦା ସଂଗ୍ରହ ଲାଗି ତା ସହିତ ଟିଣଡବା ଧରି ବୁଲିଲି । ସେହି ସମୟରେ ହରିଭାଇନାଙ୍କ ନେତୃତ୍ୱରେ ପୁରୀରେ ଚାଲିଲା ମଠ ଆନ୍ଦୋଳନ । ଜଗଦୀଶ ସେଥିରେ ଅନ୍ୟତମ ଅଗ୍ରଣୀ । ଦାବି ହେଲା ପ୍ରତ୍ୟେକ ମଠରେ ବିଦ୍ୟାର୍ଥୀ ରହିବେ । ସେମାନଙ୍କ ରହିବା, ଖାଇବା ଭାର ମଠଗୁଡ଼ିକ ନେବେ । ପୁରୀରେ ବହୁ ଗରିବ ଛାତ ଓ ଦୁଇଟିଯାକ କଲେଜକୁ ପଢ଼ିବାପାଇଁ ଆସୁଥିଲେ । ସେମାନଙ୍କର ଠାବ ନଥିଲା ରହିବାପାଇଁ । ଆଗରୁ ଜଗଦୀଶ ଯୋଗାଡ଼ କରି ଗୋଟିଏ ମଠରେ ରହିଥିଲା । ତା' ଭଳି ଅନ୍ୟ ଛାତ୍ରମାନେ ରହିବା ପାଇଁ ସେ ଆନ୍ଦୋଳନରେ ସହଯୋଗ କଲା । ମୁଁ ତା ସହିତ ମିଶି ସ୍ଲୋଗାନ ଦେଲି । ଆନ୍ଦୋଳନ ମାତ୍ରେ ଗଣ୍ଡଗୋଳିଆ ପରିସ୍ଥିତି ସୃଷ୍ଟି । ପୁଲିସର ଲାଠିମାଡ଼ । ଗିରଫ ହୁଅ, ହାଜତରେ ପଶ । ରାତିଏ ହେଉପଛେ । ପ୍ରଥମେ ଏଗୁଡ଼ା ମତେ କିମିତି କିମିତି ଲାଗୁଥିଲା । ପରେ ଆରେଇଗଲା । ଜଗଦୀଶ କହିଲା, ରାଜନୀତି ଠିକ୍ ଅଫିମ ନିଶାଭଳି । ଥରେ ଧରିଦେଲେ, ଆଉ ନ ଛାଡ଼ । ତୁମେ ଛାଡ଼ିବା ପାଇଁ ଚାହିଁଲେ, ସେ ନିଶା ତମକୁ ଛାଡ଼ିବନି ।

ପୁରୀରେ ଜଗଦୀଶ ଓ ମୁଁ ଦୁଇବର୍ଷ ଏକାଠି ଥିଲୁ । ୧୯୪୮–୪୯ । କବିରାଜିରେ ମଧ୍ୟମା ପାସ୍ କଲା କି ନାହିଁ ଜାଣେନା । ଥରେ ମୁଁ ଗାଁକୁ ଦି' ଚାରିଦିନ ପାଇଁ ଯାଇ, ପୁରୀକି ଫେରି ଦେଖିଲି. ଜଗଦୀଶ ନାହିଁ । ମୋ ପାଖକୁ ଖଣ୍ଡିଏ ଚିଠି ଲେଖି ଘର ଭିତରେ ରଖିଦେଇ ଯାଇଥିଲା, କୁଆଡ଼େ ଗଲା, ପତ୍ତା ପାଇଲି ନାହିଁ । ଘଟଣାକ୍ରମେ ମୁଁ ପୁରୀରୁ କଟକ ଆସି ସୋସାଲିଷ୍ଟ ପାର୍ଟିର ମୁଖପତ୍ର ସାପ୍ତାହିକ 'କୃଷକ'ର ସହସଂପାଦକ ହେଲି ।

ଠିକ୍ ରେଭେନ୍‌ସା ଗାର୍ଲସ୍ ସ୍କୁଲକୁ ଲାଗି ଗଂଗାମନ୍ଦିରରେ 'କୃଷକ' ପ୍ରେସ୍। ସେତେବେଳେ ଏ ପତ୍ରିକା ଓ ପ୍ରେସ୍‌ର ଯଥେଷ୍ଟ ସୁନାମ ଥିଲା। ପତ୍ରିକାଟି ଗଡ଼ଜାତ ଆନ୍ଦୋଳନ ଚଳାଉଥିଲା କହିଲେ ଅତ୍ୟୁକ୍ତି ହେବନାହିଁ। ମୋର ଖାଇବା, ରହିବା ସେହି ପ୍ରେସ୍ ପରିସର ଭିତରେ। ଜଗଦୀଶକୁ ମନେ ମନେ ବହୁତ ଖୋଜିହେଲି। ବିଚରା କୋଉଠି ଥିବ, କ'ଣ କରୁଥିବ ଭାବି ଭାବି ମନକଷ୍ଟରେ ରହିଥିଲି। ଦିନେ ହଠାତ୍ ସେ ଆସି ପହଂଚିଲା ସେହି ପ୍ରେସ୍‌ରେ। ଦେଖିଲି ଜଗଦୀଶ ଏକାବେଳକେ ବଦଳି ଯାଇଛି। ୩/୪ ବର୍ଷ ଭିତରେ ତା'ର ରୂପଭେକରେ ବିରାଟ ପରିବର୍ତ୍ତନ। ଦେହରେ ଫିନ୍ ଫିନ୍ ପତଳା ଖଦଡ଼ ଧୋତି, ପଞ୍ଜାବି। ଏକାବେଳକେ ନେତା ବନିଯାଇଛି। କହିଲା, ଆସିଚି ତତେ ନେବାପାଇଁ। କହ ଯିବୁ କି ନାହିଁ ?

ପଚ୍ଚରିଲି, କୁଆଡ଼େ ?

କଲିକତା।

ପଚ୍ଚରିଲି, ଆଉ କି ନିଶା ଧରେଇବୁ ? ଏ ସୋସାଲିଷ୍ଟ ନିଶାଠୁ ସେ ନିଶା କ'ଣ ଅଧିକ କଡ଼ା ?

କହିଲା, ଏ ନିଶାରେ କଉଡ଼ି ନାହିଁ, କଲିକତି ନିଶାରେ କଉଡ଼ି ପାଇବୁ। ଅଧିକ ପଢ଼ିବୁ, ଅଧିକ ଲଢ଼ିବୁ । ରାଜନୀତି ସାଂଗକୁ କିଛି ରୋଜଗାର ଦରକାର।

ବହୁତ ବୁଝେଇଲା ଜଗଦୀଶ। କିଂତୁ ଏଥର ତା'ର ପାଲରେ ପଡ଼ିଲିନି। ତୁ ଏଇଠି ମର୍ କହି, ବିରକ୍ତରେ ସେ ଚ୍ଚାଲିଗଲା। ସେ ଆଜୀବନ ମତେ ଥଟ୍ଟା ପରିହାସ କରି ଆସୁଥିଲା। ଏହାର ଏକ ଛୋଟ ଇତିହାସ ଅଛି। ଦିନେ ତାକୁ କହିଥିଲି, ଏତେଟା ପରିହାସ ଭଲ ଲାଗୁନି। ବାଧୁଚି। ତା ଛଡା ତୋର ମୋର ସଂପର୍କ ବନ୍ଧୁଭାବରେ। ମୁଁ 'କୃଷକ' ପ୍ରେସ୍‌ରେ ଥିବାବେଳେ (୧୯୫୭ ଜୁନ୍‌ମାସ ପର୍ଯ୍ୟନ୍ତ ମୁଁ ଏଠି ଥିଲି) ଦିନେ ସେ ତା' ସ୍ତ୍ରୀ ଚୁନାକୁ ସାଙ୍ଗରେ ଧରି ଆସିଲା। ମନେହେଲା ଯିମିତି ସେମାନେ ବିବାହ କର୍ମ ସାରି ବେଦିରୁ ଉଠିଆସିଛନ୍ତି। ଚୁନା (ପ୍ରେମଲତା) ମତେ ଓଳଗି ହେଲା। ତାକୁ ମୋର ପରିଚୟ ଦେଇ କହିଲା– ଇଏ ତୋର ବଡ଼ଭାଇ ଗୋରା। ମୋ ସାଂଗ। ସେ ଦିନଠୁ ତା ସ୍ତ୍ରୀ ମତେ ଭାଇନା, ଭାଇନା ଡ଼ାକିଲା। ମୁଁ ସଂପର୍କରେ ଜଗଦୀଶର ଶାଳକ ହୋଇଗଲି ! କହିଲା, ଏଣିକି ଥଟ୍ଟା ପରିହାସ ଶୁଣିବାକୁ ତୁ ବାଧ୍ୟ !

ତା'ପରେ ମତେ ସେ ବହୁବାର କଲିକତା ଡ଼କେଇ ନେଇଛି। ଗଲେ, ତା'ରି ବସାରେ ରହେ। ଛୋଟ ଘରଟିଏ। କିଂତୁ ତା ପାଖକୁ ଆସନ୍ତି ପଶ୍ଚିମବଂଗର ମନ୍ତ୍ରୀ ଆଉ ବହୁ ନେତା। ସେମାନଙ୍କ ସହିତ ବଂଗଳାରେ ଅନର୍ଗଳ କଥାବାର୍ତ୍ତା କରେ। ଦେଖିଲି, କେତେଟା ବର୍ଷ ଭିତରେ କବିରାଜ ଜଗଦୀଶ ଯିମିତି ରାଜାଧିରାଜ ପାଲଟି ଯାଇଚି। ସମାଜସେବୀ ଜଗଦୀଶ। କଲିକତାରେ ଓଡ଼ିଆ ସ୍କୁଲ ନାହିଁ। ଲକ୍ଷ ଲକ୍ଷ ଓଡ଼ିଆ। କିଂତୁ ସେମାନଙ୍କ

ପିଲାମାନଙ୍କ ପାଠପଢ଼ା ବଂଗଳା ଭାଷା ମାଧ୍ୟମରେ। ଜଗଦୀଶ ଚିନ୍ତିତ। ଗୁହ୍ୟା କାଳ. ଟାଟାରେ ଓଡ଼ିଆ ସ୍କୁଲ ଅଛି, ପିଲାଙ୍କୁ ସେଠିକି ପଠାଅ। ଓଡ଼ିଆ ପଢ଼ିବେ। କଲିକତାରେ ଥିଲେ କ'ଣ ହେଲା, ପିଲାଏ ଆମଭଳି ଖାଣ୍ଟି ଓଡ଼ିଆ ହୋଇ ବାହାରିବେ। ନିଜ ସାହିତ୍ୟ, ସଂସ୍କୃତ ଯେପରି ଆମ ପିଲାଙ୍କ ଧମନୀରୁ ଲୋପ ନପାଏ। କଲିକତାରେ ଓଡ଼ିଆ ସାହିତ୍ୟ ସମ୍ମିଳନୀ ଆୟୋଜନ କରିବାରେ ଜଗଦୀଶ ଅଗ୍ରଣୀ। ନିଖିଳ ଭାରତ ସାହିତ୍ୟିକ ସମ୍ମିଳନୀର ଅନ୍ୟତମ ଉଦ୍ୟୋକ୍ତା ମଧ୍ୟ ସେ। ତା'ର ଆମନ୍ତ୍ରଣକ୍ରମେ ମୁଁ ଓ ଗୋପାଳ ଓଡ଼ିଶାରୁ ପ୍ରତିନିଧିତ୍ୱ କରିଥିଲୁ।

ପୁରୀରେ ଥିବାବେଳେ ସୋସାଲିଷ୍ଟମାନଙ୍କ ପ୍ରରୋଚନାରେ ମୋ ଭଳି, ଜଗଦୀଶ ମଧ୍ୟ ଥିଲା ଡକ୍ଟର ହରେକୃଷ୍ଣ ମହତାବଙ୍କ ବିରୋଧୀ। ସେ ଆଗେ ବଦଳିଲା, ମୁଁ ପରେ ବଦଳିଲି। ସେ କଲିକତାରେ ଥାଇ ଡକ୍ଟର ହରେକୃଷ୍ଣ ମହତାବଙ୍କ ଅନୁଗାମୀ ପାଲଟିଗଲା, ମୁଁ 'କୃଷକ'ରୁ ଗଲି ପ୍ରଜାତନ୍ତ୍ରକୁ ସହସଂପାଦକ ଭାବରେ। ଜଗଦୀଶ କଲିକତାରେ କଂଗ୍ରେସ ନେତା, ଓଡ଼ିଆମାନଙ୍କ ନେତା। ସେଇଠି ସେ ଆରମ୍ଭ କଲା ପ୍ରେସ୍ ବ୍ୟବସାୟ। ପ୍ରଧାନ ଉଦ୍ଦେଶ୍ୟ – ଖଣ୍ଡିଏ ମାସିକ ପତ୍ରିକା ପ୍ରକାଶ କରିବା। ଆଗରୁ କେତେଦିନ ପାଇଁ ସେ 'ଆସନ୍ତାକାଲି'ର ସଂପାଦନା ଦାୟିତ୍ୱ ନେଇଥିଲା। 'ଆସନ୍ତାକାଲି' ବନ୍ଦ ହୋଇଯିବାରେ ସେ କଲିକତାରେ ପ୍ରକାଶ କଲା ସାହିତ୍ୟ ପତ୍ରିକା 'ସମାବେଶ'। ମୁଁ ମଝିରେ ମଝିରେ ମାତ୍ର ତାଙ୍କୁ ସହଯୋଗ କରୁଥିଲି।

କଲିକତାରେ ରହଣିକାଳ ଭିତରେ ତା' ସହିତ ରହି ରହି ମୁଁ ରୋଗଣା ହୋଇଗଲି। ଖିଆପିଆରେ ସବୁବେଳେ ଅନିୟମିତ। ଥରେ ଥରେ କାର୍ଯ୍ୟଜୋର୍‌ରେ ଦିନସାରା କେବଳ ଗୁହ୍ମା ପିଇ ପିଇ ରହିଯାଏ। ଓଧ ସାଂଗରେ ବଣଭୁଆ ଖାଇ ହେଲା ଭଳି । ତା'ର ଅନିୟମିତତାକୁ ମୁଁ ମିତଭାବରେ ଗ୍ରହଣ କରିନେଲି। ଦୁହେଁ କଲିକ୍ ରୋଗରେ ପୀଡ଼ିତ ହେଲୁ। ସେ ରୋଗକୁ ମୋଦକ ଖାଇ ମାରିନେଲା, ମୁଁ ପାରିଲି ନାହିଁ। କଷ୍ଟ ଅସହ୍ୟ ହେବାରେ ସେ ମତେ ସାଂଗରେ ନେଇଗଲା ତତ୍‌କାଳୀନ ପଶ୍ଚିମବଂଗର ମୁଖ୍ୟମନ୍ତ୍ରୀ ଡାକ୍ତର ବିଧାନଚନ୍ଦ୍ର ରାୟଙ୍କ ପାଖକୁ। ଇଏ 'ସମାବେଶ' ପ୍ରକାଶ ପାଇବାର ପୂର୍ବ ଘଟଣା। ବି. ସି. ରାୟ ଡାକ୍ତର ଭାବରେ ବିଶ୍ୱବିଖ୍ୟାତ। ଧନ୍ୱନ୍ତରୀ ସେ। କିଛି ଔଷଧ ଲେଖନ୍ତି ନାହିଁ, ରୋଗୀକୁ ଦେଖି, ଏଇଟା ଖାଅ, ଏଇଟା ଖାଇବା ଛାଡ଼ ପଦେ ଦି'ପଦ କହିଦିଅନ୍ତି। ପ୍ରତିଦିନ ସେ ଘଂଟାଏ ରୋଗୀ ଦେଖନ୍ତି। ଭୀଷଣ ଭିଡ଼। ରାତି ପ୍ରହରରୁ ଧାଡ଼ି ଲାଗେ। ମୁଁ ନିଜେ ଥରେ ଦି'ଥର ଫେରି ଆସିଥିଲି ! ଏଥର ଜଗଦୀଶ ସାଂଗରେ ଯାଇଛି। ଦୁହେଁ ଧାଡ଼ିରେ ଠିଆ ହେଲୁ। ବି. ସି. ରାୟ ଠିକ୍ ଆମ ପାଖ ଦେଇ ଗଲେ ତାଙ୍କ ଆସନକୁ। ଜଗଦୀଶ ଉପରେ ତାଙ୍କର ଆଖି ପଡ଼ିଚି। ଚୌକିରେ ବସୁ ବସୁ ଲୋକ ପଠାଇ ଜଗଦୀଶକୁ ଓ ମତେ ଡକେଇ ନେଲେ। ଜଗଦୀଶ ସହିତ ଓଡ଼ିଶା ଓ ଓଡ଼ିଆମାନଙ୍କ ସଂପର୍କରେ ଦୁଇ

ତିନି ମିନିଟ କଥାବାର୍ତ୍ତା ହେଲେ । ମୁଁ ମନେ ମନେ ଭାବିଲି, କାହିଁ ବି. ସି. ରାୟ, କାହିଁ ଜଗଦୀଶ ! ଏ ଦୁହିଁଙ୍କ ଭିତରେ ପୁଣି ଏତେ ଦୋସ୍ତି; ଜଗଦୀଶ ତ ମୋଠୁ ପାଠୁଆ ନୁହେଁ, ଅଧାପାଠୁଆ । ଭାବିଲି, ଅଳ୍ପ କେଇଟା ବର୍ଷ ଭିତରେ ଜଗଦୀଶ ତ କଲିକତାରେ ବେଶ୍ ଜମିଗଲାଣି । ମଣିଷ ପଇସାପତ୍ରରେ ମଣିଷକୁ କିଣିପାରେ, କଥା କହି କିଣିପାରେ କିଂବା ଶାରିରୀକ ସୌଷ୍ଠବରେ ଅନ୍ୟକୁ ବଶୀଭୂତ କରିପାରେ । ଜଗଦୀଶ ପାଖରେ ତ ଏଥିରୁ କିଛି ହେଲେ ନାହିଁ ! ଏତେ ଲୋକଙ୍କ ମନକୁ, ହୃଦୟକୁ କିଣିଲା, ଜିଣିଲା କିମିତି ? କ'ଣ କିଛି ମଂତ୍ର ଜାଣେ ।

ମୁଁ ରୋଗୀ, ଜଗଦୀଶ ସେବକ । ବି.ସି.ରାୟ ମତେ ଦେଖିଲେ । ପାଟିକି ଆଁ କର କହିଲେ, ମୋ ଜିଭ ଦେଖିଲେ, ଆଖି ଦେଖିଲେ ତା'ପରେ ରୋଗର ନିଦାନ କରି ଔଷଧ ବ୍ୟବସ୍ଥା କଲେ । ଖାଲି କହିଲେ, ପାକା କେଲା ଖାଅ । କେଲା କ'ଣ ମୁଁ ବୁଝିପାରିଲି ନାହିଁ, ଜଗଦୀଶକୁ ପଚାରିଲି । ଜଗଦୀଶ କହିଲା–ଆରେ କଦଳୀରେ କଦଳୀ, ପାଚିଲା କଦଳୀ ଦିନକୁ ତିନି ଚାରିଟା ଖାଇବାକୁ କହିଲେ । ପ୍ରକୃତରେ ପାଚିଲା କଦଳୀ ଖାଇବାରେ ମୋ କଲିକ୍ ଭଲ ହୋଇଗଲା ।

କଲିକତାରୁ ଜଗଦୀଶ ଆସିଲା ଭୁବନେଶ୍ବର । ଏଥର ନେତା–କମ୍–ବିଜିନେସ୍‌ମ୍ୟାନ–ପ୍ରେସ୍ ବ୍ୟବସାୟ । ସାଂଗରେ 'ସମାବେଶ' । ଉପରକୁ ଉଠିବା ପାଇଁ କଠୋର ପରିଶ୍ରମ । ଓଡ଼ିଆ ସାହିତ୍ୟର ପ୍ରସାର, ପ୍ରଗତି ଦିଗରେ ତା'ର ଅବଦାନ କ'ଣ, ମୁଁ ଲେଖିବା ନିଷ୍ପ୍ରୟୋଜନ । କାରଣ 'ସମାବେଶ' ମାଧ୍ୟମରେ ସେ ଶହ ଶହ ଲେଖକ ଲେଖିକା ସୃଷ୍ଟି କରିଚି । ସେମାନେ ତାକୁ ଭଲଭାବରେ ଜାଣନ୍ତି ।

ଭୁବନେଶ୍ବରରେ ଥିବାବେଳେ ସେ ତିନି ଚାରି ଥର ମରିଚି କହିଲେ ଭୁଲ୍ ହେବନାହିଁ । କେତେବେଳେ ରାସ୍ତାରେ ପଡ଼ିଛି, ହାତ ଗୋଡ଼ ଅଣ୍ଟା ଭାଂଗିଛି । ମାସ ମାସ ଧରି ଶଯ୍ୟାଶାୟୀ ହୋଇଛି । ତା'ର ପ୍ରଧାନ ଚିକିତ୍ସକ ଡାକ୍ତର ଜଗନ୍ନାଥ ମହାପାତ୍ର– ତାକୁ ମରଣମୁହଁରୁ ବଂଚେଇ ରଖିଥିଲେ ଏ ପର୍ଯ୍ୟନ୍ତ । ଦିନେ ହଠାତ୍ ଫୋନ୍ ପାଇଲି ଡାକ୍ତର ଜଗନ୍ନାଥ ମହାପାତ୍ରଙ୍କଠାରୁ–ରାତି ଅଧ । ମୂଷଳଧାରାରେ ବର୍ଷା । ଜଗନ୍ନାଥ (ସେ ମୋତେ ଭାଇନା ବୋଲି ଡାକନ୍ତି) କହିଲେ, ଡାକ୍ତର ହରିହର ଦାଶଙ୍କୁ ଯେକୌଣସିମତେ ଶୀଘ୍ର ସାଂଗରେ ଧରି ଆସନ୍ତୁ । ଜଗଦୀଶଭାଇନାଙ୍କ ଭୀଷଣ ଦେହ ଖରାପ । ରାତି ପାହିଲା ବେଳକୁ ସେ ଆଉ ନଥିବେ । ହଡ଼ବଡେଇ ଗଲି । ଡକ୍ଟର ଦାଶଙ୍କ ଘରକୁ ଗଲି । ଜଗଦୀଶ ନାଁ ଶୁଣିବା ମାତ୍ରେ ସେ କହିଲେ, ଗୋରା ଭାଇ କୋଉଠୁ ଗୋଟେ ଗାଡ଼ି ଠିକ୍ କର । ମୋ ଗାଡ଼ି ଖରାପ । ମୁଁ ଯିବି । ଟାକ୍ସି ପାଇଲିନାହିଁ । ଗୋଟିଏ ମେଟାଡ଼ୋର୍ ଠିକ୍ କରି ଡାକ୍ତର ଦାଶଙ୍କୁ ସାଙ୍ଗରେ ନେଇଗଲି । ରୋଗୀ ପାଖରେ ଜଗନ୍ନାଥେ । (ଭୁବନେଶ୍ବରରେ ସମସ୍ତଙ୍କର ଏହି ଜଗନ୍ନାଥ ହିଁ ଭରସା) । ଡାକ୍ତର ଦାଶ ଯାହା କଲେ, ଜଗନ୍ନାଥେ ତାହା

କରିପାରିଥାନ୍ତେ. କିଂତୁ ସେ ରୋଗର ସେ ବିଶେଷଜ୍ଞ ନୁହଁନ୍ତି । ଡକ୍ଟର ଦାଶ ସିରିଂଜରେ ଜଗଦୀଶର ଫୁସ୍‌ଫୁସରୁ ପ୍ରାୟ ଅଧ ବାଲ୍‌ଟିଏ ପାଣି ବାହାର କଲେ । ଜଗଦୀଶର ଆଖି ଖୋଲିଲା । ମତେ ଦେଖି କହିଲା, ଗୋରା ! ତୁ ବଂଚେଇଦେଲୁ । ମୁଁ ଡାକ୍ତର ଦାଶ ଓ ଡାକ୍ତର ମହାପାତ୍ରଙ୍କୁ ଦେଖାଇ କହିଲି, ମୁଁ ନୁହଁ, ଏମାନେ । ଇମିତି କେତେବାର ହୋଇଛି । ଦେହର କଷ୍ଟ ହେଲେ, ମତେ ଫୋନ୍ କରେ । ଫୋନ୍‌ରେ କାନ୍ଦେ । ମୋ ସ୍ତ୍ରୀ ଗ୍ଗୁରୁକୁ କହେ, ମରିଯାଇଥାଆନ୍ତି ବଂଚିଗଲି ଲୋ ଗ୍ଗୁରୁ !

ଜଗଦୀଶ କୋଉ ଗଳିରେ ପଶି କୋଉ ଗଳିରେ ବାହାରୁଥିଲା, ଗଲାବେଳେ ବାଟରେ ଘାଟରେ କାହାକୁ କ'ଣ ଦେଉଥିଲା କେଜାଣି, ସମାଜର ସର୍ବୋଚ୍ଚ ସ୍ତରରୁ ସର୍ବନିମ୍ନ ପର୍ଯ୍ୟନ୍ତ ସବୁଶ୍ରେଣୀର ଲୋକେ ତା'ର ବନ୍ଧୁ ଥିଲେ । ଖାଲି ନାମମାତ୍ର ବନ୍ଧୁ ନଥିଲେ, ତା' ଲାଗି ଜୀବନ ଦେଲାଭଳି ଲୋକ ମଧ୍ୟ ଥିଲେ । ସେଭଳି ଜଣେ ଥିଲେ ବିଷ୍ଣୁପଦ ମାଇତି । ତାଙ୍କ ସହିତ ଜଗଦୀଶର କ୍ଷୀରନୀରର ସଂପର୍କ । ତା' ସହିତ ଶେଷ ସାକ୍ଷାତବେଳେ ପାଖରେ ଥିଲେ ମାଇତିବାବୁ । ସେ ମଧ୍ୟ ମତେ ଥଟ୍ଟା ପରିହାସ କରୁଥିଲେ । ଦୁହେଁ ଡ଼କାଡ଼କି ହୋଇ ଆଗପଛ ହୋଇ ଚ୍ଗଲିଗଲେ । ମାଇତିବାବୁଙ୍କ ଦେହାନ୍ତର ଠିକ୍ ପୂର୍ବଦିନ– ମୁଁ ଖଣ୍ଡିଏ ଚିଠି ଦେଇଥିଲି ଜଗଦୀଶ ପାଖକୁ । ଚିଠିର ଠିକଣାରେ ଲେଖିଥିଲି, 'ଶିଳ୍ପପତି ଶ୍ରୀଯୁକ୍ତ ଜଗଦୀଶ ପାଣି ।' ଚିଠିଟି ଧରି ଯାଇଥିଲା ମୋର ଜଣେ ସଂପର୍କୀୟ ନାତି ଉପେନ୍ଦ୍ର । ଠିକଣାଟି ପଢ଼ି ଉପେନ୍ଦ୍ରକୁ କହିଲା, ଗୋରା ଲେଖିଚି –ମୁଁ ଶିଳ୍ପପତି! ହାତରେ ପଚ୍ଗଶ ଟଂକା ନାହିଁ– ମେଡ଼ିକାଲ ଯିବି– ବନ୍ଧୁ ପଡ଼ିଚି ମୃତ୍ୟୁଶଯ୍ୟାରେ । ଟୁନାପତି ହେଲେ ଲେଖିଥାଆନ୍ତା । ହଁ ପତି ଘରେ ବାହା ହେଇଚି, ଜଣଙ୍କର ପତି ମଧ୍ୟ ହୋଇଚି । ହଁ ପତି ମୁଁ । ଶିଳ୍ପର ନୁହଁ– ଦାରିଦ୍ର୍ୟର ।

ଏକଥା ଉପେନ୍ଦ୍ର ଆସି ମତେ କହିଥିଲା ।

୧୯୬୭ । 'ପ୍ରଜାତନ୍ତ୍ର'କୁ ଆସିଲେ ଦୁଇଜଣ ନୂଆଲୋକ । ଜଣେ ଶ୍ରୀହର୍ଷ ମିଶ୍ର– ସଂପାଦକ ଭାବରେ, ଆଉ ଜଣେ ଜଗଦୀଶ ପାଣି– ପରିଚ୍ଗଳକ ଭାବରେ । ଜଗଦୀଶକୁ ଦେଖି ମନେ ମନେ ଭାବିଲି ଇଏ ଆସିଲା ନାହିଁ ଯେ ମୋ ଲାଗି ମସ୍ତବଡ଼ ହଟହଟା ଆସିଗଲା । ସେ 'ପ୍ରଜାତନ୍ତ୍ର'କୁ ମୁମୂର୍ଷୁ ଅବସ୍ଥାରୁ କୋରାମିନ ଦେଇ ବଂଚେଇବାକୁ ଚେଷ୍ଟା କଲା । 'ପ୍ରଜାତନ୍ତ୍ର' କ୍ରମଶଃ ସତେଜ ହୋଇଉଠିଲା । ପ୍ରସାର ସଂଖ୍ୟା ବଢିଲା । ସେ ଯିମିତି କର୍ମଠ, ପରିଚ୍ଗଳନା ଦିଗରେ ଆଉ ଜଣେ କର୍ମଠ କର୍ମୀକୁ ପାଇଲା କଲିକତାର ଦୁହିଁଙ୍କ ମଧ୍ୟରେ ଘନିଷ୍ଠତା । ଏ ଜଣଙ୍କ ଶ୍ରୀଯୁକ୍ତ ପ୍ରଫୁଲ୍ଲ କୁମାର ସାହୁ । ଏବେ ବି ସେ ଅଛନ୍ତି– ଜି. ଏମ୍ ଭାବରେ ।

ଓଡ଼ିଶାରେ ବନ୍ୟା ଦେଖାଦେଲା । ବିଶେଷତଃ ବାଲେଶ୍ଵରରେ । ବନ୍ୟାଞ୍ଚଳକୁ ଯାଇ ଲୋକଙ୍କ ଦୁର୍ଦ୍ଦଶା ସ୍ୱଚକ୍ଷୁରେ ଦେଖିଆସିବାକୁ ପଡ଼ିବ । ଦେଖାଲେଖା କାଗଜରେ ବାହାରିବ । ରାତି ଅଧରେ ମୋ ଘରେ ପହଂଚି କହିଲା, ଗୋରା ତତେ ଯିବାକୁ ପଡ଼ିବ ।

ଗାଡ଼ିର ବ୍ୟବସ୍ଥା କରଛି । ଅମୃତବଜାର ପତ୍ରିକାରୁ ତୋର ମୋର ଉଭୟଙ୍କର ସାଂଗ । ଗୋପାଳ ଯିବ, ତା' ଗାଡ଼ିରେ ଯିବୁ, ଜଗଦୀଶର ଆଦେଶ ଅବଜ୍ଞା କରିପାରିଲି ନାହିଁ । ଗଲି ।

ପଣ୍ଡିତ ନୀଳକଣ୍ଠ ଦାଶ ଇହଲୀଳା ସମ୍ବରଣ କଲେ । ତାଙ୍କୁ ରାଷ୍ଟ୍ରୀୟ ମର୍ଯ୍ୟାଦା ଦିଆଗଲା । କଟକରୁ ତାଙ୍କର ଶବଯାତ୍ରା ବାହାରିଲା– ସତ୍ୟବାଦୀ ଅଭିମୁଖେ । ସିମିତି ରାତି ଅଧ । ଜଗଦୀଶ ଜିପ୍ ଧରି ଆସିଲା– କହିଲା, ଆ, ମୋ ସାଂଗରେ । ଆସନ୍ତା କାଲି 'ପ୍ରଜାତନ୍ତ୍ର'ରେ ଧାରାବିବରଣୀ ପ୍ରକାଶ ପାଇବ, ମୁଁ ତୋ ସାଂଗରେ ଯିବି । ଶବବାହୀ ଗାଡ଼ି ଚ୍ଲିଛି । ତା' ପଛେ ପଛେ ଆମେ । ସକାଳେ ସତ୍ୟବାଦୀ ବକୁଳବନରେ ଶବଦାହ ସରିଲା । ଝିଆ ନାହିଁ ପିଆ ନାହିଁ । ଜିପ ଛୁଟେଇ ଆସିଲା ପ୍ରଜାତନ୍ତ୍ରକୁ, ଆଖି ପଡ଼ିଯାଉଥାଏ । ମୋ ପାଖରେ ବସି ଲେଖ, ଲେଖି ସାରିଲେ ତତେ ନେଇ ଘରେ ଛାଡ଼ିଦେଇ ଆସିବି ବୋଲି କହିଲା । କର୍ତ୍ତବ୍ୟ ପାଇଁ କ୍ଲାନ୍ତି ନାହିଁ । ସମାଲୋଚନାକୁ ଖାତିର୍ ନାହିଁ । ସେ 'ପ୍ରଜାତନ୍ତ୍ର'ରୁ ଗଲା, ନିଜ ଦୁର୍ବଳ ସଂସ୍ଥାକୁ ସବଳ କରିବା ପାଇଁ । 'ପ୍ରଜାତନ୍ତ୍ର'ରୁ ଗଲେ ମଧ୍ୟ 'ପ୍ରଜାତନ୍ତ୍ର' ସହିତ ତା'ର ଘନିଷ୍ଠ ଆତ୍ମୀୟ ସଂପର୍କ ରହିଥିଲା ଆଜୀବନ । ଡକ୍ଟର ମହତାବଙ୍କର ସେ ଥିଲା ଜଣେ ପଟ୍ଟଶିଷ୍ୟ । ଡକ୍ଟର ମହତାବ ତାକୁ ପୁଅଭଳି ଭଲ ପାଉଥିଲେ । ଅନେକ ସମୟରେ ତା'ଠୁ ପରାମର୍ଶ ଲୋଡୁଥିଲେ ।

ଜଗଦୀଶ ଥିଲା ଅତ୍ୟନ୍ତ ସରଳ ବିଶ୍ୱାସୀ । ଜାତକ, ଯନ୍ତ୍ର, ମନ୍ତ୍ର, ତଂତ୍ର, ସନ୍ଥ, ସନ୍ନ୍ୟାସୀମାନଙ୍କ ଉପରେ ତା'ର ଅଟଳ ବିଶ୍ୱାସ ଥିଲା । ମୁଁ ତାର ଏପରି ସରଳ ବିଶ୍ୱାସର ତୀବ୍ର ବିରୋଧୀ ଥିଲି । ସେ ସପରିବାର ଥରେ ମୋ ସହିତ ପୁଟପର୍ତ୍ତି ଯାଇ 'ସତ୍ୟ ସାଇବାବାଙ୍କୁ ଦର୍ଶନ କରିଥିଲା । ତା' ଝିଅର ନାଁ ଦେଇଥିଲା ସାଇମାତା' । ମତେ ସେ ଅନେକ ବାବାଙ୍କ ପାଖକୁ ନେଇଥିଲା । କୌଣସି କୌଣସି ବାବାଙ୍କୁ ଭଣ୍ଡ କହିବା ମାତ୍ରେ, ଜଗଦୀଶ କହୁଥିଲା, ଇମିତି କହନା, ତାଙ୍କଠି କିଛି ନା କିଛି ଆଲୌକିକ ଶକ୍ତି ଅଛି । କହିଥିଲି, ତୋ'ଠି ମଧ୍ୟ ସେହିଭଳି ଶକ୍ତି ରହିଛି– ନଚେତ୍ ଏତେ ଲୋକଙ୍କୁ ତୁ ଆପଣାର କରିପାରିବୁ କିପରି ? ଅସଲ କଥା ହେଉଚି ତୁ ନିଜେ ନିଜ ଶକ୍ତିକୁ ଚିହ୍ନିନୁ । କଳନା କରିପାରିବୁ !

ମୁଁ କଟୁ କଥା କହିଲେ ମଧ୍ୟ ସେ ରାଗେନି କି ବିରକ୍ତ ହୁଏନି । କିଂତୁ ମୁଁ ତା' ଉପରେ ରାଗେ, ଅନୁରାଗବଶତଃ ତା'ଠୁ ବିଦାୟ ନେଲାବେଳେ ନମସ୍କାର ନକରି କହେ– ଜୟ ଜଗଦୀଶ ହରେ । ସେ ଅସତ୍ୟ ସଂସାରରୁ ସତ୍ୟନଗର ଦେଇ ଚିର ସତ୍ୟଚି ଲୀନ ହୋଇଗଲା !

ଅବଶୋଷ ରହିଗଲା, ଦୁହିଁଙ୍କ ଭିତରେ ଚୁକ୍ତିନାମା ସ୍ୱାକ୍ଷରିତ ହୋଇଥିଲା, ସେ ଆଗେ ଗଲେ, ମୁଁ ତାକୁ କାନ୍ଧେଇବି, ମୁଁ ମଲେ ସେ ମତେ କାନ୍ଧେଇବ । ମୁଁ ତା କୋକେଇ କାନ୍ଧେଇ ପାରିଲି ନାହିଁ । ଚୁକ୍ତିଭଂଗ ହୋଇଗଲା ।

❖ ❖ ❖

# ଜଗଦୀଶଙ୍କ ନାମରେ ସ୍ୱର୍ଗକୁ ଏକ ଚିଟାଉ

**ବାଙ୍କ ବିହାରୀ ଦାସ**

ସ୍ନେହର ଜଗଦୀଶ,

କାହାକୁ ଆଗରୁ ନ ଜଣାଇ ତୁ ହଠାତ୍ ସମସ୍ତଙ୍କୁ ଅନ୍ଧାରରେ ରଖି ଚାଲିଗଲୁ, ତୁ ଆଉ ଆସିବୁ ନାହିଁ ବୋଲି ଆମକୁ କହି ଗଲୁ ନାହିଁ। ଏପରିକି ପରିବାରକୁ ମଧ୍ୟ ଜଣାଇଲୁ ନାହିଁ। ତୋରି ଠିକଣା ନ ଜାଣିଥିବାରୁ ତୋ ପରିବାର ଲୋକେ ବ୍ୟସ୍ତ। ମୁଁ ମଧ୍ୟ ଏ ଚିଠି କେଉଁଠିକି ଲେଖୁଛି ଜାଣେନା। ଖବର ପାଇଛି ତୁ ସ୍ୱର୍ଗଲୋକରେ ଅଛୁ, ତେଣୁ ସେଠିକି ଏ ପତ୍ର ଲେଖିବାକୁ ବାଧ୍ୟ ହେଲି, କାଳେ ଚିଠିଟା ପାଇବୁ।

ମୁଁ ତୋ'ଠାରୁ ବୟସରେ ବଡ଼ ସେଥିପାଇଁ ତୋତେ ଖୁବ୍ ସ୍ନେହରେ "ତୁ" ବୋଲି କହି ଆସିଛି। ତୁ ମୋତେ "ଭାଇ" ବୋଲି ଗତ ପ୍ରାୟ ତ୍ରିଶ ବର୍ଷ ହେଲା ସମ୍ବୋଧନ କରି ଆସିଛୁ। କାଲିକା ଭଳି ମନେପଡୁଛି ତୋ ସହିତ ପ୍ରାୟ ତ୍ରିଶ ବର୍ଷ ତଳେ କଲିକତାରେ ଦେଖା, ବୋଧହୁଏ ଉତ୍କଳ ଭବନରେ। ଖଣ୍ଡିଏ ଛୋଟ ପ୍ରେସ୍ କରି ଜୀବନ ସଂଗ୍ରାମରେ ବ୍ୟସ୍ତ ଥାଉ। ସେତେବେଳେ ତୋର ହରେକୃଷ୍ଣ ମହତାବଙ୍କ ସହିତ ଘନିଷ୍ଠ ସଂପର୍କ। କଲିକତା ଗଲେ ତୋତେ ଆଗେ ଖବର ଦିଅନ୍ତି। ସେ ଥିଲା ପର୍ଯ୍ୟନ୍ତ କଲିକତାରେ, ତୋତେ ତର ନଥାଏ। ଛୋଟଠାରୁ ବଡ଼ କାମ ପର୍ଯ୍ୟନ୍ତ ତୁ ତାଙ୍କର କାମ ଆଖିବୁଜି କରିଯାଉ, ସତେ ଯେପରି ରାମଚନ୍ଦ୍ରଙ୍କ ପାଖରେ ହନୁମାନ।

ତାଙ୍କର ଓ ରାଜନୈତିକ ନେତାଙ୍କଠାରୁ ବ୍ୟବସାୟୀଙ୍କ ସହିତ କଲିକତାରେ ସଂପର୍କ ତୁ ଦୂତଭଳି ତାଙ୍କର କାମ କରିଯାଉ ସେଥିପାଇଁ ଶେଷ ପର୍ଯ୍ୟନ୍ତ ତୋତେ ନିଜର କରିଥାନ୍ତି, ତୁ ମଧ୍ୟ ସେହିପରି ବିଶ୍ୱସ୍ତ ଭାବରେ କାମ କରିଯାଉ। ମୁଁ କୌଣସି କାମରେ ଯେତେବେଳେ ଗଲେ ସବୁ, ଦେଖୁଥାଏଁ। ତୋ ମନରେ ଥରେହେଲେ ବିରକ୍ତି ଭାବ ଦେଖିନାହିଁ।

ସେତେବେଳେ ନିଜର ସାଧାରଣ ଜୀବନ ପାଇଁ ସିନା ପ୍ରେସ୍ କରିଥାଉ, କିନ୍ତୁ ସବୁବେଳେ କଲିକତା ଓଡ଼ିଆଙ୍କ ସେବାରେ ବ୍ରତ। ସେମାନଙ୍କ ଭିତରେ ତୋ ଉପରେ ପଡିଆରା। କେତେ ନଥିଲା ! ସମସ୍ତଙ୍କ ସହିତ ସଦ୍ଭାବ, ସୁଖ ଦୁଃଖରେ ସାଥୀ। କୌଣସି ସ୍ୱାର୍ଥ ପାଇଁ ନୁହଁ, ଏକ ଆତ୍ମିକ ସଂପର୍କ। ସେଇଥିପାଇଁ ସେତେବେଳେ କଲିକତାର ଓଡ଼ିଆଙ୍କ ଭିତରେ ଗଢ଼ି ଉଠିଥିଲା ଏକ ବଳିଷ୍ଠ ସଂଗଠନ। ସ୍ୱର୍ଗତ ଆକୁଳି ମିଶ୍ରଙ୍କ ଠାରୁ ଆରମ୍ଭ କରି ସ୍ୱର୍ଗତ ହୃଦାନନ୍ଦ ମଲ୍ଲିକ ପର୍ଯ୍ୟନ୍ତ ସମସ୍ତେ ଲାଗିଯାଇଥିଲେ ଏହି

କାନରେ । ସେ ଦୁଇଜଣ ଚ୍ଲିଯାଇଥିଲେ, ତୁ ବା କାହିଁକି ପଛରେ ପଡ଼ିବୁ–ତୁ ମଧ୍ୟ ହଠାତ୍ ଅନ୍ତର୍ଦ୍ଧାନ ହୋଇଗଲୁ ।

କଲିକତାରେ ଓଡ଼ିଆଙ୍କ ମଧ୍ୟରେ ଏକ ସାଂସ୍କୃତିକ ଜାଗରଣ ସୃଷ୍ଟି କରିବାକୁ ଲାଗିଯାଇଥାଉ ଜୋକଭଳି । କେତେ ସାଂସ୍କୃତିକ ଉତ୍ସବ ସମସ୍ତଙ୍କ ସହଯୋଗରେ ନ କରିଛୁ ? କେତେ ପତ୍ରପତ୍ରିକା ସହିତ ସଂପୃକ୍ତ ନ ହୋଇଛୁ । ଶେଷରେ ମନସନ୍ତୋଷ ହେଲା– ନାହିଁ 'ସମାବେଶ' ପତ୍ରିକା ବାହାରକଲୁ । ସାହିତ୍ୟ ପ୍ରତି ଅଗାଧ ଶ୍ରଦ୍ଧା ସେଇଥି ପାଇଁ ଓଡ଼ିଆ ସାହିତ୍ୟିକଙ୍କ ମଧ୍ୟରେ ତୋ ପ୍ରତି ଅଗାଧେ ଶ୍ରଦ୍ଧା, ସେତେବେଳେ ଥିଲା, ଏବେ ବି ରହିଛି । ତୁ ନିଜେ ବଡ଼ ସାହିତ୍ୟିକ ନ ହୋଇପାରୁ କିନ୍ତୁ ସାହିତ୍ୟିକମାନଙ୍କୁ ଉତ୍ସାହିତ କରିବାରେ କମ୍ ଅଗ୍ରଣୀ ନଥିଲୁ । ସେମାନେ ଝୁରି ହେଉଛନ୍ତି, ହୋଇଥିବେ ମଧ୍ୟ । ତୋ ସହିତ ଯିଏ ସଂପର୍କରେ ଆସୁଥିଲା ତୋତେ ସେ ଭୁଲିପାରୁ ନଥିଲା । ସତେ ଯେପରି ତୁ ଗୋଟାଏ ବିରାଟ ଚୁମ୍ବକ ପଥର, ଯେ କି ଶେଷପର୍ଯ୍ୟନ୍ତ ତାର ଆକର୍ଷଣର ଶକ୍ତି ହରାଇ ନଥିଲା ।

ତୁ ନିଛକ ଓଡ଼ିଆ, ଓଡ଼ିଆ ପ୍ରୀତି ଅସରନ୍ତି । କିନ୍ତୁ କଲିକତାଠାରୁ ଭୁବନେଶ୍ୱର ପର୍ଯ୍ୟନ୍ତ ଦେଖିଆସିଛି ତୋର ଅଣଓଡ଼ିଆଙ୍କ ପ୍ରତି ପ୍ରୀତି କମ୍ ନଥିଲା । ତୋର ବିଦାୟର ଅବ୍ୟବହିତ ପୂର୍ବରୁ ତୋର ସହଯୋଗୀ ଓ ପରାମର୍ଶଦାତା ମାଇତିବାବୁ ଚ୍ଲିଗଲେ । ତୋ ପାଇଁ ମୋର ତାଙ୍କ ସହିତ ଭାବଦୋସ୍ତି । ତୋତେ ସେହି ବିଦାୟ ଦାରୁଣ ଧକ୍କା ଦେଲା ବୋଲି ଶୁଣିଲି । ମୁଁ ଦିଲ୍ଲୀରେ ଥାଏଁ ତେଣୁ ଏପରି ବନ୍ଧୁଙ୍କ ବିଦାୟ ଓ ତୋ ଉପରେ ସେ ସବୁଦିନିଆ ବିଚ୍ଛେଦର ଆଘାତ ମୁଁ ଜାଣିପାରିଲି ନାହିଁ। କିନ୍ତୁ ତୋତେ ଶେଷଦର୍ଶନ ପାଇଁ ଗଲାବେଳେ ସେଇଠି ଶୁଣିଲି । ମୁଁ ଅନୁଭବ କଲି ଓ ଅନୁମାନ କରିବା ସ୍ୱାଭାବିକ, ତୁ କେତେ କଷ୍ଟ ପାଇଥିବୁ ।

ଗୋଟିଏ କଥାରେ ଛଳନା କରି ଆସିଛୁ, ଅନ୍ତତଃ ମୁଁ ଅନୁଭବ କରେଁ। ଯେତେ ଦୁଃଖ ଥିଲେ ବି ମନରେ ମାରି ଆସିଛି । ପାରିବାରିକ ଦୁଃଖ ହେଉ, ବା ପ୍ରେସ୍ ଚଳାଇବାର ଆର୍ଥିକ ଦୁଃଖ ହେଉ । ଅଳ୍ପେ ଅଳ୍ପେ ମୋ ଆଗରେ ଲୁଚ୍ଇ ପାରିନାହୁଁ। କିନ୍ତୁ ସବୁ କଥା କ'ଣ କହିବା ଦରକାର !

କଲିକତାରୁ ଓଡ଼ିଶାକୁ ଫେରିଆସିଲୁ ତୁ–ହରେକୃଷ୍ଣ ମହତାବଙ୍କ କାଗଜକୁ ସୁପରିଚ୍ଳନା କରିବାକୁ କଟକରେ ରହିଲୁ । କିନ୍ତୁ ମନ କଲବଲ ହେଲା ଏକ ଆଧୁନିକ ପ୍ରେସ୍ ଓଡ଼ିଶାରେ କରିବୁ, ପୁଣି ସମାବେଶ ପ୍ରକାଶ କରିବୁ । ହାତରେ ଅର୍ଥ ନାହିଁ କିନ୍ତୁ ହିମାଳୟ ଡେଇଁବାର ସାହସ ।

ସେଇଆ ହିଁ କଲୁ । ସ୍ୱପ୍ନକୁ ସାକାର କରିବାରେ ଏକ ଧୁରନ୍ଧର ଯୋଦ୍ଧା । କ୍ୱାଲିଟି ପ୍ରେସ୍ ଋଣକରି ଆରମ୍ଭ କଲୁ ଭୁବନେଶ୍ୱରରେ । ଏକ ଉଚ୍ଚକୋଟୀର ଆଧୁନିକ ପ୍ରେସ୍

କରିବାରେ ଲାଗିଗଲୁ, ଏବଂ ଅନେକ ପରିମାଣରେ ସଫଳ ହେଲୁ। ନୂଆ ଢ଼ଙ୍ଗରେ ସମାବେଶ ପ୍ରକାଶ ପାଇଲା। ଭଲ ଉଚ୍ଚକୋଟୀର ଛାପା ଦରକାର ହେଲେ ସମସ୍ତେ ତୋ. କ୍ୱାଲିଟି ପ୍ରେସ୍ କଥା ଭାବିଲେ।

କିନ୍ତୁ ଯେଉଁ ମଣିଷ, ଅମାୟିକ ବନ୍ଧୁବତ୍ସଳ, ସେ କ'ଣ ନିଜକୁ ତାର କ୍ଷୁଦ୍ର ବ୍ୟବସାୟିକ ସଂସ୍ଥାରେ ବାନ୍ଧିହୋଇ ରହିପାରିବ ? ବନ୍ଧୁସାଙ୍ଗସାଥିଙ୍କ ସୁଖଦୁଃଖରେ ଲିପ୍ତଥାଉ। ଅନେକ ସମୟରେ କାମ ଥାଉ ବା ନଥାଉ କିଛିଦିନର ବ୍ୟବଧାନ ହୋଇଗଲେ ତୋ କଥା ମୋର ମନେପଡ଼େ । ଦୌଡ଼ିଯାଏ ତୋ ପାଖକୁ, ସୁଖ ଦୁଃଖ ହେବା ପାଇଁ, କିପରି ଅଛୁ ଜାଣିବା ପାଇଁ। କିନ୍ତୁ ସେ ସୁଯୋଗ ଆଉ ନ ଦେବାକୁ କାହିଁକି ଚାହିଁଲୁ ତୋତେ ହିଁ ଜଣା। ଜଣାଇଥିଲେ, କ'ଣ ତୋର ବା ମୋର କିଛି ଖରାପ ହୋଇଥାନ୍ତା।

ଆଜିକାଲି ଯୁଗରେ ସର୍ବତ୍ର ମଣିଷ ଭିଡ଼। ତୁ ପଳାଇଗଲୁ ବୋଲି ଶୁଣି ତୋ ଘରେ ମଧ୍ୟ ଭିଡ। ଭିଡକୁ ନିୟନ୍ତ୍ରଣ କରିବାକୁ ସର୍ବତ୍ର ଆଜିକାଲି ଧାଡ଼ିକରି "କ୍ୟୁ"ରେ ସମସ୍ତେ ଛିଡା ହେଉଛନ୍ତି। କିନ୍ତୁ ତୁ କାହିଁକି ସେ "କ୍ୟୁ" ର ଶୃଙ୍ଖଳା ମାନିଲୁନାହିଁ। ତୋ'ଠୁ ତୋ ସହିତ ସଂପର୍କ ରଖିଥିବା ବହୁ ଲୋକ ବୟସରେ ବଡ। "କ୍ୟୁ" ରେ ତୁ ତ ଅନେକଙ୍କ ପଛରେ ଠିଆ ହୋଇଥିଲୁ, ମୁଁ ମଧ୍ୟ ତୋ ଆଗରେ ଠିଆ ହୋଇଛି। ଏତେ କ'ଣ ଅଧୈର୍ଯ୍ୟ ହେଇଗଲୁ ଯେ ଧାଡିଭାଙ୍ଗି ଅମାନିଆ ହୋଇ ଆଗକୁ ଚାଲିଗଲୁ, ଆମେ ଜାଣି ବି ପାରିଲୁ ନାହିଁ।

ଯାହା କଲୁ କଲୁ, ବହୁତ ଲୋକଙ୍କ ମନରେ କଷ୍ଟ ଦେଲୁ। ସେ କଥାକୁ ଆଉ ବୋଧହୁଏ ପରବାଏ କଲୁନାହିଁ। ନହେଲେ ଚିଠି ଖଣ୍ଡିଏ ତ ଦେଇଥାନ୍ତୁ ଠିକଣା ଦେଇ। ପନ୍ଦର ପଇସାର ପୋଷ୍ଟକାର୍ଡ଼ ତୋ ପାଖରେ ନାହିଁ।

ହଉ, ତୁ ଖୁସିରେ ରହିଲେ ଆମେ ଖୁସି।



*ମାତାର ବଚନ ନ ମେଣ୍ଟିଲେ ଆୟୁ କ୍ଷୟହୁଏ।*
*ପିତାର ବଚନ ଭାଙ୍ଗିଲେ ଧର୍ମନାଶ ଯାଏ ॥*

# ସେପାରିରେ ବନ୍ଧୁ ଜଗଦୀଶ

ଗଣନାଥ ଦାସ

ସ୍ୱର୍ଗତ ଜଗଦୀଶବାବୁ ଆମ ଗାଁ ପାଖର। ତାଙ୍କ ସହିତ ପରିଚୟ ଓ ବନ୍ଧୁତା ବହୁକାଳର। ବୟସରେ ପନ୍ଦର ସତର ବର୍ଷ ବଡ଼ ହୋଇଥିଲେ ହେଁ ଜୀବନ ପଥର ଅଭିଜ୍ଞତା ତାଙ୍କଠାରୁ ଢେର ଊଣା ହେତୁ ଯେତେବେଳେ ପ୍ରୟୋଜନ ହୋଇଛି, ପରିବାରର ସୁବିଧା ଅସୁବିଧା, ବ୍ୟକ୍ତିଗତ କିଛି ସମସ୍ୟା ଆଦି ସବୁଥିରେ ତାଙ୍କ ଅମାୟିକ ସହାୟତା ଲାଭ କରିଥାଏ।

ସନ ୧୯୮୪ ମସିହା ଜାନୁୟାରୀରେ ଅଗ୍ରଜକ ସାମାନ୍ୟ ହୃଦରୋଗାକ୍ରାନ୍ତ ହୋଇ ଚିକିତ୍ସିତ ହେଉଥାଏଁ ଭୁବନେଶ୍ୱର ରାଜଧାନୀ ଡାକ୍ତରଖାନାରେ। ଏକଦା ସ୍ୱର୍ଗତ ବନ୍ଧୁ ସର୍ଦ୍ଦାର ସନ୍ତୋକ ସିଂ ଓ ଶ୍ରୀଯୁକ୍ତ ଜଗଦୀଶ ପାଣି ଏକତ୍ର ପହଞ୍ଚି ସାମାନ୍ୟ ଆଳାପ ଆଲୋଚନା ମଧ୍ୟରେ ଉଭୟେ ଯେପରି ସମସ୍ୱରରେ କହିଲେ ଭଲହୋଇ ଘରକୁ ବାହୁଡ଼ିଲା ପରେ ଆଗପରି ସାହିତ୍ୟ ସେବାରେ ମନୋନିବେଶ କର। ମାନସିକ ଶାନ୍ତି ଲାଭ କରିବ। ସଂତୋକ ସିଂ ଯୋଡିଦେଲେ ସନ୍ଥ କବୀରଙ୍କ ଜୀବନୀ ଓ ତାଙ୍କର ଭକ୍ତିରସପୂର୍ଣ୍ଣ ଭଜନକୁ ଓଡ଼ିଆ ଭାଷାରେ ରଚନା କରି ଆମ ଲୋକଙ୍କୁ ଜଣେଇବାକୁ ଚେଷ୍ଟାକଲେ ଭଲ ହୁଅନ୍ତା।

ମନେ ମନେ ହସିଲି ଡାକ୍ତରଖାନା ବେଡ଼ ଉପରେ ଶୋଇ କହିଲି– ଏ ଯାତ୍ରାରୁ ଉଦ୍ଧାର ପାଇଲେ ନିଶ୍ଚୟ କବୀରଙ୍କ ଆଶ୍ରୟ ନେବି। ହିନ୍ଦୀରେ ଇଂରେଜୀରେ ତାଙ୍କ ସାହିତ୍ୟ ସମ୍ଭାରର ସହାୟତା ମିଳିପାରିଲେ ନିଶ୍ଚୟ ଚେଷ୍ଟା କରିବି।

ଜଗଦୀଶବାବୁ ସ୍ୱଳ୍ପଭାଷୀ। କହିଲେ– ହଉ ମନେ ରହିଲା। ପ୍ରଭୁଙ୍କ କୃପାରୁ ଉକ୍ତ ଯାତ୍ରାରୁ ତ୍ରାହିଲାଭ ପରେ ମନ ବଳେଇଲି ସନ୍ଥ କବୀରଙ୍କ ଆଶ୍ରାନେବାକୁ। ବନ୍ଧୁ ସନ୍ତୋକ ସିଂଙ୍କ ଆନୁକୂଲ୍ୟରୁ କବୀରଙ୍କ ଜୀବନୀ ଓ ରଚନା ସମ୍ବଳିତ। କବୀର ଗ୍ରନ୍ଥାବଳୀ ଆଦି ବହୁ ଉପାଦେୟ ପୁସ୍ତକ ପାଇଁ ତହିଁରେ ମନୋନିବେଶ କଲି। ମଝିରେ ମଝିରେ ବନ୍ଧୁ ଜଗଦୀଶଙ୍କ ପ୍ରରୋଚନା ମତେ ଆଗେଇନେଇ ଚାଲିଥାଏ।

ଉକ୍ତ ବନ୍ଧୁଦ୍ୱୟଙ୍କ ଆନୁକୂଲ୍ୟରୁ ସନ ୧୯୮୬ରେ ମୋର "କବୀର" ଶୀର୍ଷକ ଓଡ଼ିଆ ପୁସ୍ତକ ବନ୍ଧୁ ଜଗଦୀଶ ପାଣିଙ୍କ "ସମାବେଶ ପ୍ରକାଶନୀ" ଦ୍ୱାରା ପ୍ରକାଶିତ ହେଲା। ତହିଁରେ ଉକ୍ତ ମହାନ୍ ସନ୍ଥଙ୍କର ଜୀବନୀ ବ୍ୟତିରେକେ ତାଙ୍କର ବ୍ରହ୍ମଜ୍ଞାନପୂର୍ଣ୍ଣ ଅଗାଧ ଭଜନାବଳୀ ମଧ୍ୟରୁ ଏକାବନଟିର ଓଡିଆ ପଦ୍ୟାନ୍ତର ସନ୍ନିବେଶିତ ହୋଇଥିଲା।

ଇତ୍ୟବସରରେ ମୁଁ ଅନୁଭବ କରିପାରିଥିଲି ସନ୍ଥ କବୀରଙ୍କ ପ୍ରକୃତ ପରିଚୟ ପାଇବାକୁ ତାଙ୍କର ଅଗାଧ ଭଜନ ଓ ଦୋହାରୁ ଯେପରି ସମ୍ଭବ ଅନ୍ୟ କେଉଥିରୁ ନୁହେଁ। ବନ୍ଧୁ ଜଗଦୀଶବାବୁ ମତେ ଏ ଦିଗରେ ହାର୍ଦ୍ଦିକ ପ୍ରୋତ୍ସାହନ ଦେଇ ତୁରନ୍ତ ତାହା କରିବାକୁ କହିଥିଲେ।

ଉତ୍ସାହିତ ହୋଇ ବର୍ଷକ ମଧ୍ୟରେ ଅନ୍ୟ ଏକଶତ ଭଜନ ଓ ଏକଶତ ଦୋହାର ଓଡ଼ିଆ ପଦ୍ୟାନ୍ତର କରିପାରିଥିଲି। ଏହିପରି ସମୟରେ ମୋର ଏକଦା ଅନ୍ୟ କୌଣସି କାର୍ଯ୍ୟବଶତଃ ଏବଂ ମୋର 'କବୀର' ପୁସ୍ତକଟିଏ ସଦାଶ୍ରୟ ଶ୍ରୀଯୁକ୍ତ ଡଃ ରାଧାନାଥ ରଥଙ୍କୁ ଭେଟି ଦେବାକୁ ମନସ୍ଥ କରି ଗୋପବନ୍ଧୁ ସାହିତ୍ୟ ମନ୍ଦିରକୁ ଗଲି। ଘଟଣାକ୍ରମେ ମୋର ଅନ୍ୟ ପୁସ୍ତକ "କବୀର ଶତକ"ର ପାଣ୍ଡୁଲିପିଟି ହାତରେ ଥାଏ। ଉକ୍ତ ବିଷୟ ଡଃ ରଥଙ୍କୁ ଜଣାଇବାରେ ସେ ଆଶାତୀତ ଭାବରେ ତହିଁରେ ଆଗ୍ରହୀ ହୋଇ "କବୀର ଶତକ" ପୁସ୍ତକଟିକୁ ସ୍ୱୟଂ ଗୋପବନ୍ଧୁ ସାହିତ୍ୟ ମନ୍ଦିର ତରଫରୁ ପ୍ରକାଶ କରିବାକୁ ସିଦ୍ଧାନ୍ତ ଜଣାଇଲେ। ଏବଂ ପାଣ୍ଡୁଲିପିଟିକୁ ପ୍ରେସ୍ ମ୍ୟାନେଜରଙ୍କ ହାତକୁ ବଢ଼ାଇଦେଲେ।

ଗତ୍ୟନ୍ତର ହୋଇ ମୁଁ ଡଃ ରଥଙ୍କ ଠାରୁ ବିଦାୟ ନେଇ କଟକରୁ ଫେରିବା ବାଟରେ କ୍ୱାଲିଟି ପ୍ରେସ୍ ପରିସର ମଧ୍ୟରେ ବନ୍ଧୁ ଜଗଦୀଶ ପାଣିଙ୍କୁ ସମସ୍ତ ଜଣାଇଥିଲି। ବନ୍ଧୁ ଜଗଦୀଶବାବୁ ହୃଦୟଖୋଲା ହସୁ ହସୁ କହିଲେ– ବୁଢ଼ାଙ୍କୁ (ଡଃ ରଥଙ୍କୁ) ଆମେ ସମସ୍ତେ ଗଭୀର ମାନ୍ୟତା ପ୍ରଦାନ କରୁଁ। ତାଙ୍କ ଅନୁରୋଧ ଆଦେଶ ସଦୃଶ। ବିଶେଷକରି ପାଣ୍ଡୁଲିପିଟିକୁ ନିଜସ୍ୱ କରିନେଲା ପରେ ଅନ୍ୟଥା କରଣୀୟ ନୁହେଁ।

ଜଗଦୀଶବାବୁଙ୍କର ଏତାଦୃଶ ହୃଦୟବତ୍ତା ସହିତ କେବଳ ବନ୍ଧୁଭାବରେ ମୁଁ ନୁହେଁ ଯେ କେହି ତାଙ୍କ ସଂସ୍ପର୍ଶରେ ଆସିଛି ଜାଣିଛି। ଏ ରୂପ ବନ୍ଧୁବତ୍ସଳ ହୃଦୟବାନ ମହାନ୍ ବ୍ୟକ୍ତି ଥିଲେ ଜଗଦୀଶବାବୁ। କଲିକତାର ଓ ଏଠାର ଅଗଣିତ ତାଙ୍କର ବନ୍ଧୁ ଏହା ମୁକ୍ତ କଣ୍ଠରେ ସ୍ୱୀକାର କରିବେ।

ଏବେ ଖବରକାଗଜମାନଙ୍କରେ ପ୍ରକାଶିତ ତାଙ୍କର ମରଣୋତ୍ତର ମୁହଁରେ ହସର ଯେଉଁ ଝଲକ ଲକ୍ଷ୍ୟ କରିଥିଲି ତାହା ମତେ ଅଭିଭୂତ ଭାବ ବିହ୍ୱଳିତ କରିଥିଲା। ତାଙ୍କ ସ୍ୱର୍ଗତ ଆତ୍ମାର ମୋକ୍ଷପ୍ରାପ୍ତି ଅନିବାର୍ଯ୍ୟ।

ଶୁଣିଲି କ୍ୱାଲିଟି ପ୍ରେସ୍‌ର ଜଗଦୀଶବାବୁଙ୍କର ଏକାନ୍ତ ବିଶ୍ୱସ୍ତ ସହକର୍ମୀ ମାଇତିବାବୁଙ୍କ ବିୟୋଗର ଏକାଦଶ ଦିନ ଜଗଦୀଶବାବୁଙ୍କର ବିୟୋଗ। ଆଉ କ'ଣ ଦୁଇ ସହକର୍ମୀ ବନ୍ଧୁ ଡକାଡକି ହୋଇ ଆଗପଛ ଭାବରେ ବିଦାୟ ନେଲେ କି ?

ଅତ୍ୟନ୍ତ ଅମାୟିକ ଥିଲେ ଜଗଦୀଶବାବୁ। ଏହି ଅବସରରେ ତାଙ୍କର ସ୍ୱର୍ଗତ ଆତ୍ମା ପ୍ରତି ବିନମ୍ର ପ୍ରଣତି ଜଣାଉଛି।



# ଶ୍ରଦ୍ଧାଞ୍ଜଳି

## କ୍ଷୀରୋଦ ପରିଡ଼ା

ପ୍ରାୟ ଚାଳିଶ ପଚାଶ ଦଶକରେ ଯେଉଁ ପ୍ରତିଭାବାନ ବ୍ୟକ୍ତିମାନେ କଲିକତାରେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ସହିତ ଜଡ଼ିତ ଥିଲେ ସେମାନଙ୍କ ମଧ୍ୟରୁ ଅଧିକାଂଶ ପରବର୍ତ୍ତୀ କାଳରେ ଓଡ଼ିଶା ଫେରିଆସି ପ୍ରତ୍ୟକ୍ଷ ରାଜନୀତି ସହିତ ସଂପୃକ୍ତ ହୋଇଛନ୍ତି । ଓଡ଼ିଶାକୁ ଫେରି ବହୁ ପ୍ରବୀଣ ରାଜନୈତିକ ବ୍ୟକ୍ତିଙ୍କ ସାହଚର୍ଯ୍ୟ ପାଇ ସୁଦ୍ଧା ଜଗଦୀଶ ପାଣି କିନ୍ତୁ ସେମାନଙ୍କ ଭିତରେ ଥିଲେ ବ୍ୟତିକ୍ରମ ।

ଓଡ଼ିଶାରୁ ପ୍ରକାଶ ପାଉଥିବା ସାହିତ୍ୟ ପତ୍ରିକା ଗୁଡ଼ିକ କୌଣସି କୌଣସି କାରଣରୁ କିଛି ଦିନ ପ୍ରକାଶିତ ହେବାପରେ ଯେତେବେଳେ ନିସ୍ପନ୍ଦ ହୋଇ ଯାଉଥିଲା ସେତେବେଳେ କଲିକତାରୁ ପ୍ରକାଶ ପାଉଥିବା କଳନା, ଆସନ୍ତାକାଲି ଓ ନବରବି ପ୍ରଭୃତି ପତ୍ରିକା ଗୁଡ଼ିକ ଗୁଣାତ୍ମକ ଓ ନିୟମିତତା ଦୃଷ୍ଟିରୁ ଶ୍ରେଷ୍ଠତ୍ୱ ଲାଭ କରିଥିଲେ । ଏସବୁ ଏବେ ନୀରବ । କଲିକତାରୁ ଜନ୍ମ ନେଇ ଓଡ଼ିଶା ମାଟିରେ ଠିଆ ହୋଇଛି ଏଯାବତ୍ ଆୟୁଷ୍ମାନ "ସମାବେଶ" । ଏମାନଙ୍କ ଭିତରେ 'ସମାବେଶ' ଏକ ବ୍ୟତିକ୍ରମ ।

ଜଣେ ସୃଜନଶୀଳ ଲେଖକ ନହୋଇ ଏକ ପ୍ରତିଷ୍ଠିତ ସାହିତ୍ୟ ପତ୍ରିକାର ସଂପାଦନା କ୍ଷେତ୍ରରେ ଯେଉଁ ପରାକାଷ୍ଠା ଦେଖାଇଛନ୍ତି ତାହା ବିରଳ । 'ସମାବେଶ'ର ବିଭିନ୍ନ ବିଭାଗରେ ପ୍ରତିଷ୍ଠିତ ସାହିତ୍ୟିକମାନଙ୍କ ସୌଜନ୍ୟ ସହଯୋଗ, ତାଙ୍କର ନିଜସ୍ୱ ରୁଚି ଓ ମୁଦ୍ରଣ କଳାରେ ନୈପୁଣ୍ୟତା ସମାବେଶକୁ ମର୍ଯ୍ୟାଦାବନ୍ତ କରିଛି । ଲେଖକମାନଙ୍କ ସମାବେଶରେ ସେ ଥିଲେ ସଂପାଦକ, ସମ୍ପାଦକମାନଙ୍କ ଭିତରେ ଥିଲେ ସମ୍ମାନସ୍ପଦ ।

ଓଡ଼ିଆ ସାହିତ୍ୟ ପତ୍ରିକାର ଭିତର ପୃଷ୍ଠାରେ ମୋର କୃତି ସ୍ଥାନିତ ହେବାର ପୂର୍ବରୁ ବହୁ ପ୍ରତିଷ୍ଠିତ ପତ୍ରିକାର ପ୍ରଚ୍ଛଦରେ ମୋର ବିନ୍ଦୁ ଓ ରେଖାର କୃତି ପ୍ରକାଶିତ ହୋଇସାରିଥାଏ । କଲିକତାରୁ ଫେରି ୧୯୮୪ ଫେବୃୟାରୀରେ ବନ୍ଧୁ ଅସିତ୍ ମହାନ୍ତିଙ୍କ ସୌଜନ୍ୟରେ ପ୍ରକାଶପାଏ ମୋର ଏକ ଛବି ସମାବେଶର ପ୍ରଚ୍ଛଦ ଭାବରେ । ତା' ପରଠୁ ଜଗଦୀଶ ବାବୁଙ୍କ ସହିତ ପରିଚୟ ହୁଏ ଜଣେ ଶିଳ୍ପୀ ଭାବରେ । ମୋ କବିତା ସଂପର୍କରେ ଜାଣିଲେ ଗତ ଅପ୍ରେଲ ୯୪ରେ । ଖୁସି ହେଲେ । ଅନେକ ଶୁଭକାମନା ସହ ଡ଼ାଏରୀରେ

ଠିକଣା ଟିପିଲେ; ମୋ ଘରେ ଆସି ପହଞ୍ଚିବେ ବୋଲି କହିଲେ । ସେଦିନର କଥାବାର୍ତ୍ତାରେ ତାଙ୍କୁ ଅଲଗା ଭାବରେ ଅନୁଭବ କଲି ।

ଗତ ସପ୍ତାହରେ ଅନୁଜପ୍ରତିମ ଡ଼ଃ ପ୍ରକାଶ ପରିଡ଼ାଙ୍କ ସହିତ ମିଳିତ ଭାବରେ 'ସାହିତ୍ୟ-ସଂପାଦକ' ଶୀର୍ଷକ ଏକ ଗବେଷଣାମୂଳକ ନିବନ୍ଧ ପ୍ରସ୍ତୁତିର ଶେଷ ପର୍ଯ୍ୟାୟରେ କେତେଜଣ ବରିଷ୍ଠ ସଂପାଦକଙ୍କ ସହିତ ସାକ୍ଷାତକାରର ଆବଶ୍ୟକତା ନେଇ ଆଲୋଚନାରେ ସ୍ଥିର କଲୁ ସେମାନଙ୍କ ସାକ୍ଷାତକାର ପାଇଁ । ଗୋଟିଏ ପ୍ରତିଷ୍ଠିତ ସାହିତ୍ୟ ପତ୍ରିକାର ଆରମ୍ଭକାଳରୁ ଥିବା ସଂପାଦକଙ୍କ ଭିତରେ ସେ ଥିଲେ ବୟୋଜ୍ୟେଷ୍ଠ ବ୍ୟକ୍ତି; ଥିଲେ ଆମ ହାତ ପାହାନ୍ତରେ । ସେଥିରେ ଘଟିଥିଲା ବ୍ୟତିକ୍ରମ । ସେ ସାକ୍ଷାତକାର ଲିପିବଦ୍ଧ ହୋଇଥିଲେ ତାଙ୍କର ବ୍ୟକ୍ତିଗତ ମତାମତ ଓ ଅନୁଭୂତି ସାହିତ୍ୟ ସଂପାଦନା କ୍ଷେତ୍ରରେ ଏକ ମୂଲ୍ୟବାନ ସଂଯୋଜକ ହୋଇଥାନ୍ତା !

ସେଇ ବିଦାୟୀ ଅଥଚ କାଳଜୟୀ ଆତ୍ମା ପ୍ରତି ଜଣାଉଛି ଗଭୀର ଶ୍ରଦ୍ଧାଞ୍ଜଳି ।



| | |
|---|---|
| *ସାଧୁ ସଜ୍ଜନ ସଙ୍ଗତରେ* । | *ଧନ୍ୟ ଯେ ନିତ୍ୟ ବାସକରେ ।* |
| *ସଜ୍ଜନ ସଙ୍ଗେ ସଦା ରହି* । | *ପବିତ୍ର କର ଏହି ମହୀ* । |
| *ଦୁର୍ଜନ ସଙ୍ଗେ କଲେ ବାସ* । | *ନିଶ୍ଚେ ଘଟିବ ସର୍ବନାଶ* । |
| *ସର୍ପ ସମାନ ଭୟଙ୍କର* । | *ଦୁର୍ଜନ ଜନେ ପରିହର* । |

# ଜଗଦୀଶ ବଡ଼ବାପା ଆଉ ଇହଜଗତରେ ନାହାନ୍ତି

## ବିଦ୍ୟାଧର ରାଉତ (ବୈଦ୍ୟ)

୧୯୯୪ ମସିହା ସେପ୍ଟେମ୍ବର ୨ ତାରିଖ ଶୁକ୍ରବାର ପ୍ରାୟ ୧୧ଟା ସମୟରେ ହଠାତ୍ ମୋ ପାଖକୁ ଏକ ଟେଲିଫୋନ୍ କରି ତାଙ୍କର କ୍ୱାଲିଟି ପ୍ରେସ୍‌ର ଜଣେ କର୍ମଚ୍ୱରୀ ମୋତେ ଜଣାଇଲେ ଜଗଦୀଶବାବୁ ଆଉ ଇହଜଗତରେ ନାହାନ୍ତି । ପୁଣି ତାଙ୍କର ଜଣେ କର୍ମଚ୍ୱରି ମିତ୍ରବାବୁ ଆସି କହିଲେ ପାଣିବାବୁ ଗ୍ୱଲିଗଲେ ବୋଲି, ମୁଁ କିଛି କଳ୍ପନା କରିପାରିଲିନି । ସେହି ସମୟରେ ମୋର ଆଖିରୁ ଦୁଇଧାର ଅଶ୍ରୁ ବହିବାରେ ଲାଗିଲା । ହଠାତ୍ ଯାଇ ପ୍ରେସ୍‌ରେ ପହଞ୍ଚିଲି । ତାଙ୍କର ବାସଭବନର ଉପରମହଲାର ବାରଣ୍ଡାରେ ଏକ ଖଟିଆରେ ଶୋଇରହି ସେ ଚିରନିଦ୍ରା ଯାଇଥିଲେ । ମୋର ଆତ୍ମବିଶ୍ୱାସ ହେଲା ଯେ'କି ଜଗଦୀଶ ପାଣି ମୃତ ବୋଲି । କାରଣ ତା' ଗ୍ୱରିଦିନ ପୂର୍ବରୁ ମୋ ପାଖକୁ ଆସିଥିଲେ । କହିଲେ ଆସିଥିଲି ତୋତେ ଦେଖିବାକୁ । କ'ଣ ବେପାର ଭଲ ଗ୍ୱଲିଛି ତ ? ମୁଁ କହିଲି ହଁ ସେହିଭଳି । ମୋତେ ଆଶୀର୍ବାଦ କରି କହିଲେ ତୁ ମୋର ଅତି ଆଦରର ଏବଂ ତୋତେ ବହୁତ ବ୍ୟକ୍ତିଗତ ଭାବେ ଭଲପାଏ ବୋଲି ପୁଣି କହିଲେ ମୁଁ ଆଶୀର୍ବାଦ କରୁଛି ତୁ ଜଣେ ସମାଜରେ ବଡ଼ ଲେଖକ ହେବୁ ଏବଂ ଆମ ଅଞ୍ଚଳର ନା ରଖିବୁ ।

ସବୁଦିନ ପରି ନିରଳସ ମୁଖଟି ମୋ ଆଖିରେ ଦେଖାଯାଉଛି । ଜଗଦୀଶ ପାଣି ମୋର ଅତି ପ୍ରିୟ ଥିଲେ ଏବଂ ମତେ ବହୁ ଆଦର କରୁଥିଲେ । ଯେଉଁ ସମୟରେ ଯାଏ ଖାଇବାକୁ ଦିଅନ୍ତି ତାହା ସହିତ ବହୁ କଥା ଆଲୋଚନା କରନ୍ତି । ପ୍ରତ୍ୟେକ ସମୟରେ କହୁଛନ୍ତି ଏ ସମାଜରେ ଧନକୁ ପିୟାର ନକରି ମନକୁ ପିୟାର କର । ପୁଣି କହନ୍ତି ଧନ ଓ ଯୌବନ ମାତ୍ର କ୍ଷଣକ ପାଇଁ । ମତେ ପଢ଼ିବାକୁ ବହୁ ବହି ଦିଅନ୍ତି ବହୁ ଲେଖା ଦେବାକୁ କୁହନ୍ତି । ମୁଁ କିଛି କିଛି ଲେଖା ତାଙ୍କୁ ଦିଏ । ମୋ ବ୍ୟକ୍ତିଗତ କିଛି ମନ ଖରାପ ହୁଏ ବା ଦୁଶ୍ଚିନ୍ତା ପଡ଼େ ତାଙ୍କ ପାଖକୁ ଯାଏ ଏବଂ ବହୁ କଥା ଆଲୋଚନା ପରେ ମନଟା ପରିବର୍ତ୍ତନ ହୋଇଯାଏ । ପ୍ରତ୍ୟେକ ସମୟରେ ମତେ ତାଙ୍କର ନିଜ ସାନପୁଅ ଭଳି ଦେଖନ୍ତି । ପ୍ରାୟ ସମୟରେ ମତେ ବହୁ ବିଷୟ ଉପରେ ପରାମର୍ଶ ଦିଅନ୍ତି । ମୋ ପାଇଁ ଏବଂ ଆମ ପରିବାରଙ୍କ ପାଇଁ ତାଙ୍କର ଥିଲା ଅକପଟ ମମତା । ସେ ଜଣେ ସମାଜର ଦକ୍ଷ ସଂଗଠକ । କଲିକତାରୁ ଆରମ୍ଭ କରି ଓଡ଼ିଶାର ଭୁବନେଶ୍ୱରଯାଏ ସେ ଦକ୍ଷତାର ସହିତ ତାଙ୍କର

କର୍ତ୍ତବ୍ୟ ପାଳନ କରି ଆସୁଥିଲେ। କଲିକତାରୁ "ସମାବେଶ" ପତ୍ରିକା ପ୍ରକାଶ କରି ବହୁ ସଫଳତା ଅର୍ଜନ କରିଥିଲେ। ଓଡ଼ିଶାର ଲୋକ ଜଗଦୀଶବାବୁ କଲିକତାରେ ରହି ସେଠାରେ ମଧ୍ୟ ଲେଖକଙ୍କ ପାଖରେ ପ୍ରିୟପାତ୍ର ହୋଇପାରିଥିଲେ। କଲିକତାରେ ରହଣି ସମୟରେ ପ୍ରଜାତନ୍ତ୍ରର ସାମ୍ବାଦିକଭାବରେ କାର୍ଯ୍ୟ କରିଆସୁଥିଲେ। ପୁଣି କଟକସ୍ଥିତ ଡକ୍ଟର ହରେକୃଷ୍ଣ ମହତାବଙ୍କର ଦୈନିକ ପ୍ରଜାତନ୍ତ୍ରର ଜେନେରାଲ ମ୍ୟାନେଜର ଥିଲେ ଏବଂ ମହତାବବାବୁଙ୍କର ଆତ୍ମୀୟ ଥିଲେ। ପ୍ରଜାତନ୍ତ୍ର ପ୍ରକାଶ ପାଉଥିବା କାଗଜଟିକୁ ଜନସାଧାରଣଙ୍କ ପାଖରେ ଲୋକପ୍ରିୟ କରାଇଥିଲେ।

କଲିକତାସ୍ଥିତ ଉତ୍କଳ ସମାଜର ସେ ଜଣେ ପ୍ରମୁଖ ଉଦ୍ୟୋକ୍ତା ଓ ସେଠାରେ ପ୍ରକାଶ ପାଉଥିବା ଓଡ଼ିଆ ପତ୍ରିକା ଆସନ୍ତାକାଲି ସହ ସେ ଘନିଷ୍ଠ ଭାବେ ଜଡ଼ିତ ଥିଲେ। ସମାବେଶକୁ କଲିକତାରୁ ଓଡ଼ିଶାକୁ ସ୍ଥାନାନ୍ତରିତ କରି ଭୁବନେଶ୍ୱରରେ ତାର ପୁନଃ ପ୍ରକାଶନ ଦାୟିତ୍ୱ ତୁଲାଇ ଆସୁଥିଲେ। ତା'ପରେ ଏକ ଆଧୁନିକ ମୁଦ୍ରଣଯନ୍ତ୍ର ସ୍ଥାପନ କରି ପ୍ରୟାସ ହୋଇ କ୍ୱାଲିଟି ପ୍ରେସ୍ ପ୍ରତିଷ୍ଠା କରି ଏବଂ ବହୁ କର୍ମଚାରୀଙ୍କୁ ନିଜ ପାଖରେ ରଖି ତା ସହିତ ସମସ୍ତଙ୍କୁ ନିଜର ବୋଲି ଭାବନ୍ତି। ସେଥିରେ ଅନେକ ସଫଳତା ହୋଇପାରିଥିଲେ। ସଙ୍ଗେ ସଙ୍ଗେ କ୍ୱାଲିଟି ପ୍ରେସ୍ ତାର ନାମକରଣ ବଜାଇ ରଖିଥିଲେ। ପାଣିବାବୁ ଥିଲେ ଅତ୍ୟନ୍ତ ଗମ୍ଭୀର, ଶାନ୍ତ ଓ ସହନଶୀଳ ବ୍ୟକ୍ତି । ବହୁ ବେକାର ଯୁବକଙ୍କୁ ଚାକିରି କରାଇଦେଉଥିଲେ।

ଜଗଦୀଶ ପାଣିଙ୍କ ସହ ମୋର ବ୍ୟକ୍ତିଗତ ସମ୍ପର୍କଥିଲା। ତାହା ସହିତ ମୋର ପିତା ନରହରିଙ୍କୁ ପ୍ରଜାତନ୍ତ୍ରର କଟକ ସହର ଏଜେଣ୍ଟ ରୂପେ ନିଯୁକ୍ତି କରାଇଥିଲେ। ନରହରିବାବୁ ପ୍ରଜାତନ୍ତ୍ରର ଅଠର ବର୍ଷକାଳ ଏଜେଣ୍ଟ ଦାୟିତ୍ୱ ତୁଲାଇଥିଲେ। ମୁଁ ମଧ୍ୟ ସେଥିରେ ଜଡ଼ିତ। ମୋର ପିତାଙ୍କୁ ପ୍ରଜାତନ୍ତ୍ରର ଏଜେଣ୍ଟ ଦାୟୀତ୍ୱ ଦେବାପରେ ଆମେ ଆଜି ସମାଜରେ ମୁଣ୍ଡ ଟେକିଛୁ-କେବଳ ସେତିକି ନୁହେଁ ଅନେକ ସାହାଯ୍ୟ କରିଛନ୍ତି। ଯଦି ପାଣିବାବୁ ଏଜେଣ୍ଟ ଦାୟୀତ୍ୱ ଦେଇନଥାନ୍ତେ ଆମେ ବି ସମାଜରେ ଗଣନା ହେବା କଷ୍ଟକର ହୋଇପାରିଥାନ୍ତା। ଜଗଦୀଶବାବୁ କେବଳ ସାହାଯ୍ୟ କରିନାହାନ୍ତି ଦାନ ମଧ୍ୟ ଦେଇଛନ୍ତି। ମତେ ଏତେ ଭଲ ପାଆନ୍ତି ଯେ'କି ସେ ଯିବା ପୂର୍ବରୁ ବ୍ୟକ୍ତିଗତ ହିସାବରେ ମତେ ମୁଁ ବ୍ୟବସାୟ କରୁଥିବା ଅଶୋକା ମାର୍କେଟ ସ୍ଥିତ ନିକଟରେ ଦେଖାକରିଥିଲେ ଅନେକ କାହାଣୀ ବୁଝାଇଥିଲେ।

ମୋର ମନେହେଉଛି ସେ ମରିନାହାନ୍ତି ଜୀବିତ ଅଛନ୍ତି। ପାଣିବାବୁ ବର୍ତ୍ତମାନ ମୋ ଆଖିଆଗରେ ନାଚୁଛନ୍ତି କହିଲେ ବି ଚଳେ। ସେ ହୃଦ୍‌ରୋଗରେ ପୀଡ଼ିତ ଥାଇ ମଧ୍ୟ ବହୁ ଲୋକଙ୍କ ପାଖକୁ ଯାଇ ଦେଖାକରୁଥିଲେ ଏବଂ ବହୁ ଦୂରଦୂରାନ୍ତକୁ ଫୋନ୍ ଯୋଗେ ଯୋଗାଯୋଗ କରୁଥିଲେ। ପାଣିବାବୁ ସମାଜରେ ବସବାସ କରୁଥିବା ଲୋକମାନଙ୍କ ପାଖରେ ପ୍ରିୟପାତ୍ର ହୋଇଥିଲେ।

ପାଣିବାବୁଙ୍କ କେନ୍ଦ୍ରାପଡ଼ା ଜିଲ୍ଲାସ୍ଥିତ ପଟ୍ଟାମୁଣ୍ଡାଇ ବ୍ଲକ୍‌ର ଅନୋଳିଟରାଗ୍ରାମରେ ଜନ୍ମ ଗ୍ରହଣ କରି ଓଡ଼ିଶାର ରାଜଧାନୀସ୍ଥିତ ଭୁବନେଶ୍ବରରେ ରହି ଚଳିତ ୧.୯.୯୪ରିଖରେ ତିରୋଧାନ ହେଲା। ତାଙ୍କର ତିରୋଧାନ ସମ୍ବାଦ ଖବର ଆଜି ମତେ ଯେତିକି ମର୍ମାହତ କରିଛି ସମାଜକୁ ସେତିକି ମର୍ମାହିତ କରିଛି।

ମୁଁ ବର୍ତ୍ତମାନ ଅନୁଭବ କରୁଛି ମୋର ଜଣେ ଅତି ପ୍ରିୟ ବ୍ୟକ୍ତିଙ୍କୁ ମୁଁ ହରାଇ·ବସିଲି। ଜଗଦୀଶ ପାଣି ଆଉ ନାହାନ୍ତି। ତାଙ୍କର ପୁଅ ଟୁଟୁବାବୁ ଉକ୍ତ ପ୍ରେସ୍‌କୁ ଦାୟିତ୍ୱ ତୁଲାଇ ତାଙ୍କ ବାପାଙ୍କର ନାମ ରଖିବାକୁ କମର ଭିଡ଼ନ୍ତୁ। କାହାରି ବା ପରକଥାରେ ବିଚଳିତ ନ ହୋଇ କ୍ୱାଲିଟି ପ୍ରେସ୍‌କୁ ଏବଂ ସମାବେଶଙ୍କୁ ବଞ୍ଚାଇ ରଖନ୍ତୁ ଏବଂ ରଖିବେ ବୋଲି ଦୃଢ଼ ବିଶ୍ୱାସ।

ପାଣିବାବୁ ଆଜି ଆଉ ନାହାନ୍ତି। ୧୯୯୪ ମସିହା ସେପ୍ଟେମ୍ବର ୨ ତାରିଖ ପ୍ରତ୍ୟୁଷରୁ ସେ ଆଉ ବିଛଣାରୁ ଉଠିନାହାନ୍ତି। କେବଳ ଶୋଇ ରହିଛନ୍ତି।

ଭଗବାନ୍‌ଙ୍କ ପାଖରେ ପ୍ରାର୍ଥନା କରୁଛୁ ତାଙ୍କର ଅମର ଆତ୍ମା ସଦ୍‌ଗତି ହେଉ॥



*ପ୍ରୟାଣକାଳେ ମନସାଚଳେନ,*
*ଭକ୍ତ୍ୟା ଯୁକ୍ତୋ ଯୋଗବଳେନ ଚୈବ।*
*ଭ୍ରୁବୋର୍ମଧ୍ୟେ ପ୍ରାଣମାବେଶ୍ୟ ସମ୍ୟକ୍,*
*ସ ତଂ ପରଂ ପୁରୁଷମୁପୈତି ଦିବ୍ୟଂ।*

# ଶେଷଦେଖା

## ବିରାଜ ମୋହନ ଦାସ

୧୯। ୬ ମସିହା କଥା। ଭୁବନେଶ୍ୱରରେ ଅନୁଷ୍ଠିତ ହେଉଥିବା ଗୋଟିଏ ସାହିତ୍ୟ ସଭାରେ ତାଙ୍କ ସହିତ ମୋର ପ୍ରଥମ ଦେଖା। ଆଗରୁ ନାଁ ସହିତ ପରିଚିତ ଥିଲି ସିନା 'ସମାବେଶ' ମାଧ୍ୟମରେ, କିନ୍ତୁ ଦେଖାସାକ୍ଷାତ ହୋଇନଥିଲା। ମୋପାଖରେ ବସିଥିବା କେତେଜଣ ସାହିତ୍ୟିକ ସେତେବେଳେ ଅନିୟମିତ ହୋଇଯାଇଥିବା 'ସମାବେଶ'ର ପ୍ରକାଶନ ବିଷୟରେ ଉଦ୍‌ବେଗ ପ୍ରକାଶ କଲେ ତାଙ୍କଠାରେ। ତାଙ୍କର ଜଣେ ସୁହୃଦ୍ ତଥା ମୋର ଆତ୍ମୀୟ ତାଙ୍କୁ ଥଟ୍ଟାରେ ଏଥିପାଇଁ ଗାଳି ଦେଇ କହିଲେ, ତୁମର ପଇସା ଦରକାର। ଆଉ ସାହିତ୍ୟରୁ କ'ଣ ମିଳିବ ?' ସେ ଏଥିରେ ରାଗିନଯାଇ ହସି ହସି କହିଲେ, 'ତୁମେ ତ ଖାଲି କଥା କହିବ। ଦେଲ ମୋତେ ଗୋଟାଏ ପିଲା ଠିକ୍ କରି, ଯିଏ ମୋତେ ସମାବେଶ ପ୍ରକାଶ କରିବାରେ ସାହାଯ୍ୟ କରିବ। ତାର ଆଉ କିଛି ଥାଉ ନଥାଉ ସାହିତ୍ୟ ପ୍ରତି ଅନୁରାଗ ଥିବା ଦରକାର। ମୁଁ ପରା ଏବେ ହାତ ବାନ୍ଧି ପଡ଼ିଛି। ମୋତେ ଏଥିରେ ସାହାଯ୍ୟ କରୁଥିବା ପିଲାଟି ସଂସ୍ଥା ଛାଡ଼ି ଚାଲିଯାଇଛି।' ତାଙ୍କ ସହିତ କଥା ହେଉଥିବା ମୋର ସେହି ଆତ୍ମୀୟ ଜଣକ ମୋ ସହିତ ପରିଚୟ କରାଇଦେଇ କହିଲେ, 'ଇଏ ତୁମକୁ ସାହାଯ୍ୟ କରିବ। ସେ ଉତ୍କଳ ବିଶ୍ୱବିଦ୍ୟାଳୟ ଅଫିସରେ କାମ କରେ। ପ୍ରତିଦିନ ଅଫିସ ପରେ ସାଢେ ପାଞ୍ଚଟା ବେଳେ ତୁମ ପାଖରେ ପହଞ୍ଚୁଥିବ। ତାକୁ, ତୁମେ କାମରେ ଲଗାଅ।' ସେଇଠି କଥାବାର୍ତ୍ତା ହୋଇଗଲା। ପରଦିନ ମୁଁ ତାଙ୍କ ପାଖରେ ପହଞ୍ଚିଥିଲି। ପାଖାପାଖି ଦୁଇବର୍ଷ ତାଙ୍କ ସହିତ ମିଶି 'ସମାବେଶ' ପତ୍ରିକା ପାଇଁ କାମ କରିଛି। ପରେ ପରେ ବ୍ୟକ୍ତିଗତ କାରଣରୁ ଆଉ ନିୟମିତ ଯାଇପାରିନି କିନ୍ତୁ ମଝିରେ ମଝିରେ ତାଙ୍କ ପାଖକୁ ଯାଏ।

ସେଇ ଦୁଇବର୍ଷ ଧରି ତାଙ୍କ ସଂସର୍ଗରେ ଆସିବା ହେତୁ ଯେଉଁ ଅନ୍ତରଙ୍ଗତା, ସମ୍ପର୍କର ଯେଉଁ ଘନିଷ୍ଠତା ତାଙ୍କ ମୋ ଭିତରେ ଗଢିଉଠିଥିଲା ତାହାରି ଦ୍ୱାରା ମୁଁ ଟାଣି ହୋଇଯାଏ ତାଙ୍କ ପାଖକୁ ତାଙ୍କରି ସାନ୍ନିଧ୍ୟ ପାଇଁ ମାସେ ଦୁଇମାସରେ ଥରେ ଯାଇ ତାଙ୍କ ସହିତ ମିଶେ। ତାଙ୍କର ସାହିତ୍ୟପ୍ରାଣ ବ୍ୟକ୍ତିତ୍ୱ, ପରୋପକାରୀ ହୃଦୟବତ୍ତା ମୋତେ ସେଥିପାଇଁ ଉଜ୍ଜୀବିତ କରେ। କଥାବାର୍ତ୍ତାର ଆରମ୍ଭ ହୁଏ ମୋର ସେଇ ମାନସିକ ନ୍ୟୂନତା ପୀଡ଼ିତା ଝିଅର ଦେହପା' କଥାରୁ। କାରଣ ତାଙ୍କୁ ମଧ୍ୟ ଭୋଗିବାକୁ ପଡୁଥିଲା। ସେମିତିକା ଏକ ଝିଅର ଜଞ୍ଜାଳ। ସେଇଠୁ କଥା ଆରମ୍ଭ ହୋଇ ଗଡ଼ିଯାଏ ସାହିତ୍ୟର ରାଇଜକୁ। ସେ ପତ୍ରିକା ପାଇଁ ଆଣିଥିବା ପ୍ରବୀଣ ଏବଂ ତରୁଣ ଲେଖକମାନଙ୍କର ଲେଖାଗୁଡ଼ିକ ବିଷୟରେ ଚର୍ଚ୍ଚିଦେନ୍ତି। ମୋ ଉପରେ ବେଳେବେଳେ ଦାୟିତ୍ୱ ପଡେ ବାଣୀବିହାର ପରିସରସ୍ଥ

ଲେଖକ ଲେଖିକାମାନଙ୍କଠାରୁ ଲେଖା ସଂଗ୍ରହର । ତାଙ୍କ ସହିତ କାମ କଲାବେଳେ ଲକ୍ଷ୍ୟ କରିଛି ତାଙ୍କ କାର୍ଯ୍ୟଧାରାକୁ । ପ୍ରତିଷ୍ଠିତ କବି, ଗାଳ୍ପିକ, ପ୍ରାବନ୍ଧିକମାନେ ତାଙ୍କୁ ମନା କରିପାରନ୍ତି ନାହିଁ । ଜଣେ ବୟୋଜ୍ୟେଷ୍ଠ ସମ୍ପାଦକ ତଥା ବଳିଷ୍ଠ ବ୍ୟକ୍ତିତ୍ୱ ପାଇଁ ତାଙ୍କ ପ୍ରତି ରହିଥିଲା ଲେଖକମାନଙ୍କର ସମ୍ମାନ ଓ ଶ୍ରଦ୍ଧା । ଫଳରେ ଓଡ଼ିଆ ସାହିତ୍ୟର ସର୍ବୋତ୍କୃଷ୍ଟ ସୃଷ୍ଟିଗୁଡ଼ିକ ତାଙ୍କ ପାଖରେ ପହଞ୍ଚିଯାଏ 'ସମାବେଶ'ର ପୃଷ୍ଠା ମଣ୍ଡନ କରିବାପାଇଁ । ବେଳେ ବେଳେ ସେ ବର୍ତ୍ତମାନ ଲେଖକମାନଙ୍କ ପାଖରେ ବାରମ୍ବାର ପହଞ୍ଚି ତାଙ୍କୁ ଅନୁପ୍ରେରିତ କରିଥାନ୍ତି ଗପଟିଏ ବା କବିତାଟିଏ ବା ପ୍ରବନ୍ଧଟିଏ ଲେଖିବା ପାଇଁ । ତରୁଣମାନଙ୍କୁ ହସି ହସି ଟାଳିକରନ୍ତି ଲେଖାଲେଖି ପାଇଁ । 'ସମାବେଶ' ପାଇଁ ଲେଖା ସଂଗ୍ରହ କରିବାରେ ସେ କିଭଳି ତତ୍ପର ଓ ତାଙ୍କର ତାହା କିପରି ନିଶାଥିଲା ସେ ବିଷୟରେ ସବୁ ସାହିତ୍ୟିକ ତ ଅଙ୍ଗେ ଲିଭେଇଥିବେ ତଥାପି ଗୋଟିଏ ଉଦାହରଣ ଏଠାରେ ଦେଉଛି । ଗତ ଏପ୍ରିଲ୍–ମେ–ଜୁନ୍ ସଂଖ୍ୟା ପାଇଁ ଜଣେ ଗାଳ୍ପିକଙ୍କ ପାଖରେ ସେ ପହଞ୍ଚିଥିଲେ ଗଳ୍ପଟି । ପାଇଁ । ଗଳ୍ପଲେଖା ଆରମ୍ଭ ହୋଇଥିଲା ମାତ୍ର ସରିନଥିଲା । ଗାଳ୍ପିକଙ୍କର ଦିଲ୍ଲୀ ଯିବାର ଥିଲା । ଅଫିସ କାମରେ । ଟ୍ରେନ୍ ଟିକଟ ହୋଇସାରିଛି. କିନ୍ତୁ ଗପଟି ଟ୍ରେନ୍‌ଯାତ୍ରା ଦିନକୁ ସରି ନାହିଁ । ଏଣେ ଜଗଦୀଶବାବୁ ଯାଇ ଘରେ ହାଜର, ଗପଟି ନେଇ କରି ଯିବାକୁ ହବ । ଟ୍ରେନ୍ ଟିକଟକୁ ବାତିଲକରି ଉଡ଼ାଜାହାଜ ଟିକଟ ଅଣାଗଲା । ଶେଷରେ ଉଡ଼ାଜାହାଜରେ ଯାତ୍ରା କରିବା ଦିନ ସୁଦ୍ଧା ଗପଟି ସରିଲାନାହିଁ । ତେଣୁ ଗସ୍ତ ବାତିଲ କରିବାକୁ ହେଲା । ହେଲେ 'ସମାବେଶ' ପାଇଁ ଗାଳ୍ପିକଙ୍କ ଲେଖନୀରୁ ପରିପୂର୍ଣ୍ଣ ରୂପନେଇ ପ୍ରସ୍ତୁତ ହୋଇପାରିଲା ଗପଟିଏ । ପ୍ରକୃତରେ ଅଦ୍ଭୁତ ତାଙ୍କର କାର୍ଯ୍ୟ କୁଶଳତା । ଯୁବକ ତଥା ପାରିଲା ପୁଅର ଅକାଳ ମୃତ୍ୟୁ, ମାନସିକ ନ୍ୟୂନତା ଭୋଗୁଥିବା ଏକମାତ୍ର କନ୍ୟାର ଶାରୀରିକ କଷ୍ଟ ଏବଂ ଅକ୍ଷମତା, ନିଜର ରୋଗିଣା ଶରୀର ଆଦି ଜନିତ କଷ୍ଟ ଓ ଜୀବନ ଯନ୍ତ୍ରଣାରେ ସେ ଘାଣ୍ଟି ହେଉଥିଲେ ବି କର୍ତ୍ତବ୍ୟପଥରୁ କେବେ ବିଚ୍ୟୁତ ହୋଇନାହାନ୍ତି । ସେ ବଦ୍ଧପରିକର ଥିଲେ 'ସମାବେଶ' ପତ୍ରିକା ପ୍ରକାଶ କରିବାକୁ । ଖାଲି ଯେନତେନ ପ୍ରକାରେ ପ୍ରକାଶ କରିବାକୁ ନୁହେଁ ତାର ସ୍ୱାତନ୍ତ୍ର୍ୟ ବଜାୟ ରଖିବାକୁ ମଧ୍ଯ ସେଥିରେ ସତତଃ ଚେଷ୍ଟିତ ।

ମୁଁ ଦେଖୁଛି ସାହିତ୍ୟିକମାନେ ମଧ୍ୟ ତାଙ୍କ ପାଖରେ ପହଞ୍ଚିଥାନ୍ତି ନାନାପ୍ରକାରର ସାହାଯ୍ୟ, ସହାନୁଭୂତି ପାଇଁ । ସଙ୍ଗେ ସଙ୍ଗେ ସେ ବାହାରିପଡନ୍ତି ସେମାନଙ୍କ ସମସ୍ୟାର ସମାଧାନ ପାଇଁ । କାହାର ବଦଳି ରଦ୍ଦ କରିବା ଦରକାର ତ କାହାର ମନପସନ୍ଦ ଜାଗାକୁ ବଦଳି ହେବା ଦରକାର । କାହାର ରାଜଧାନୀରେ କ୍ୱାର୍ଟର ଦରକାରତ ଆଉ କାହାର ସ୍ତ୍ରୀଙ୍କ ବଦଳି ଦରକାର । ପୁଣି କାହାର ଭାଇ ପାଇଁ ଓ.ଏସ୍.ଏଫ୍.ସି. ରୁ ଋଣ ଦରକାର । ସେ କାହାକୁ ନାହିଁ କରନ୍ତି ନାହିଁ । ସାଧ୍ୟ ମତେ କହିଲେ ଠିକ୍ ହେବନାହିଁ ନିଜ କାମ ପରି ସାଧ୍ୟ ବାହାରେ ମଧ୍ୟ ଚେଷ୍ଟା କରନ୍ତି । ଖାଇବା, ପିଇବା ଏବଂ ନିଜର ବ୍ୟକ୍ତିଗତ ସୁବିଧା ଅସୁବିଧା କଥା ଭୁଲି ସାହାଯ୍ୟ ପ୍ରାର୍ଥୀର କାମ କରାଇବାକୁ ଦିନ ଦିନ ଧରି ବୁରି ବୁଲନ୍ତି

ସଚିବାଳୟ ଏବଂ ଅନ୍ୟାନ୍ୟ ଥିବା ଅଫିସ ଗୁଡ଼ିକର ଦପ୍ତରରୁ ଦପ୍ତର । କେବଳ ସାହିତ୍ୟିକ ବନ୍ଧୁମାନେ ନୁହେଁ ଅନ୍ୟ ମାନେ ମଧ୍ୟ ତାଙ୍କ ସାହାଯ୍ୟ ପ୍ରାର୍ଥୀ ହୁଅନ୍ତି– (ଚଳନ୍ତି ସମାଜର ସବୁଶ୍ରେଣୀର ଲୋକ) ଓ ସେ ବିନାଦ୍ୱିଧାରେ ସେମାନଙ୍କ ସମସ୍ୟାର ସମାଧାନ ପାଇଁ ଉଦ୍ୟମ କରନ୍ତି ।

ବୟସ ଦୃଷ୍ଟିରୁ ସେ ବହୁତ ବଡ ହୋଇଥିଲେ ବି ମୋତେ ସେ, ସାନଭାଇର ସ୍ନେହ ଦିଅନ୍ତି । ଗତ ଅଗଷ୍ଟ ଚବିଶ ତାରିଖଦିନ ଯାଇଥିଲି ତାଙ୍କ ପାଖକୁ । ସଂଧ୍ୟାବେଳେ ପ୍ରାୟ ଦୁଇଘଣ୍ଟା ବସିଥିଲି ତାଙ୍କ ପାଖରେ । ସେଦିନ କାହିଁକି କେଜାଣି ଭାରି ଭାଙ୍ଗିପଡ଼ିଥିଲେ ସେ । ତାଙ୍କର ଜଣେ ନିକଟ ଆତ୍ମୀୟ ସେତେବେଳେ ହୃଦ୍‌ଘାତରେ ପୀଡ଼ିତ ହୋଇ ଚିକିତ୍ସିତ ହେଉଥିଲେ । ପୁଣି ତାଙ୍କର ଅନ୍ୟତମ ଅନ୍ତରଙ୍ଗ ସୁହୃଦ, ମାଇତିବାବୁ ଯିଏ ତାଙ୍କ କଲିକତାର ରହଣି କାଳଠାରୁ ଏଯାବତ୍ ତାଙ୍କୁ ସାହଚର୍ଯ୍ୟ ନେଇ ଆସୁଥିଲେ, ତାଙ୍କ ସହିତ ସବୁକଥାରେ, ସବୁକାମରେ ଓତପ୍ରୋତ ଭାବରେ ଜଡିତ ଥିଲେ, ସେ ଗୁରୁତର ଅସୁସ୍ଥ ହୋଇପଡ଼ିବାରୁ ତାଙ୍କୁ ଆଣି ହସ୍‌ପିଟାଲ୍‌ରେ ଜଗଦୀଶବାବୁ ଭର୍ତ୍ତି କରିଥିଲେ । ଚା' ମଗାଇଲେ, ପିଇଲୁ । ତାଙ୍କ ପାଇଁ ସିଗାରେଟ ମଗାଇବାବେଳେ ମୁଁ ବାରଣ କରିବାରୁ ସେ ମୋ ଉପରେ ଛଳ କୋପ କଲେ ସିନା ହେଲେ ସିଗାରେଟ ଆଉ ମଗାଇଲେନାହିଁ । ପୂଜାସଂଖ୍ୟା 'ସମାବେଶ' ପ୍ରସଙ୍ଗ ପଡ଼ିଲା । ମୁଁ ଦେଇଥିବା ଗପ ଉପରେ ମତାମତ ଚାହିଁବାରୁ କହିଲେ, ତୁମ ଗପ ପଢିନି କି ପଢିବନି । ସିଏ ଯାହା ହୋଇଥିଲେ ବି ପୂଜାସଂଖ୍ୟାରେ ଯିବ । ' ଏଇ କଥା ପଦକରେ ମୋ ମନ ପୂରିଗଲା । ତାଙ୍କର ମୋ ପ୍ରତି ଥିବା ସ୍ନେହ, ମମତା, ଅତୁଟ ବିଶ୍ୱାସ ସବୁ ପ୍ରକଟିତ ହୋଇଯାଇଥିଲା ଏଥିରେ । ସେଦିନ ମୁଁ ଉଠୁଥିବାବେଳେ କାହିଁକି କେଜାଣି ବାରମ୍ବାର ମୋତେ ଅଟକାଉଥିଲେ ଆଉ ଟିକିଏ ରୁହ, ଆଉ ଟିକିଏ ବସ, 'ତୁମେ ବସିବାରୁ ଭଲ ଲାଗୁଛି, କହି । ସେଦିନ ମୁଁ ଲକ୍ଷ୍ୟ କରିଥିଲି ସେ କେମିତି ଭାଙ୍ଗି ପଡ଼ିଥିଲେ । କିନ୍ତୁ ସେଇଟା ଯେ ଶେଷ ଦେଖାହେବ ସେକଥା ମୁଁ ଭାବି ପାରିନଥିଲି । କାର୍ଯ୍ୟୋପଲକ୍ଷେ ଭୁବନେଶ୍ୱର ବାହାରକୁ ଯାଇଥିବା ବେଳେ ଚାଲିଗଲେ ଆରପାରିକୁ । ଆଉ ଦେଖିପାରିଲି ନାହିଁ । ପୁଣି ଥରେ ତାଙ୍କୁ ଦେଖିବାର ସୁଯୋଗ ମତେ ମିଳିଲା ନାହିଁ ।

ମୋ ସହିତ ଦେଖାହେବା ପୂର୍ବଦିନ ଆରପାରିକୁ ଚାଲିଯାଇଛନ୍ତି ମାଇତିବାବୁ । ଠିକ୍ ତାଙ୍କରି ଏକାଦଶାହ ଦିନ ଜଗଦୀଶବାବୁ ଚାଲିଗଲେ ତାଙ୍କ ପାଖକୁ । ଦୁଇବନ୍ଧୁ ବେଶ୍ ଆନନ୍ଦରେ ଗପସପ ହେବେ ସେପୁରରେ, ଦୁଃଖ ଜଞ୍ଜାଳଭରା ଏ ଦୁନିଆର ସେପାରେ, ଚିର ଶାନ୍ତି ବିଚରଣ କରୁଥିବା ଧାମରେ । କିନ୍ତୁ ମୁଁ ବା ମୋ ପରି ଯେଉଁମାନେ ତାଙ୍କ ସହିତ କିଛି ସମୟ ବିତାଇ ଆତ୍ମତୃପ୍ତି ପାଉଥାନ୍ତି, ସେମାନଙ୍କ ପାଇଁ କିଏ ପୂରଣ କରିବ ତାଙ୍କ ସ୍ଥାନ ? 'ସେପୁରରେ ତାଙ୍କ ଆତ୍ମା ସଦ୍‌ଗତି ହେଉ ଏବଂ ତାଙ୍କ ସ୍ମୃତିର ସୁରଭିରେ ଆମେମାନେ ଆମୋଦିତ ହେଉ, ଏହାହିଁ ଈଶ୍ୱରଙ୍କଠାରେ ପ୍ରାର୍ଥନା ।



# ସେ ଦୁଃଖରୁ ନିସ୍ତାର ନାହିଁ

## କୈଳାସ ତ୍ରିପାଠୀ

ମନେପଡୁଚି ତେୟାଅଶିର କଥା । ମନେ ତ ପଡୁନି ମନରେ ରହିଯାଇଚି ଶାଶ୍ୱତ ସ୍ମରଣିକା ଭଳି ସତେଜ, ସତେ ଯିମିତି ଅମୃତ ବେଳାରେ ଅସୁସ୍ଥ ହେଇଥିବା ଆମ୍ରଲିପିର ଅଲିଭା କଥାକାହାଣୀ କିଛି ।

ତେୟାଅଶିରେ ମୁଁ ସଂପାଦନା କରୁଥିଲି 'ଶତାବ୍ଦୀ' ସାହିତ୍ୟ ତ୍ରୈମାସିକୀ । ମୁଦ୍ରଣ ହେଉଥିଲା ଯଦିଓ ଅନ୍ୟତ୍ର ପ୍ରଚ୍ଛଦପଟ ପ୍ରସ୍ତୁତ ହେଉଥିଲା କ୍ୱାଲିଟି ପ୍ରେସ୍‌ରେ । ବ୍ୟବସାୟିକ ହିସାବ ନିକାଶ ବେଳେ ମ୍ୟାନେଜର ମହୋଦୟଙ୍କ ସହିତ ମୋର ହେଲା କିଛି ବାଦ ଓ ବିସମ୍ବାଦ । ଉଭୟେ ରହିଲୁ ଉଭୟଙ୍କ ବ୍ୟକ୍ତିଗତ ବୁଝାମଣାରେ ସ୍ୱାର୍ଥପର ଓ ସାଲିସରହିତ ଦୁଇ ଚରିତ୍ର । ଆମ ଭିତରେ ଯଦିଓ କୌଣସି ଅସୌଜନ୍ୟ ବାର୍ତ୍ତା ବିନିମୟ ନଥିଲା । ସ୍ୱରାଳାପ ଥିଲା ମଧ୍ୟମ ଶୀର୍ଷରେ ।

ଜଗଦୀଶବାବୁ ହୁଏତ ଥିଲେ ଭିତରେ, ଅନ୍ୟତ୍ର ଧାଇଁ ଆସିଲେ । ଘଟଣା ଅନୁଧ୍ୟାନ କରି ମ୍ୟାନେଜର ମହୋଦୟଙ୍କୁ କହିଲେ : ମ୍ୟାନେଜରବାବୁ । ଲେଖକ, ସଂପାଦକମାନଙ୍କ ସହିତ ଏମିତି ବ୍ୟବହାର କରାଯାଏନା । ଏମାନେ ବ୍ୟବସାୟୀ ନୁହନ୍ତି । ସାହିତ୍ୟ ନିଶାରେ ଝାଳରକ୍ତବୁହା ପଇସା ଶ୍ରାଦ୍ଧ କରୁଛନ୍ତି । ପତ୍ରିକା କରିବା କଷ୍ଟ ମୁଁ ଜାଣେ । ତମେ ଜାଣିନ । ତିରିଶ ପର୍ସେଣ୍ଟ ଡିସ୍‌କାଉଣ୍ଟ କରନ୍ତୁ ।

ପରବର୍ତ୍ତୀ ସଂଳାପ ଥିଲା ମୋ' ପାଇଁ । କାନ୍ଧ ଥାପୁଡ଼ାଇ କହିଲେ : କୈଳାସବାବୁ । କିଛି ମନେ କରିବେନି । ମ୍ୟାନେଜରବାବୁ ତ ବ୍ୟବସାୟ ନିୟମର ସୂତ୍ରଧର । ସେ ବୁଝିପାରିବେନି ଆମ ଯନ୍ତ୍ରଣା । ଆସୁଥିବେ ବରାବର । ସଂପର୍କ କାଟିବେନି ।

ସଂପର୍କ ସତରେ ମୁଁ କାଟିନଥିଲି । ସେଭଳି ହୃଦୟଟିଏ ଖୋଜିବାକୁ ପଡେ । ପରଖିବାକୁ ପଡ଼େ । ସିମିତ କଥା ଗ୍ରୀଷ୍ମପଦ ଦୁର୍ଭିକ୍ଷ ଭିକ ଭଳି ଦୁର୍ମୂଲ୍ୟ, ଏବକାର ପୃଥିବୀରେ । ବିପନ୍ନ ଭାବ୍ୟମାନେ ହରେଇବାର ବ୍ୟତିକ୍ରମ ହେଇଥିବେ ହୁଏତ । ମୁଁ କିନ୍ତୁ ତା' ନଥିଲି । 'ଶତାବ୍ଦୀ' ବୁଜ୍‌ରହିଯିବା ଯାଏ କ୍ୱାଲିଟି ପ୍ରେସ୍ ସହିତ ମୋର ଯିମିତି ଗୋଟାଏ ହାତଗଣ୍ଠି ପଡ଼ିଯାଇଥିଲା । ପ୍ରକାରାନ୍ତରେ ଜଣେ ମହାନ୍ ମଣିଷରେ ସାହଚର୍ଯ୍ୟର ତୃଷ୍ଣା, ହୃଦୟ ବଂଧନର ଏକାଗ୍ର ସଂପ୍ରୀତି ଥିଲା ସଂପର୍କର ଆଭିମୁଖ୍ୟ । ବ୍ୟବସାୟ ଏକାନ୍ତ ନଗଣ୍ୟ ।

ସାମ୍ନାସାମ୍ନିବେଳେ ତାଙ୍କଠୁ ଶୁଣିଥିଲି ସାହିତ୍ୟର କଥା । ସାହିତ୍ୟ ପାଇଁ ସଂଘର୍ଷର କଥା । ସଂଘର୍ଷ ପାଇଁ ତ୍ୟାଗ, ମହାତ୍ୟାଗର କଥା । କେବେ ଶୁଣିନଥିଲି ସଂଘର୍ଷ ଓ ତ୍ୟାଗ ବିନିମୟରେ କେତେ ବ୍ୟବସାୟିକ ସଫଳତା ମିଳେ । କେତେ କୋଠାବାଡି, ଟଙ୍କାପଇସାର ବିଳାସ ମିଳେ ଅଭିବୃଦ୍ଧି ନାଆଁରେ । ତାଙ୍କ ପ୍ରାଚୁର୍ଯ୍ୟ ଯାହା ନିଜ ଆଖିରେ ଦେଖିଥିଲି । ଅହଙ୍କାରର ଏକକ ଶବ୍ଦଟିଏର ସୂଚନା ବି ପାଇନଥିଲି କେବେ, ତାଙ୍କ ମୁହଁରୁ ।

ଏଇ ତ ପୁରୁଷାକାର । ମହାନ୍ ମଣିଷର ମହତୀ ପଣ ।

ଜଗଦୀଶବାବୁଙ୍କ ମହାନତାର ସ୍ୱୀକୃତି ମୁଁ କ'ଣ ଦେବି ? ସାଧାରଣ ମଣିଷଟିଏ ମୁଁ । କେବଳ ଏତିକି କହିବି, ସେ ନିଜକୁ ସାଧାରଣ ମଣିଷଟିଏ ମନେ କରିବାର ଅସାଧାରଣତ୍ୱ ଯୋଗୁ ମୋ'ଭଳି ଅନେକ ସାଧାରଣ ମଣିଷଙ୍କର ଆତ୍ମୀୟ ଥିଲେ ।

ସେ ଚାଲିଗଲେ ହଠାତ୍ । ଆତ୍ମୀୟ ହରାଇବା ବିଷାଦରେ ସମସ୍ତଙ୍କ ଭଳି ମୁଁ ଆତ୍ମହରା । ଜଗଦୀଶବାବୁଙ୍କ ଧାରାବାହୀ ଦୁଃଖ ମୋତେ ଅଜଣା ନୁହେଁ । ସେ ଦୁଃଖମାନେ ହିଁ ତାଙ୍କୁ ହଠାତ୍ ନେଇଗଲେ ।

ତାଙ୍କ ଚାଲିଯିବାର ଦୁଃଖକୁ ଛାତିରେ ଚାପିରଖିବାର ବାଧ୍ୟବାଧକତାରୁ ନିସ୍ତାର କ'ଣ ମିଳିବ ?



*ମୋଘାଶା ମୋଘକର୍ମାଣୋ, ମୋଘଜ୍ଞାନା ବିଚେତସଃ ।*
*ରାକ୍ଷସୀମାସୁରୀଂ ଚୈବ, ପ୍ରକୃତିଂ ମୋହିନୀଂ ଶ୍ରିତାଃ ।*

# ହେ, ଜଗଦୀଶ ପାଣି

ରାମଚନ୍ଦ୍ର ମହାରଣା

ଆମ କଳ୍ପନାର କବିତା
ଫର୍ଦ୍ଦର ଆକାଶରେ,
ତୁମେ ଥିଲ ଅଲିଭା ଆଲୋକ,
ଆମ ଜୀବନର ପ୍ରତିଟି ମାର୍ଗରେ,
ତୁମେ ଥିଲ, ସତ୍ୟ ପ୍ରତିଶ୍ରୁତି
ଧର୍ମପରାୟଣ।

ତୁମଠୁଁ ଅଲଗା ହୋଇ
କାହା ପାଖେ ଠିଆ ହେବୁ,
କାହାକୁ, ହାତ ପାତିବୁ,
ହୃଦୟରୁ. ଝରି ପଡୁଥିବା
ଭୋକିଲା ଶବ୍ଦକୁ
ଲେଖନୀର, ଆବୃତ ଗର୍ଭକୁ
ଏଠି'ତ ଆଲୋକ ନାହିଁ,
ଅଶ୍ରୁ ଆଖି, ମାଳ, ମାଳ
ମୂକ ପରି, ଗ୍ରହିଁଛନ୍ତି, ଅମା ଅନ୍ଧକାରେ
ତୁମ, ସଦ୍‌ଗତି କାମନାରେ
ତୁମେ, ପୁଣି ଫେରି ଆସିବ
ଉଜ୍ଜ୍ୱଳ ଆଲୋକ ନେଇ
ଆମର ଏ, ଅନ୍ଧକାର
'ସମାବେଶ'କୁ
ଆଲୋକିତ କରିବ।
ସେଦିନର ଅପେକ୍ଷାରେ
ମୁଁ ରହିଛି, ନିରବରେ।

❖ ❖ ❖

# କୋଉଠୁ କହିବି, କୋଉଠି ସାରିବି.......!

(୰ ଜଗଦୀଶ ପାଣି : ଏକ ଶ୍ରଦ୍ଧାଂଜଳି)

ହୃଷୀକେଶ ମଲ୍ଲିକ

ସେଦିନ ସଞ୍ଜରେ ମୋ' ସ୍ତ୍ରୀଙ୍କଠୁଁ ଶୁଣିଲି 'ସମାଜ'ରେ ପ୍ରକାଶିତ ଏ ବର୍ଷର ଅନ୍ୟତମ ଦାରୁଣ ସଂବାଦ ,ଯେଉଁଥିରେ ଛୋଟ ହରଫରେ ଲେଖାଥିଲା 'ଜଗଦୀଶ ପାଣିଙ୍କ ବିୟୋଗ।' ଛୋଟ ହରଫ୍‌ରେ ଲେଖାଥିଲା ବୋଧହୁଏ ଏଇଥିପାଇଁ ଯେ, ହଠାତ୍ ତାଙ୍କ ବିୟୋଗ ସଂବାଦ ତାଙ୍କୁ ଭଲପାଉଥିବା କାହାରିଙ୍କୁ ବାଧି ଯାଉ। ଖବର କାଗଜଟି ଆଣି ଏକାଧିକବାର ସଂବାଦଟି ପଢିଲି। କାରଣ ହଠାତ୍ ବିଶ୍ବାସ କରିହେଲା ନାହିଁ। ଜଗଦୀଶବାବୁ ଏତେଶୀଘ୍ର ଚ୍ଲିଯାଇ ପାରନ୍ତି ବୋଲି ! କାରଣ ତାଙ୍କର ସ୍ୱପ୍ନ ଥିଲା ଅସରନ୍ତି. ଯାହା ସାରିବାକୁ ଜଣକ ପାଇଁ ବହୁ ଜନ୍ମର ଆୟୁଷ ଲୋଡ଼ାହୁଏ।

ଏକଦା 'ଲେଖକ-ସାମ୍ମୁଖ୍ୟ'ର ଏକ ବୈଠକରେ ଓଡ଼ିଆ ସାହିତ୍ୟର ଗୁରୁସ୍ଥାନୀୟ ଲେଖକ ଶ୍ରୀଯୁକ୍ତ ମହାପାତ୍ର ନୀଳମଣି ସାହୁ କହିଥିବା କଥା କେଇପଦ ଆଜି ମନେପଡୁଛି। ସେ କହିଥିଲେ। "ଜଗଦୀଶବାବୁ ହେଉଛନ୍ତି ଗୋଟିଏ ବହୁ ଶାଖା ପ୍ରଶାଖା ବିଶିଷ୍ଟ ବରଗଛ। ଏଠି ଅନେକ ଝୁଦକଣା ବିଂଚ୍ ଯାଇଚି, ଅନେକ ଅନେକ ଚଢେଇଙ୍କ ପାଇଁ।' ଆଜି ପୁଣି ଥରେ ଏଇ କଥାଟିର ସତ୍ୟତା ଉପଲବ୍‌ଧି କରିବାକୁ ପଡୁଛି।

ଜଗଦୀଶବାବୁଙ୍କ ସହିତ ମୋର ସଂପର୍କ 'ଧରିତ୍ରୀ' ଓ 'ସମାବେଶ'କୁ କେନ୍ଦ୍ରକରି। ଦିନ ଦିନର ଭେଟ. ମନଖୋଲା ଭାବ ବିନିମୟ। ପ୍ରସଙ୍ଗ ଓଡ଼ିଆ ଭାଷା. ଓଡ଼ିଆ ସାହିତ୍ୟ ଓ ଓଡ଼ିଶାର ପତ୍ରପତ୍ରିକା। ପୂଜା 'ସମାବେଶ'ରେ ପ୍ରକାଶ ପାଇଁ ଆସିଥିବା ସାନବଡ଼ ସବୁ କବିଙ୍କ ଲେଖା ସେ ଚଲେ ପଢାନ୍ତି। 'ସମାବେଶ'କୁ ଲେଖା ପଠାଇ ସୁଲେଖକଙ୍କୁ କେବେ ସ୍ମୃତି କରିବାକୁ ପଡ଼େନାହିଁ। ଲେଖାଟି ତା' ନିଜ ଗୁଣରେ ସ୍ଥାନ ଓ ସଂଖ୍ୟା ବାଛିନିଏ। ଏଭଳି ଉଦାର ନିରପେକ୍ଷ ସଂପାଦକ ଆଜିକାଲି କ୍ୱଚିତ୍ ମିଳନ୍ତି। ଜଗଦୀଶବାବୁ ଏହି ବିଚ୍ଚରରୁ ଥିଲେ 'ଉତ୍କଳ ସାହିତ୍ୟ' ସୁଯୋଗ୍ୟ ସଂପାଦକ ବିଶ୍ୱନାଥ କରଂକର ଅଭିନବ ସଂସ୍କାର। ତାଙ୍କୁ କେନ୍ଦ୍ର କରି ଆଧୁନିକ ସାହିତ୍ୟର ଏକ ଯୁଗ ଗଢି ଉଠୁଥିଲା, ସମସ୍ତଙ୍କ ଅଲକ୍ଷ୍ୟରେ। ସେହି ଯୁଗ ଆଜି ଏକ ସନ୍ଧିକ୍ଷଣରେ ପହଞ୍ଚିଲା, ଜଗଦୀଶବାବୁଙ୍କ ବିୟୋଗରେ। ୰ ପାଣିଙ୍କର କ୍ଷତି ଆମ ସମସ୍ତଙ୍କୁ ମିଶି ପୂରଣ କରିବାକୁ ପଡିବ, ଚ୍ଲାଇ ରଖିବାକୁ ହେବ 'ସମାବେଶ'କୁ, ପାରୁପର୍ଯ୍ୟନ୍ତ।

୧୯୭୬ କଥା । ନଗଦ ହେଇ ଦେଶରୁ ଜରୁରୀ ପରିସ୍ଥିତି ଉଠିଥାଏ । ଲେଖକମାନେ ହାତ ଛାଟ୍ କରୁଥାନ୍ତି, ମୁକ୍ତିର ବନ୍ଦନା ଗାଇବାକୁ । ଆମେ ସେତେବେଳେ ପଢୁଥାଉଁ ବାଣୀବିହାରରେ ଓଡ଼ିଆ ଏମ୍. ଏ. । ମୁଁ ଓ ଶତ୍ରୁଘ୍ନ ପାଣ୍ଡବ ଏବଂ ଅନ୍ୟମାନେ । ମୁଁ ପାଠପଢ଼ା ସାଙ୍ଗକୁ ଦୈନିକ ଧରିତ୍ରୀ ରବିବାସରୀୟ ସଂଖ୍ୟା ସଂପାଦନା କରୁଥାଏ । ସେତେବେଳେ ନୂଆ କଥା, ନୂଆ କାମ କରିବାକୁ ଝୁଙ୍କ୍ ଥିଲା ପ୍ରବଳ । ୰ ଅଖିଳ ମୋହନ ପଟ୍ଟନାୟକ ଥାନ୍ତି 'ସମାବେଶ'ର ମୁଖ୍ୟ-ସଂପାଦକ । 'ସମାବେଶ'ର କବିତା ପୃଷ୍ଠା ଯଶସ୍ୱୀ କବି ରାଜେନ୍ଦ୍ର କିଶୋର ପଣ୍ଡାଙ୍କ ହେପାଜତ୍‌ରେ ସଂପାଦିତ ହେଉଥାଏ । ଶତ୍ରୁଘ୍ନ ଓ ମୁଁ ସ୍ଥିର କଲୁଁ, ଜରୁରୀକାଳୀନ ପରିସ୍ଥିତିକୁ ନେଇ ଓଡ଼ିଆ ଭାଷାରେ ରଚିତ ହୋଇଥିବା 'କଥା ସାହିତ୍ୟ'କୁ ନେଇ ଏକ ସଂକଳନ କରିବାକୁ । ଲେଖା ଯୋଗାଡ଼ ହେଲା । ଲେଖକମାନଙ୍କୁ ଅନୁମତି ମଗାଗଲା । ମନେଅଛି, କବି ରମାକାନ୍ତ ରଥ କେବଳ ସେତେବେଳେ ତାଙ୍କର ଏକ 'ଗଳ୍ପ' [ଯାହା 'ଜରୁରୀକାଳୀନ ଅବସ୍ଥା'ର ଥିଲା ଏକ ପରୋକ୍ଷ ପ୍ରତିବାଦ-(ଅବଶ୍ୟ ଆମ ବିଚାରରେ] ଆମ ସଂକଳନରେ ପ୍ରକାଶ କରିବାକୁ ଅନୁମତି ଦେବା ନିମିତ୍ତ କୁଣ୍ଠିତ ହୋଇଥିଲେ । ସେତେବେଳକୁ ସେ ଭାରତ ସରକାରଙ୍କ ଅଧୀନରେ ଥିଲେ ପଦସ୍ଥ ଅଫିସର, ସୁତରାଂ ବୃତ୍ତି କ୍ଷେତ୍ରରେ ପରାଧିନ । ତାଙ୍କ ଗପକୁ ତେଣୁ ବାଦ୍ ଦେବାକୁ ପଡ଼ିଥିଲା ଶେଷରେ. ଅଶେଷ ଲୋଭ ସତ୍ତ୍ୱେ । ସେହିପରି ୰ ଗୋପୀନାଥ ମହାନ୍ତି ହାତ-ପାହାନ୍ତିରେ ଅଛନ୍ତି ବୋଲି ମୁହାଁମୁହିଁ ଅନୁମତି ନେଇ ଆସିବୁ ଭାବି ଶେଷ ପର୍ଯ୍ୟନ୍ତ ବହି ପ୍ରକାଶ ପାଇଲା; କିନ୍ତୁ ଗୋପୀବାବୁଙ୍କଠୁଁ ଅନୁମତି ଆଣିବା ନୋହିଲା ।

ବହିର 'ମୁଖବନ୍ଧ'ଟିଏ ଲେଖିଦେଲେ ୰ ଅଖିଳ ମୋହନ ପଟ୍ଟନାୟକ । ବହିର ନାଁ ଦେଲେ ନବ ଓଡ଼ିଶାର ନିର୍ମାତା ସ୍ୱର୍ଗତ ଡକ୍ଟର ହରେକୃଷ୍ଣ ମହତାବ । ବହି ପ୍ରକାଶ ପାଇବାର ସଂବାଦ ଜଗଦୀଶବାବୁ ଗୋପୀବାବୁଙ୍କୁ ଟେଲିଫୋନ୍‌ରେ ଜଣାଇଦେଲେ । ଏଥର ସମ୍ଭାଳେ କିଏ ଗୋପୀବାବୁଙ୍କୁ- କହିଲେ । 'କିଏ ସେ ପିଲାମାନେ ମୁଁ ବଞ୍ଚିଛି ମୋ' ବିନାନୁମତିରେ ମୋ ଗଳ୍ପ ତାଙ୍କୁ ତାଙ୍କ ସଂକଳନରେ ଛାପିବାକୁ କହିଲା କିଏ ?' ଜଗଦୀଶବାବୁ ହତବାକ୍ ହୋଇଗଲେ । ତାଙ୍କର ଧାରଣା ଥିଲା, ଆମେ ଗୋପୀବାବୁଙ୍କଠୁଁ ଅନୁମତି ଆଣିଛୁଁ । ଟେଲିଫୋନ୍‌ରେ କୌଣସି ପ୍ରକାରେ ଗୋପୀବାବୁଙ୍କୁ ସମ୍ଭନ୍ଧାସମ୍ଭନ୍ଧି କରି ସେହିଦିନ ସଂଧ୍ୟାରେ ସେ ଆମକୁ ଡ଼କାଇ ପଠାଇଲେ । ସବୁକଥା କହିଲେ । ଆମେ ତହିଁ ଆରଦିନ ବେଳବୁଡ଼କୁ ଗୋପୀବାବୁଙ୍କ ୟୁନିଟ୍-୩ ସ୍ଥିତ ଘରକୁ ଗଲୁ । ପ୍ରଣାମ କରି ଅଭିପ୍ରାୟ ଜଣାଇଲୁ । ଆମେ ସେଇ 'ଗପଚୋରର ପାଜି' ବୋଲି ଜାଣି ଗୋପୀବାବୁ ଗର୍ଜି ଉଠିଲେ, ଯେମିତି ବ୍ରିଟିଶ୍ କାଳର ଏକ ତୋପ ହଠାତ୍ ଫୁଟି ଉଠିଲା କହିଲେ-'ଏଡ଼େ ସାହାସ୍ ତମର, ମୁଁ ବଞ୍ଚି ଥାଉ ଥାଉ, ମୋ' ଗପକୁ ଆଉ ଠାଏଁ ଛାପିଦେଲ, ପୁଣି ମୋ' ବିନାନୁମତିରେ ! ମୁଁ ତମ ନାଁରେ ମକଦ୍ଦମା କରିବି ।'

ମକଦ୍ଦମା କଥା ଶୁଣି ଡ଼ର ଲାଗିଲା । ତଥାପି ସେ ତ ପରଜା'ର ଲେଖକ ଗୋପୀବାବୁ ! ଏଇ ଭରସାରେ ମୁଣ୍ଡ ତଳକୁ କରି ଗୋପୀବାବୁଙ୍କ ଆବେଗପୂର୍ଣ୍ଣ ଗାଳି ଶୁଣିଚାଲୁଁ । ଭାବିଲୁ ଆହୁରି କିଛି ସମୟ ଆହୁରି କଡ଼ା ଭାଷାରେ ଦି'ପଦ ସେ ଶୁଣାନ୍ତେ କି; ଓଡ଼ିଆ ସାହିତ୍ୟର 'ଯୁଗ-ନିର୍ମାତାଙ୍କ ସ୍ୱତୁଂଡ଼ରୁ ଏମିତି ଗାଳି ଶୁଣିବା ବି କେତେ ଲୋକଙ୍କ ଜୀବଦ୍ଦଶାରେ ସମ୍ଭବ ହୁଏ। ଏତିକିବେଳେ କବି ସୀତାକାନ୍ତ ମହାପାତ୍ର ପଶିଆସିଲେ ଗୋପୀବାବୁଙ୍କ ଘରକୁ । ଏମିତି ସେ ବରାବର ଆସନ୍ତି । ଆଜି ବି ! ଆମକୁ ସେ ସେତେବେଳକୁ ବେଶ୍ ଜାଣିଥିଲେ । ଶ୍ରଦ୍ଧା କରୁଥିଲେ । କହିଲେ-କଥା କ'ଣ, କବିମାନଙ୍କର ଆଜି ଭିଡ଼ ଏଠି ! ସୀତାକାନ୍ତବାବୁ ଆମ ସହ ଏମିତି ଅନ୍ତରଙ୍ଗ ଭାବେ କଥାହେବା ଦେଖି ଗୋପୀବାବୁ ଟିକେ ଥଣ୍ଡାହେଲେ । ପଚ୍ଚରିଲେ-'ସୀତାକାନ୍ତ ! ତମେ ଏ ପିଲାମାନଙ୍କୁ ଜାଣିଛ !' ସୀତାକାନ୍ତ ବାବୁ କହିଲେ-'ଏମାନେ ସବୁ ଭଲ କବି । ଏମାନଙ୍କର ଭବିଷ୍ୟତ ଅଛି ।' ଗୋପୀବାବୁ କହିଲେ-ଏମାନେ ମୋ' ଅଗୋଚରରେ ମୋ'ର ଗୋଟିଏ ଚପ ତାଙ୍କ ସଂକଳନରେ ଛାପି ଦେଇଛନ୍ତି । ଏପରି କରିବା କ'ଣ ଠିକ୍ ହୋଇଚି ! ତେବେ ହେଉ, ପିଲାମାନେ ତମେ ଯାଅ । ଆଉ ଏପରି କରିବ ନାହିଁ । ଶାପମୁକ୍ତି ହୋଇ ଆସିଲୁ ଏକ ଦୁର୍ଲଭ ଗନ୍ଧର୍ବ-ଲୋକରୁ ।

ଆଉ ଦିନକର କଥା. ସେତେବେଳକୁ କବି ରାଜେନ୍ଦ୍ର କିଶୋର ପଣ୍ଡାଙ୍କର କବିତା-ଧାରା ଉପରେ ମୁଁ 'ଇସ୍ତାହାର'ରେ ଗୋଟିଏ ସମାଲୋଚନା ଲେଖିଥିଲି । 'ସମାଲୋଚନା'ର ଭାଷା ଲେଖକୀୟ ସଂଭ୍ରମ ବୋଧକୁ କିଛିଟା ହୁଏତ ଅତିକ୍ରମ କରିଯାଇଥିଲା । ରାଜେନ୍ଦ୍ର-ବାବୁ 'ସମାଲୋଚନା'ଟି ପଢ଼ି ମନ ଉଣା କଲେ । କାରଣ ସେ ମୋତେ ଏତେ ଭଲ ପାଉଥିଲେ ଯେ, ଏପରି ଏକ ଲେଖା ମୋ'ଠୁଁ ସେ ଆଶା କରୁନଥିଲେ । ତା'ପରେ 'ଧରିତ୍ରୀ' ପକ୍ଷରୁ ରାଜେନ୍ଦ୍ରବାବୁଙ୍କ ସହ ଏକ ସାକ୍ଷାତ୍‌କାର ଆଣିବାକୁ ମୋ'ତେ ଦାୟିତ୍ୱ ନ୍ୟସ୍ତ କରାଯାଇଥିଲା । ରାଜେନ୍ଦ୍ରବାବୁ ସାକ୍ଷାତ୍‌କାର ଦେଲେ । ମାତ୍ର ମୁଁ ନ ପଚ୍ଚରିଥିବା ଗୋଟିଏ ଯୋଡ଼ିଏ ପ୍ରଶ୍ନ ସେ ନିଜଆଡୁ ସେଥିରେ ଯୋଡ଼ିଦେଇ ତା'ର ଉତ୍ତର ଦେଇଦେଲେ । ଏହା ଅନ୍ୟ କିଛି ନଥିଲା, ଥିଲା 'ଇସ୍ତାହାର'ରେ ପ୍ରକାଶ ପାଇଥିବା ମୋ' ସମାଲୋଚନା ପ୍ରତି ଏକ କଟୁକ୍ତି ମାତ୍ର ମୁଁ 'ଧରିତ୍ରୀ'ର ତତ୍କାଳୀନ ସଂପାଦକ ଶ୍ରୀଯୁକ୍ତ ରାମନାଥ ପଣ୍ଡାଙ୍କ ଅନୁମତି ନେଇ ଅବାଞ୍ଛିତ ପ୍ରଶ୍ନ ଓ ତହିଁର ଉତ୍ତର ଗୁଡ଼ିକୁ ସାକ୍ଷାତ୍‌କାରରୁ ବାଦ୍‌ଦେଇ 'ଧରିତ୍ରୀ'ର ରବିବାସରୀୟ ସଂଖ୍ୟାରେ ଛାପିଦେଲି । ଏହାପରେ ରାଜେନ୍ଦ୍ରବାବୁ ଓ ମୋ' ଭିତରେ ତଫାତ୍ ବଢ଼ିଲା । ସେ 'ସମାବେଶ'ର ପରବର୍ତ୍ତୀ ସଂଖ୍ୟାରେ 'ଆଳାପ-ସଂଳାପ' ଶୀର୍ଷକରେ ମୋ' ସହ ତାଙ୍କର ସାକ୍ଷାତ୍‌କାର (ଅପରିବର୍ତ୍ତିତ) ଟିକୁ ଅବିକଳ ଛପାଇଦେଲେ । ସେଥିରେ ବଂଧନୀ ମଧ୍ୟରେ ଏହି ମର୍ମରେ

ଲେଖାଥିଲା : 'ଏହାର କିୟଦଂଶ ରବିବାସରୀୟ 'ଧରିତ୍ରୀ'ରେ ପ୍ରକାଶ ପାଇଥିଲା............ ।' ଦିନେ ସଂଧ୍ୟାରେ ବାଣୀବିହାର ପରିସରରେ ଥିବା ମ୍ୟାଗାଜିନ୍ ଷ୍ଟଲ୍‌ରୁ 'ସମାବେଶ'ରେ ପ୍ରକାଶିତ ରାଜେନ୍ଦ୍ରବାବୁ କର୍ତ୍ତୃକ ପ୍ରେରିତ 'ସାକ୍ଷାତ୍‌କାର'ଟି ପଢ଼ିଲି । 'ଧରିତ୍ରୀ'ରେ ପ୍ରକାଶିତ ସାକ୍ଷାତ୍‌କାରର ଏହା ଏକ ମୁକାବିଲା ପରି ଲାଗିଲା । ଯୋଗକୁ ସେହି ସଂଖ୍ୟା 'ସମାବେଶ'ରେ ପ୍ରକାଶିତ ହେବାକୁ ମନୋନୀତ ହୋଇଥିବା ଓ କମ୍ପୋଜ ହୋଇସାରିଥିବା ମୋ'ର ଏକ କବିତା 'ସମାବେଶ'ରୁ ବାଦ୍ ପଡ଼ିଲା 'ନେଗେଟିଭ୍' ଚିନ୍ତା ମଣିଷର ପ୍ରାୟ ଏକ ଅନୁକୂଳ ଗୁଣ । ଏଣୁ ମୁଁ ଧରିନେଲି ଯେ ମୋ' କବିତା ବଂଦ ହେବା ମୂଳରେ ରାଜେନ୍ଦ୍ରବାବୁ ଓ ଜଗଦୀଶବାବୁଙ୍କ ଭିତିରିଆ ସଲାସୁତରା କାମ କରିଛି । ପରେ ଅବଶ୍ୟ ଏ ଭ୍ରମ ଦୂରହେଲା । ଘଟଣାଟିରେ ହସ୍ତକ୍ଷେପ କଲେ ପିତୃପ୍ରତିମ କଥାକାର ମହାପାତ୍ର ନୀଳମଣି ସାହୁ । ମୋ ଜାଣିବାରେ ଶ୍ରୀଯୁକ୍ତ ସାହୁ ଏକମାତ୍ର ଓଡ଼ିଆ ସାହିତ୍ୟିକ, ଯାହାଙ୍କର ନାରଦଙ୍କ ପରି ତିନିଲୋକରେ ପ୍ରବେଶ ରାଜେନ୍ଦ୍ରବାବୁଙ୍କ ସହ ମୋ'ର ସଂପର୍କ ଦ୍ୱିଗୁଣିତ ହେଲା । ରିପୁ-ମାର୍ଗରେ ଜଣେ ଅଗ୍ରଜ କବିଙ୍କର ନିକଟତମ ହେବା ମୋ' ଜୀବନରେ ଏଇ ପ୍ରଥମ ଥିଲା । 'ସମାବେଶ'ର ପର ସଂଖ୍ୟାରେ ମୋ' କବିତା ପ୍ରକାଶ ପାଇଲା ।

୧୯୯୨ ଶାରଦୀୟ 'ସମାବେଶ' ପାଇଁ କବିତାଟିଏ ପଠାଇଥିଲି । ପୂଜାସଂଖ୍ୟା ପ୍ରକାଶ ପାଇଲା । ମାତ୍ର ମୋ' କବିତାଟି ପ୍ରକାଶ ପାଇଲା ନାହିଁ । କବିତା ସଂପାଦନା ଦାୟିତ୍ୱରେ ଥିଲେ ମୋ'ର ହିତୈଷୀ ଅଗ୍ରଜ କବି ଶ୍ରୀଯୁକ୍ତ ହରିହର ମିଶ୍ର । ତାଙ୍କ ସହ ଭେଟ ହେଲା । ମୁଁ ପଚ୍ଚରିବା ଆଗରୁ ସେ ତାଙ୍କଆଡୁ କହିପକାଇଲେ-'ଜଗଦୀଶବାବୁ ତମ ଉପରେ କାହିଁକି ଭାରି ଝପ୍‌ପା । ମୁଁ ତମ କବିତା 'ପୂଜାସଂଖ୍ୟା' ପାଇଁ ମନୋନୀତ କରିଥିଲି, କିନ୍ତୁ ସେ ତା'କୁ ଆଡ଼େଇ ରଖିଦେଲେ ସମୟ କରି ଭେଟିବ ।' ଜଗଦୀଶବାବୁ ମୋ' ଉପରେ ପୁଣି କାହିଁକି ରାଗିଲେ, ତା'ର କାରଣ ମୁଁ ଠଉରାଇ ପାରିଲି ନାହିଁ ।

ସେ ବର୍ଷ ଦଶହରା ଛୁଟି କଟାଇବାକୁ ସପରିବାର ମୁଁ ଯାଇଥାଏ କଲିକତା । ପ୍ରତିବର୍ଷ ପରି ପୂଜା 'ସମାବେଶ' ନେଇ ଜଗଦୀଶବାବୁବି ସେତିକିବେଳକୁ ଯାଇଥାନ୍ତି କଲିକତା । ସାଙ୍ଗରେ ତାଙ୍କ ସ୍ତ୍ରୀ ଓ ନାତି ନାତୁଣୀ (୯ବାବୁଲିର ପୁଅ ଝିଅ) ଆମେ ରହୁଥାଉ ଉତ୍କଳ ଭବନରେ ଜଗଦୀଶବାବୁଙ୍କୁ ତାଙ୍କ କୋଠରୀରେ ଭେଟିଲି । ଚା' ମଗାଇଲେ । ପୂଜା 'ସମାବେଶ'ର କପିଟିଏ ଦେଲେ । ମୋତେ ଦେଖି କାହିଁକି କେଜାଣି ତାଙ୍କ ରାଗ ପାଣି ପାଟିଗଲା । ଆବେଗରେ ମନଖୋଲି କହିପକାଇଲେ-ଏଥର ମୁଁ ତମ ଉପରେ ରାଗି ତମ କବିତାଟି ପୂଜାରେ ଦେଇନାହିଁ ଯଦିଓ ତମ କବିତା ଉପରେ ମୋ'ର କିଛି କହିବାର ନାହିଁ । ତମେ ଭୁବନେଶ୍ୱର ଆସିଲଣି । ତମର ଜମା ସାକ୍ଷାତ୍ ମିଳୁନାହିଁ । 'ସମାବେଶ'ର ଖବର ବି କିଛି ନେଉନାହଁ ।' କବିତାଟି ସିନା ଦେଲିନାହିଁ, ପରେ କିନ୍ତୁ ମନଟା ଭାରି

ଟେଲିଗ୍ରାଫ୍ ହେଲା । ଭାବିଲି, ବଡ଼ ଭୁଲ୍‌ଟିଏ ହୋଇଗଲା । ତମ  କବିତା ଆସନ୍ତା 'ଜାନୁୟାରୀ' ସଂଖ୍ୟାରେ ଯାଉଛି ।

କି ମନଖୋଲା କଥା । ଜୀବନରେ ଏହିଭଳି ଅନ୍ତତଃ ଜଣେ ଶତ୍ରୁଙ୍କୁ ପାଇବା ପାଇଁ ମଣିଷ ପ୍ରୟୋଜନ ହେଲେ  ତପସ୍ୟା କରୁ ଯେପରି କବି ରାଜେନ୍ଦ୍ର ! ଏମାନେ ସବୁ ବଶିଷ୍ଠଙ୍କ ବଂଶଧର ! ବଶିଷ୍ଠମେଧ ଯଜ୍ଞରେ ନିଜେ ବଶିଷ୍ଠ ହିଁ ପୁରୋହିତ ।  କଲିକତା ରହଣି ବେଶ୍ ମଜାଦାର୍ ହେଲା । ସେଇ କେଇଦିନ ଖୁବ୍ ବିଳମ୍ବିତ ରାତ୍ରିଯାଏ ବାହାର ବାଲ୍‌କୋନିରେ ବସି ଆମେ ଗପସପ ହେଉଁ । ସେଇଦିନଠୁଁ  ଜଗଦୀଶବାବୁ  ନିୟମିତ 'ସମାବେଶ'ର ପ୍ରତ୍ୟେକ ସଂଖ୍ୟା ମୋ' ପାଖକୁ ପଠାନ୍ତି । ମୁଁ ବି ତାଙ୍କ ନାତି ପାଇଁ 'ଶିଶୁଲେଖା' ପଠାଏ । ସେଇ ଦି' ଦିନିଆ ପରଦେଶରେ ଆମ ପରିବାର ଓ ଜଗଦୀଶବାବୁଙ୍କ ପରିବାର ଏମିତି ଏକାନ୍ତ ହୋଇଯିବେ, ମୁଁ ଭାବିନଥିଲି ।

ଏଥର ପୂଜା ପାଖେଇ ଆସୁଛି । କେଇଦିନ ହେବ ଭାବୁଚି, ଯିବି ଜଗଦୀଶବାବୁଙ୍କୁ ସାକ୍ଷାତ୍ କରି ପୂଜା 'ସମାବେଶ' ପାଇଁ କବିତାଟିଏ ଦେଇଆସିବି । ଜଗଦୀଶବାବୁ ନଥିଲେ ମାଇତିବାବୁ ବା ସରୋଜବାବୁଙ୍କୁ କବିତା ଦେଇଆସେ । ମାଇତିବାବୁ  ବଡ଼ ମେଳାପୀ, ଜଗଦୀଶବାବୁଙ୍କ ଆଗରୁ ବାଟକାଟି ସେ ଗ୍ଲଲିଗଲେ । କାରଣ 'ସମାବେଶ' ର ସଂପାଦକଙ୍କ ମୃତ୍ୟୁ ସେ ଦେଖିପାରି ନଥାନ୍ତେ । ସରୋଜବାବୁ ଓ ଟୁଟୁଙ୍କ କାନ୍ଧରେ ଏଣିକି 'ସମାବେଶ'ର ଗୁରୁଭାର । ସେମାନେ  ନିଶ୍ଚୟ ସଂଭାଳିବେ । ଜଗଦୀଶବାବୁଙ୍କ ଆତ୍ମା 'ସମାବେଶ' ଓ 'କ୍ୱାଲିଟି ପ୍ରେସ୍'କୁ ଧ୍ରୁବତାରା ପରି ଜଗି ରହିବ, ଅନ୍ତତଃ ତାଙ୍କ ଜୀବଦ୍ଦଶାରେ ସେ ଦେଖିଥିବା ସ୍ୱପ୍ନଗୁଡ଼ିକ ପୂର୍ଣ୍ଣାଙ୍ଗ ହେବା ପର୍ଯ୍ୟନ୍ତ !

'କଲିକତା' ରୁ 'ଭୁବନେଶ୍ୱର', ଆସନ୍ତାକାଲିରୁ 'ସମାବେଶ'– ଜଗଦୀଶବାବୁଙ୍କ ସ୍ମୃତି ଖୁବ୍ ଲମ୍ବା । ଦିଗ୍‌ବଳୟଯାଏଁ ପାଇଯିବ ଲମ୍ୱେଇ ଧରିଲେ :  ନିଜେ କହନ୍ତି ବୈଷ୍ଣବ ପାଣିଙ୍କୁ ସେ କାନ୍ଧରେ ଉଠେଇଥିଲେ । ତାଙ୍କୁ ଆଜି ସାରା ଓଡ଼ିଆଜାତି କାନ୍ଧରେ ଉଠେଇଲା । ଦୁଃଖ ରହିଗଲା, ଯିବା ଆଗରୁ ଆଉ ଥରେ ତାଙ୍କ ସହ ଦେଖା ହେଲାନାହିଁ ଦେଖା ନହେବାର ଏଇ ଦୁଃଖ ଜୀଇଁଥିବାଯାଏଁ ମୋ ଆତ୍ମାକୁ ଘେରି ରହିବ, କାନ୍ଦ କାନ୍ଦ କରି ରଖିବ ! ତାଙ୍କ ସୂକ୍ଷ୍ମ ଶରୀର ସହ ନିଶ୍ଚୟ ନିତିପ୍ରତି ଭେଟ ହେବ, ମାଟିରେ ମିଶିଯାଉ ପଛେ ମରଶରୀର । ସେ ମରିଯାଇପାରନ୍ତି । କିନ୍ତୁ ଆମଠୁଁ ଅଭିନ୍ନ ହୋଇ ନପାରନ୍ତି । ତାଙ୍କ ଆତ୍ମାର ସଦ୍‌ଗତି ହେଉ । 'ସମାବେଶ' ଆହୁରି ହଜାରେ ବର୍ଷ ବଞ୍ଚିରହୁ ।



# ଟାଙ୍କ ମୁହଁ ନାଁ ସମାବେଶ

**ଚିତ୍ତ ମହାପାତ୍ର**

ତାଙ୍କୁ ଅନେକ ଥର ଦେଖିଥିଲେ ହେଁ ମାତ୍ର ଦୁଇଥର କଥାବାର୍ତ୍ତା । କଥାବାର୍ତ୍ତାର ମୋଟ ସମୟସୀମା ଅନ୍ତତଃ ଦୁଇଘଣ୍ଟା ପାଖାପାଖି । ପୂର୍ବରୁ ଜଗଦୀଶ ପାଣିଙ୍କ ସମାବେଶ ହିଁ ଜାଣିଥିଲି । ପରେ ତାଙ୍କ ମୁହଁ ଆମ ଗାଁ ଶ୍ରୀ ଅଚ୍ୟୁତାନନ୍ଦ ଆଶ୍ରମ ଠାରେ ଦେଖୁ ଦେଖୁ ପାଖର ଅନ୍ୟମାନେ କହନ୍ତି ସମାବେଶ ବାବୁ ଆସିଛନ୍ତି । ତାଙ୍କ ସହ ଦେଖା ପରଠୁ ସମାବେଶ ଦେଖିଲେ ତାଙ୍କର ମୁହଁ–ମୁହଁ ଆଗକୁ ଆସେ । ଦେହାନ୍ତର ଦୁଇବର୍ଷ ପୂର୍ବରୁ ତାଙ୍କ ମୁହଁ କେମିତି ଭାରି ନୀରବ ଥିଲା । ଧୀର ସ୍ୱରରେ ଅଳ୍ପ ଅଳ୍ପ କଥା କହୁଥିଲେ ସେ । ମୋଟା ମୋଟି ତାଙ୍କ ଭିତରଟା ଯେପରି ଭାଂଗିଯାଇଛି । ସତକୁ ସତ ଭାଗ୍ୟ ଚକ୍ର ତାଙ୍କ ହାତ ଭାଂଗିଦିଏ– ହାତ ଭାଂଗିବା ପରେ ମଧ୍ୟ ଆଶ୍ରମରେ ତାଙ୍କୁ ଦୁଇଥର ଭେଟିଚି– କଥା ଲାଗେ ଯେମିତି ତାଙ୍କର ଶତସ୍ୱପ୍ନ ଗଢିବାକୁ ଅଛି । ଏପରିବି ଲାଗେ ସ୍ୱପ୍ନ ତାଙ୍କର ସଫଳ ହୋଇନି ଏଣୁ ସେ ଆଉ କିଛି ଗଢିବେନି । ମାତ୍ର ସବୁ କଥା ଭିତରେ ସମାବେଶ ସଂପର୍କରେ କିଛି କିଛିନାଁ କିଛି ସମୟଥାଏ । ହରିସାର୍ ସ୍ମୃତି ସଭାରେ କହିଲେ– ସେ ବାରମ୍ବାର ୧୦ବର୍ଷ ତଳର 'ସମାବେଶ ଖୋଜନ୍ତି' ଉଇ ଲଗା ସମାବେଶକୁ ଝାଡନ୍ତି । ଆମେ କେତେଜଣ ଟୋକା କଥାଟାର ଶହେ ଶତକଡ଼ା ବାସ୍ତବ ହିଁ ଅନୁଭବ କଲୁ । ଅର୍ଥାତ୍ ପୂର୍ବ ପ୍ରକାଶିତ ସମାବେଶରେ ଥରେ ୧୦ବର୍ଷ ତଳର ସମାବେଶ ଖୋଜି ଯେ କେହି ପଠାଇଲେ ପୁରସ୍କାର ଘୋଷଣା କରାଯାଇଥିଲା । ଏବେ କେମିତି କହିବୁନି ଯେ ତାଙ୍କ ମୁହଁର ନାଁ ସମାବେଶ ବୋଲି । ଉଇ ବସାରୁ ସମାବେଶକୁ ଖୋଜନ୍ତି ନାଁ ତାଙ୍କ ଝାଳ, ଲୁହ, ସ୍ମୃତି, ବୟସ, ଆୟୁଷ ବା ତାଙ୍କ ନିଜ ମୁହଁ ଖୋଜନ୍ତି ଏବେ ଆପଣମାନେ ଯାହା ହୃଦ୍‌ବୋଧ କରି ବୁଝିବେ ।

**ଅନ୍ୟ ଦିଗରୁ**

କ୍ୱାଲିଟି ପ୍ରେସ୍‌କୁ ଥରେ ଗୋଟିଏ ଛାତ୍ର ସଂଗଠନର କାମନେଇ କରିବାକୁ ଯାଇଥାଏ ଠିକ୍ ୯୨ ପୂଜା ପରେ । ଆଶା ସମାବେଶ ଛପା ସ୍ଥାନରୁ ସମାବେଶଟିଏ ପାଆନ୍ତିନି । ମାନେ କମ୍ ପଇସାରେ ମିଳିଯିବ କି । ମାତ୍ର ପ୍ରେସ୍‌ରୁ ବାହାରି ଆସିବାବେଳେ ତାଙ୍କୁ ଭେଟିଥିଲି ଅନ୍ୟକଥାବାର୍ତ୍ତାବେଳେ ହାତକୁ ସମାବେଶ ପହଞ୍ଚି ସାରିଥିଲା ।

ଆଉ ଥରେ ସେଇ ଛାତ୍ର ସଂଗଠନର କ୍ୱାଲିଟି ପ୍ରେସ୍ ମ୍ୟାନେଜରଙ୍କ ସହିତ ପଇସା ପତ୍ର ନେଇ ଅଳ୍ପ ଯୁକ୍ତିତର୍କ ହୋଇଥିଲା । ମ୍ୟାନେଜର ନିୟମ ମୁତାବକ ଅର୍ଥଦାବି କରୁଥାନ୍ତି । ସାଙ୍ଗରେ ଯାଇଥିବା ଛାତ୍ରନେତା ଜଣକ ପଇସା ଦେବାକୁ ନାରାଜ । ଶେଷରେ କଥାଟା ତାଙ୍କ କାନକୁ ଆସିଲା ମାତ୍ର ତିନି ମିନିଟ୍ ଭିତରେ ତାଙ୍କର ମ୍ୟାନେଜରଙ୍କୁ ନିର୍ଦ୍ଦେଶ ଥିଲା ଛାତ୍ରମାନଙ୍କୁ ପଇସା ଫେରାଇ ସନ୍ତୁଷ୍ଟ କର ।

ପ୍ରକୃତରେ ଏବେ ସେ ନାହାନ୍ତି କହିଲେ ଘୋର ଦୁଃଖ ଲାଗୁଚି । ସମାବେଶସାରା ତାଙ୍କ ମୁହଁ । ଶହ ଶହ ସଂଖ୍ୟାର ସମାବେଶରେ ତାଙ୍କ ପ୍ରତିଶ୍ରୁତି ତାଙ୍କ ପ୍ରେରଣା– ସେ ସବୁ ଅଛି– ସମାବେଶ ଅଛି ତ ସେ ଅଛନ୍ତି । ତାଙ୍କ ମୁହଁ ନାଁ ସମାବେଶ ।



*ଦୁର୍ଲ୍ଲଭ ମାନବଜନ୍ମ ଲାଭକରି ଯିଏ ଈଶ୍ୱରଙ୍କୁ ପାଇବାପାଇଁ ଯତ୍ନଶୀଳ ନହୁଏ, ତାର ଜୀବନ ବୃଥା । ଭଗବାନଙ୍କ ନାମ ସ୍ମରଣ, ତାଙ୍କର ଯଶ କୀର୍ତ୍ତନ ଏବଂ ଗୁଣଗାୟନ, ସାଧୁସେବା ଏବଂ ଏକାନ୍ତରେ ଭଗବଦ୍ ଧ୍ୟାନ ଭଗବାନଙ୍କୁ ପାଇବାର ଉପାୟ ।*

# "କରିଅଛି ମରଣକୁ ଅମୃତ ସୋପାନ"

## ଜୟସିଂହ ମହାପାତ୍ର

କେନ୍ଦ୍ରାପଡ଼ା ଜିଲା ମଧ୍ୟରେ ଚନ୍ଦନନଗର ଏକ ପ୍ରସିଦ୍ଧ ଅଞ୍ଚଳ। ସେଠାରେ ବିରାଜମାନ କରିଥିବା ଶ୍ରୀଶ୍ରୀ ଚନ୍ଦ୍ରଶେଖର ମହାଦେବଙ୍କର ସ୍ୱତନ୍ତ୍ର ସୁଖ୍ୟାତି ରହିଛି କାହିଁ କେଉଁ କାଳରୁ। ଚନ୍ଦନନଗର ସଂଲଗ୍ନ ଗ୍ରାମମାନଙ୍କରେ ଥିବା ବ୍ରାହ୍ମଣମାନେ ପ୍ରାୟତଃ ଏହି ମହାଦେବଙ୍କର ସେବକରୂପେ ପରିଗଣିତ ହୋଇଥାନ୍ତି। ନିକଟସ୍ଥ ଗ୍ରାମମାନଙ୍କ ମଧ୍ୟରୁ 'ଗରା' କ୍ଷୁଦ୍ର ହେଲେ ହେଁ ପରିଚ୍ଛନ୍ନ ଗ୍ରାମଟିଏ। ସେଇ ଗାଁର ଅଳ୍ପ କେତୋଟି ବ୍ରାହ୍ମଣ ପରିବାର ମଧ୍ୟରେ ବାସୁଦେବ ପାଣି ଅନ୍ୟତମ।

ଏବେ ରାଜନଗର ଓ ଚନ୍ଦନନଗର ମଧ୍ୟରେ ବାଟଘାଟର ଯେପରି ସୁବିଧା ହୋଇଗଲାଣି ଅର୍ଦ୍ଧଶତାବ୍ଦୀ ତଳେ ତାହା କଳ୍ପନାର ବାହାରେ ଥିଲା। ରାଜନଗର ବଜାର ଉପରେ ସେତେବେଳେ ଯେଉଁ କେତୋଟି ତେଜରାତି ଦୋକାନ ଥିଲା, ତା ଭିତରେ ମୋର ସ୍ୱର୍ଗୀୟ ପିତା ପୂଜ୍ୟ ଶ୍ରୀମଣି ମହାପାତ୍ରଙ୍କ ଦୋକାନଟି ଥିଲା ଅନ୍ୟତମ।

ସେବେଳେ ବାହାରୁ ଯେଉଁମାନେ ଆସୁଥିଲେ ସେମାନଙ୍କ ମଧ୍ୟରୁ ଅଧିକାଂଶ ଏହିଠାରେ ହିଁ ରାତ୍ରଯାପନ କରୁଥିଲେ।

ପାଣିବାବୁ ମୋ ବାପାଙ୍କଠାରୁ ବୟସରେ ସାନ ହୋଇଥିବାରୁ ସେ ତାଙ୍କୁ ଯଥାର୍ଥ ସମ୍ମାନ ଦେଇଥାନ୍ତି। ମୋ ପିଲାକାଳରୁ ତାଙ୍କ ସହ ସାମାନ୍ୟ ପରିଚୟ ହେବାର ସୁଯୋଗ ମିଳିଥିଲା।

ଆର୍ଥିକ ଅବସ୍ଥାରେ ସେ ସେପରି ସ୍ୱଚ୍ଛଳ ନ ଥିଲେ କିନ୍ତୁ ମାନସିକ ଅବସ୍ଥାରେ ଥିଲେ ବଡ଼ ତେଜୀୟାନ। ସମ୍ଭବତଃ ସେହି ପ୍ରଭାବ ପଡିଥିଲା ତାଙ୍କର ସନ୍ତାନମାନଙ୍କ ଉପରେ।

ତାଙ୍କର ଚାରିପୁଅ କେଶବ, ଜଗଦୀଶ, ପୀତବାସ ଓ ଅମ୍ବରୀଶ। ଏମାନଙ୍କ ମଧ୍ୟରେ ଜଗଦୀଶ ଥିଲା ଏକ କାଟର ପିଲା। ପ୍ରତ୍ୟେକ କାର୍ଯ୍ୟରେ ସେ ମାଡ଼ି ଯାଉଥିଲା ଆଗକୁ। ସୁବିଧା ଅସୁବିଧା ପ୍ରତି ଚିନ୍ତା ନଥିଲା, ନଥିଲା ଭ୍ରୂକ୍ଷେପ।

ଏବେ ସିନା ବିଭିନ୍ନ ଅଞ୍ଚଳରେ ନାନାପ୍ରକାର ଜାନିଯାତ୍ରା ହେଲାଣି କିନ୍ତୁ ସେତେବେଳେ ଏ ପାଖ ଅଞ୍ଚଳରେ ଦୁଇଟି ଯାତ୍ରା ଥିଲା ପ୍ରସିଦ୍ଧ। ଗୋଟିଏ ହେଲା ରାଜନଗର ଶାରଦୀୟ ଦୁର୍ଗାପୂଜା ଓ ଅନ୍ୟଟି ଚନ୍ଦନନଗରର ଜାଗରଯାତ୍ରା, ଦୁର୍ଗାପୂଜାଠାରୁ ଜାଗରଯାତ୍ରାରେ ବହୁ ଜନସମାଗମ ହେଉଥିଲା।

ଉଡିକତା ଜମିଦାରୀ ଯେତେବେଳେ କନିକାରାଜା ବଳଭଦ୍ର ଭଞ୍ଜଙ୍କ ଶାସନାଧୀନ ଥିଲା, ସେ ପ୍ରବର୍ତ୍ତନ କରିଥିଲେ ଶିବରାତ୍ରୀଠାରୁ ସପ୍ତାହେ ବ୍ୟାପୀ ଏ ଯାତ୍ରାକୁ। ପରେ ଏହା ପ୍ରାୟ ୧୫ ଦିନ କାଳ ମହା ସମାରୋହରେ ଅନୁଷ୍ଠିତ ହେଉଥିଲା। ଜାଗରବେଳକୁ ବର୍ଷା ପ୍ରାୟତଃ ନ ଥିବାରୁ କଟକ ବାଲିଯାତ୍ରା ପରି ଏହା ଏକ ବିରାଟ ବିପଣୀ ମେଳା ହେଉଥିଲା।

ଏବେକୁ ପ୍ରାୟ ୪୩/୪୪ ବର୍ଷତଳେ ଏହି ଜଗଦୀଶ ପରି ପିଲାମାନେ ଏକ ସ୍ୱେଚ୍ଛାସେବକ ବାହିନୀ ଗଢି ଉତ୍ସବଟିକୁ ସୁଷ୍ଠୁ କରିବା ପାଇଁ କମ୍ ଚେଷ୍ଟା କରୁନଥିଲେ। ସେହି ସମୟରେ ଜଗଦୀଶ ସହ ମୋର ପରିଚୟ ହୋଇଥିଲା ଶ୍ରୀ ଚନ୍ଦ୍ରମୌଳିକ ମନ୍ଦିରରେ। ଖାଲି ପରିଚୟ ହୋଇନଥିଲା ତାଙ୍କ ବାପାଙ୍କ ସହ ତାଙ୍କ ଘରକୁ ଯିବାର ସୁଯୋଗ ମିଳିଥିଲା।

ଆମେ ଉଭୟେ ଥିଲୁ ପାଖାପାଖି ବୟସର। ଜଗଦୀଶର କଥନ ଭଙ୍ଗୀ ଥିଲା ବଡ଼ ଆକର୍ଷଣୀୟ। ସେହି କାରଣରୁ ତା ସହ ମୋର ବନ୍ଧୁତ୍ୱ ଥିଲା ଅତି ଅନାବିଳ।

ଭାରତଛାଡ଼ ଆନ୍ଦୋଳନ ପ୍ରଶମିତ ହେବାପରେ ମୁଁ ସାଲେପୁର ହାଇସ୍କୁଲରେ ନାମ ଲେଖାଇଥିଲି। କିନ୍ତୁ ଆନ୍ଦୋଳନରେ ଭାଗ ନେଇଥିବାରୁ ମୋ ନାମରେ ଯେ ଗୋଟିଏ ୱାରେଣ୍ଟ ରହିଛି ଏ କଥା ମତେ ଜଣା ନଥିଲା। ସେ ସମୟରେ ଜଣେ ଜାତୀୟବାଦୀ ମୁସଲମାନ ଶ୍ରୀଯୁକ୍ତ ମୁନିମ ମିଆଁ ସେଠାରେ ହେଡ୍‌ମାଷ୍ଟର ଥିଲେ। ସେ କୌଣସି ପ୍ରକାରେ ଏହାର ସୂଚନା ପାଇ କିଛିଦିନ ଲାଗି ବାହାରକୁ ଚ୍ଛଲିଯିବା ପାଇଁ ପରାମର୍ଶ ଦେଲେ। ସେତେବେଳେ ରାଜନଗରର ମୋର ଜଣେ ସହପାଠୀ ବନ୍ଧୁ ଶ୍ରୀଧର ପ୍ରଧାନ ପୁରୀ ସଂସ୍କୃତ କଲେଜର ଆୟୁର୍ବେଦ ବିଭାଗରେ ଅଧ୍ୟୟନରତ ଥାଇ ହଷ୍ଟେଲ୍‌ରେ ରହୁଥିଲେ। ମୁଁ ପହିଲେ ସେଇଠି ପହଞ୍ଚିଥିଲି। ମୋର ଧାରଣା ନଥିଲା ଜଗଦୀଶ ସେଇ ହଷ୍ଟେଲରେ ରହି ଆୟୁର୍ବେଦ ପଡଥିଛି ବୋଲି। ମୁଁ ତାକୁ ଦେଖିବା ପୂର୍ବରୁ ସେ ମତେ ଦେଖିଦେଲା। ଧାଇଁଆସି ଏକପ୍ରକାର କୁଣ୍ଢାଇ ନେଇଗଲା ତା ସିଟ୍‌କୁ।

ଆଃ ! କି ଆତିଥେୟତା ସତେ ?

ପରିବର୍ତ୍ତୀ କାଳରେ ମୁଁ ଆଉ ସାଲେପୁରରେ ରହିବା ସମ୍ଭବ ନ ହେବାରୁ କିଛିକାଳ ମୟୂରଭଞ୍ଜ ଗଡ଼ଜାତରେ ରହି ଫେରିଲି, ତେଣୁ ଦୀର୍ଘକାଳ ଆଉ ଜଗଦୀଶ ସହ ସାକ୍ଷାତ ହେବାର ସୁଯୋଗ ହୋଇନଥିଲା। ୧୯୫୧ରେ କେନ୍ଦ୍ରାପଡ଼ା ହାଇସ୍କୁଲରୁ ମୁଁ ଉତ୍ତୀର୍ଣ୍ଣ-ହୋଇ କଲେଜକୁ ଆସିଲି।

ପ୍ରଥମ ସାଧାରଣ ନିର୍ବାଚନ ସମୟରେ ମହତାବଜୀ କେନ୍ଦ୍ରମନ୍ତ୍ରୀ ଥିଲେ। ସେ ଆସିଥିଲେ କଟକ। ରାଜନଗରର ଜଣେ ପ୍ରାର୍ଥୀଙ୍କୁ କଂଗ୍ରେସ ଟିକେଟ ଦେବାପାଇଁ ଆମେ କେତେକ ବନ୍ଧୁ ତାଙ୍କୁ ଭେଟିବା ପାଇଁ ବିହାରୀବାଗ ଯାଇଥିଲୁ। ସେଇ ମାତ୍ର ସେ ମ୍ୟୁନିସ୍‌ପାଲିଟ୍ ଚନ୍ଦନପୋଖରୀ ପାଖ ପଡ଼ିଆରେ ସାଧାରଣ ସଭାରେ ଭାଷଣ ଦେଇ

ଫେରି, ବସିଥାନ୍ତି ପ୍ରଜାତନ୍ତ୍ର ସର୍କୁଲେସନ୍ ବିଭାଗ ବାରଣ୍ଡାରେ। ବହୁ ବିଶିଷ୍ଟ ବ୍ୟକ୍ତି ସେଠାରେ ଥାଆନ୍ତି।

ପୂର୍ବରୁ ଆମେସବୁ କେବେ ମହତାବଙ୍କ ସହ ସାକ୍ଷାତ ଆଲୋଚନା କରିବାର ସୁଯୋଗ ପାଇନଥିଲୁ। ସେଇଠି ଦୈବାତ ଭେଟ ହୋଇଗଲା ବନ୍ଧୁ ଜଗଦୀଶ ସହ। ସେତେବେଳକୁ ସେ ତାଙ୍କ ସହ ବେଶ୍ ପରିଚିତ ହୋଇସାରିଥିଲା। ଟିକିଏ ବିଳମ୍ବ ହେଲେ ମଧ୍ୟ ତା ଯୋଗାଡ଼ରେ ମହତାବଜୀଙ୍କ ସହ କେବଳ ଆଲୋଚନା ହୋଇନଥିଲା। ଆମସହ ଜଣେ ହୋଇ ଏ ଅଞ୍ଚଳର ଜଣକୁ ଟିକେଟ ଦେବାପାଇଁ ଦୃଢ଼ ଯୁକ୍ତି ମଧ୍ୟ ସେ ଉପସ୍ଥାପିତ କରିଥିଲା। ନିର୍ଦ୍ଦିଷ୍ଟ କେତୋଟି ବହି ପଢ଼ି ସେ ଗୋଟେ ଉଚ୍ଚଶିକ୍ଷିତ ହେବାକୁ ଯେପରି ଚାହୁଁନଥିଲା ସେମିତି ଚାହୁଁନଥିଲା କିଛି ଚେରମୂଳ କୁଟି ବଡ଼ କବିରାଜଟିଏ ମଧ୍ୟ ହେବାକୁ। ତା ଅଧ୍ୟୟନ ଓ ଲିଖନ ଥିଲା ଯେପରି ବ୍ୟାପକ ତା କାର୍ଯ୍ୟ କରିବା ପରିସର ମଧ୍ୟ ଥିଲା ସେହିପରି ବ୍ୟାପକ।

ମହତାବଙ୍କ ସହ ପରାମର୍ଶ କରି ପୁରୀ କଲେଜରୁ ସେ ଗଲା କଲିକତା। ମଝିରେ ମଝିରେ ଆସୁଥିଲା ଘରକୁ। ଟିକିଏ ସୁବିଧା ପାଇଲେ ଆମ ଘରକୁ ଚାଲି ଆସୁଥିଲା। ଯେତେ କାମ ଥିଲେ ମଧ୍ୟ ସାଙ୍ଗରେ ନ ନେଇ ଛାଡୁନଥିଲା କୌଣସି କାରଣରୁ ନିଜେ ନ ଆସିପାରିଲେ କାହାକୁ ହେଲେ ପଠାଇ ନିମନ୍ତ୍ରଣ କରୁଥିଲା ତା' ଘରକୁ। ବାସ୍ତବିକ ବନ୍ଧୁବତ୍ସଳ କହିଲେ ଯାହା ବୁଝାଏ ଜଗଦୀଶ ଥିଲା ସେହି କାଟର। ବନ୍ଧୁଟିକୁ ଦେଖିଲେ ସେ ସତେ ଯେପରି କୋଟିନିଧି ପାଇଲାପରି ମନେ କରୁଥିଲା।

ଥରେ ହଠାତ୍ ମୁଁ ଖବର ପାଇଲି କୌଣସି ଜରୁରୀ କାର୍ଯ୍ୟରେ ବ୍ୟସ୍ତ ଥିବାବେଳେ। ମତେ ବରଯାତ୍ରୀ ରୂପେ ଯିବାକୁ ପଡ଼ିବ କେନ୍ଦ୍ରାପଡ଼ା। ସେ ଆମ ସାର୍ ଉମାନାଥ ପତିଙ୍କ କନ୍ୟାକୁ ବିବାହ ହେଉଥିବାରୁ।

ତା ବିବାହ ପରଠାରୁ ଆମେ ଉଭୟେ ନାନା ଜଞ୍ଜାଳରେ ବ୍ୟସ୍ତରହି ଦୀର୍ଘକାଳ ପର୍ଯ୍ୟନ୍ତ ଆଉ ପାରସ୍ପରିକ ସଂପର୍କ ରଖିବା ସମ୍ଭବ ହୋଇନଥିଲା।

୧୯୭୧ ଅକ୍ଟୋବରର ବାତ୍ୟା ଓ ସମୁଦ୍ର ଜଳ ପ୍ଲାବନରେ ସମଗ୍ର ରାଜନଗର ଥାନାରେ ଖଣ୍ଡପ୍ରଳୟ ସୃଷ୍ଟି ହୋଇ ଯାଇଥିଲା। କେବଳ ସାତଭାୟା ଅଞ୍ଚଳରୁ ପ୍ରାୟ ପାଞ୍ଚ ହଜାରରୁ ଅଧିକ ଲୋକ ଅକାଳ ମୃତ୍ୟୁବରଣ କରିଥିଲେ।

ପ୍ରାକ୍ତନ ବିଧାୟକ ବନ୍ଧୁ ଅନନ୍ତ ଚରଣ ତ୍ରିପାଠୀଙ୍କ ସହ ଆମେ କେତେକ ଯାଇଥିଲୁ ଏ ବିଷୟରେ ମହତାବଜୀଙ୍କ ସହ ଆଲୋଚନା କରି କିଛି ଆଶୁ ବ୍ୟବସ୍ଥା କରିବା ପାଇଁ। ସେତେବେଳକୁ ଜଗଦୀଶ ପ୍ରଜାତନ୍ତ୍ରରେ ଜଣେ ପଦସ୍ଥ ବ୍ୟକ୍ତି। ସେଠାରେ ସେ ମହତାବଙ୍କର ଡାହାଣହାତ ପରି କାର୍ଯ୍ୟ କରୁଥାଏ।

କିଛିଦିନ ପରେ ଜାଣିଲି ଜଗଦୀଶ ପ୍ରଜାତନ୍ତ୍ରରୁ ଯାଇ ଭୁବନେଶ୍ୱରରେ ଏକ ପ୍ରେସ୍

କରି 'ସମାବେଶ' ନାମରେ ଗୋଟିଏ ସାହିତ୍ୟ ପତ୍ରିକା ପ୍ରକାଶ କରୁଛି। ପତ୍ରିକା ଖଣ୍ଡିଏ ସଂଗ୍ରହ କଲି। ବେଶ୍ ଉଚ୍ଚକୋଟୀର ମନୋଜ୍ଞ ପତ୍ରିକା ତ ନୁହେଁ, ପୁସ୍ତକଟିଏ। ବଧେଇ ଜଣାଇ ଚିଠି ଖଣ୍ଡିଏ ଲେଖିଥିଲି।

ପ୍ରାୟ ଦୁଇବର୍ଷ ତଳେ ମୋର ସାମାନ୍ୟ ହୃଦ୍‌ରୋଗ ଆରମ୍ଭ ହୋଇଥିଲା। କଟକ ଡାକ୍ତରଙ୍କ ପରାମର୍ଶକ୍ରମେ ବି.ଜେ.ବି. କଲେଜରେ ଅଧ୍ୟାପକ ଥିବା ମୋ ପୁଅ ଧୀରେନ୍ଦ୍ରର ସରକାରୀ କ୍ୱାର୍ଟରରେ ରହୁଥିଲି, ମିଉଜିଅମ୍ ପରିସରରେ କାର୍ଯ୍ୟ କରୁଥିବା ଡା. ଭଗବାନ ପଣ୍ଡାଙ୍କୁ ସାକ୍ଷାତ କରିବାକୁ ଦିନେ ଯାଉଥିବାବେଳେ ଭଞ୍ଜ କଳାମଣ୍ଡପ ନିକଟରେ ଅଗ୍ନନକ ସାକ୍ଷାତ ହୋଇଗଲା ବନ୍ଧୁ ଜଗଦୀଶ ସହ।

ସେଇ ଉଚ୍ଛଳ ହସ, ସେଇ ଆଗକୁ ମାଡ଼ିଯିବାର ଠାଣି କିନ୍ତୁ ଟିକେ ମଳିନ ଚେହେରା ପରି ଜଣା ପଡୁଥିଲା।

ବସାକୁ ଡାକିଲା, କହିଲି ଆଜି ବଡ଼ ବ୍ୟସ୍ତ ଅଛି। ବସା ଠିକଣା କହ ଆଉ ଦିନେ ଆସି ତୋତେ ସାଙ୍ଗରେ ନେଇ ଆମ ଘର ଆଡ଼େ ଯିବି, କହିଲି। ସବୁବେଳେ କାହିଁକି ଏତେ ତରତର ? ତା ଉତ୍ତର ଥିଲା ମୃତ୍ୟୁହେଲେ ହୁଏତ ମୁଁ କାମରୁ ବିଶ୍ରାମ ନେବି ତା ପୂର୍ବରୁ ନୁହେଁ। କେବଳ ଈଶ୍ୱରଙ୍କଠାରେ ମୋର ପ୍ରାର୍ଥନା–ସେ ମତେ ବେଶୀଦିନ ବେମାରରେ ପକାଇ ନରଖନ୍ତୁ।

ଈଶ୍ୱର ଏପରି ଅନାବିଳ ବନ୍ଧୁବତ୍ସଳ ବ୍ୟକ୍ତିଟିର କଥା ନ ଶୁଣନ୍ତେ ବା କିପରି ? ବାସ୍ତବିକ ସେ ତା ମରଣକୁ ଅମୃତ ସୋପାନ ହିଁ କରି ଦେଇଗଲା।

ତା ଆତ୍ମା ଚିରଶାନ୍ତି ଲାଭକରୁ ଏତିକି ପ୍ରାର୍ଥନା।



*ବୁଦ୍ଧିଯୁକ୍ତୋ ଜହାତୀହ ଉଭେ ସୁକୃତଦୁଷ୍କୃତେ।*
*ତସ୍ମାଦ୍‌ଯୋଗାୟ ଯୁଜସ୍ୱ ଯୋଗଃ କର୍ମ୍ମ ସୁ କୌଶଳମ୍ ॥*

# କାହାକୁ ଦେବି ସେ ଚିଠି ?

**ପ୍ରଭାସ ଦାସ**

ନା, ଆଉ କେବେ ଦେଖା ହେବନାହିଁ ମୋର ତମ ସହ।

ଆଉ କେବେ ପାଟିରେ ପାନ ଜାକି ପାଖରେ ବସେଇବ ନାହିଁ। ମୋଠୁ ଗପ ବି ଶୁଣିବ ନାହିଁ।

ଟାଉନ୍‌ବସ୍‌ରେ ଗଲାବେଳେ ଶ୍ରୀୟାଛକ ପାଖରେ କିଛି ଗୋଟେ ଛାଡି ଦେଇଥିବା ଅବା ହଜିଯାଇଥିଲା ଭଳି ଲାଗିବ। ସେଇମିତି ମନେହେବ। ବିଶ୍ୱାସ କରିହେଉ ନାହିଁ। ଯତରେ କ'ଣ ତମେ ଗ୍ଭଲିଗଲ ? ପାଟିରେ ପାନ ଥିଲା ତ ?

କାହା କଥା ଭାବ କି ନ ଭାବ, 'ସମାବେଶ' କଥା ବି ଟିକେ ଭାବିଲନି ? ଆଗକୁ ପରା 'ସମାବେଶ'ର ପୂଜାସଂଖ୍ୟା ?

ଦିନେ ସମାବେଶରେ ଗୋଟେ ଗପରେ ଲେଖିଥିଲି : ପ୍ରତ୍ୟେକ ଚରିତ୍ରଙ୍କର ଗୋଟେ ଗୋଟେ ସ୍ଥାୟୀ ଡାକ ଠିକଣା ଅଛି ! ଆଜି କେଉଁଟା ତମର ଡାକ ଠିକଣା ?

ତମ ଚିଠି ସାଇତି ରଖିଛି। ମୋ ଟେବୁଲ୍ ଉପରେ ସେଇମିତି ପଡ଼ିରହିଛି। ତମେ ଅନୁବାଦ କରିଥିବା ଗୃହ ଚିକିତ୍ସା (କବିରାଜି) ବହି।

ତମେ ଥାଅ କି ନଥାଅ, 'ସମାବେଶ' କିନ୍ତୁ ରହିବ : ମୁଁ ନିଶ୍ଚିତ। ସେଇଟା ପରା ତମର ଶ୍ରେଷ୍ଠ ସାରସ୍ୱତ କୃତୀ !

ଦିନେ ସମାବେଶର ଶେଷପୃଷ୍ଠା ଲେଖୁଥିଲେ କବି ରାଜେନ୍ଦ୍ର କିଶୋର ପଣ୍ଡା। ଆଜି ବିଧାତା ଲେଖିଦେଲା ଆଉ ଗୋଟେ ଶେଷପୃଷ୍ଠା, ସମୟର ପୃଷ୍ଠା ଉପରେ ଜଗଦୀଶ ପାଣି ନାହାନ୍ତି।

ତମ ସହିତ ଆଗରୁ ବିତେଇଥିବା ସୁଖଜ ଅନୁଭୂତି–ଆଜି ଗୋଟେ ଦୁଃଖଜ ସ୍ମୃତି! ଅନୁଭୂତି ଯେଉଁଠି ମରିଯାଏ, ସ୍ମୃତି ସେଇଠୁ ଜନ୍ମ ନିଏ।

କବି ହରିହର ମିଶ୍ର ଲେଖିବେ ବିଷାଦ ସଂଗୀତ। କଥାରେ କଥାରେ ଅନେକ କଥା ଲୁଚିଥିବା ଶିଳ୍ପୀ ଅସୀମ ବସୁ ରବୀନ୍ଦ୍ର ମଣ୍ଡପ ଆଗ ପାନଦୋକାନର କାଠ ବେଞ୍ଚ ଉପରେ ବସିଥିବେ। ଚଷମା କାଚତଳେ ତାଙ୍କର ବୁନ୍ଦା ବୁନ୍ଦା ଲୁହ।

ଏଥର ପୂଜାରେ ତମକୁ ଗୋଟେ ଗପ ଉତ୍ସର୍ଗ କରିବି ବୋଲି ବହୁତ ଆଗରୁ ସ୍ଥିର କରିଥିଲି 'ସମାବେଶ'ର ପୂଜାସଂଖ୍ୟାକୁ ପଠାଇବା କଥା। ଗପ ଲେଖା ସରିଛି : ଚିଠି ବି। ଓଡ଼ିଆ ସାହିତ୍ୟର ନନ୍ଦିଘୋଷ–ସମାବେଶର ସାରଥି–ଜଗଦୀଶ ପାଣିଙ୍କୁ ସମର୍ପିତ !

ଅଥଚ ତମେ ନାହଁ।

ଗପଟା ହରିହର ମିଶ୍ର ଅବା ଅସୀମ ବସୁ, ସଂପାଦକ–ସମାବେଶ, କ୍ୱାଲିଟି ପ୍ରେସ୍ ଠିକଣାରେ ପଠାଇଦେବି।

ହେଲେ ତମ ପାଖକୁ ଲେଖିଥିବା ଚିଠିଟି ?

# ସେଇ ଆଖି ଯୋଡ଼ାକ

## ରୋହିଣୀକାନ୍ତ ମୁଖାର୍ଜୀ

ତମେ ତ ବସି ରହିବା ଲୋକ ନୁହଁ, ଭାଇନା ! ଏଇନେ କଥା ହଉଥିବ, ଗପ କରୁଥିବ, 'ସମାବେଶ'ର ଭବିଷ୍ୟତ ନେଇ ନିତାନ୍ତ କଟୁ ମନ୍ତବ୍ୟରୁଡ଼େ ଫୋପାଡ଼ୁଥିବ, ପୁଣି କ'ଣ ମନେ ପଡ଼ିଯିବ। ଫାଇଲ ମଗେଇବ, ଫାଇଲ ଟେବୁଲରେ ଥୋଇ ଦି' ଗ୍ଦରିଟା ଟେଲିଫୋନ୍ କରି। ହଉ, ପରେ ଦେଖା ହେବ' କହି ଭୁସ୍‌କିନା ଉଠି ଗ୍ଦଲିଯିବ।

କଲିକତାର ଅସନା ଗଳିରେ ସେଥର ଶେଷ ନିଃଶ୍ୱାସ ନେବା ଆଗରୁ ବୈଷ୍ଣବ ପାଣି ତମକୁ କ'ଣ ସବୁ କହି ଚ୍ଲିଥିଲେ ? ତମେ ଗଣକବିଙ୍କୁ କୋଳରେ ଧରିଥିବାବେଳେ କ'ଣ ସବୁ ଆବିଷ୍କାର କରିଥିଲ ତାଂକ ସଂପର୍କରେ ? ଗଣକବିଙ୍କ ଶେଷକୃତ୍ୟ ସମୟରେ ତମେ କ'ଣ ସବୁ ଶପଥ ନେଇଥିଲ ? ଉପରମହଲାରେ ତମ ଡ୍ରଇଁରୁମ୍‌ରେ ଟେପ୍‌ରେକର୍ଡର ଖୋଲି 'ଓଡ଼ିଆ ସାହିତ୍ୟର ଏକ ଅଲିଖିତ ଅଧ୍ୟାୟ' ଲେଖିବା ପାଇଁ ସବୁ ତଥ୍ୟ ଯୋଗେଇଦେବ ବୋଲି କେଇଦିନ ଆଗରୁ କହିଥିଲ ପରା !

ଅନେକ ଦିନରୁ ଅନେକ ସାହିତ୍ୟିକ ତମକୁ ତମ ଅଦ୍‌ଭୁତ ଜୀବନର ଯେତିକି ମନେପଡୁଛି ସେତିକି ମାତ୍ର ଗ୍ରନ୍ଥଦେଇ ଆତ୍ମଜୀବନୀଟେ ଲେଖିବାକୁ କହି ଆସୁଛନ୍ତି ବୋଲି କେତେଥର ଯେ ପୁନରାବୃତ୍ତି କରିଚ ମୋର ମନେ ନାହିଁ। ହରବାବୁ, ହରିଭାଇନା, ଅସୀମବାବୁଙ୍କ ପାଖରେ ଶପଥ ନେଲାଭଳି କେତେଥର ନ କରିଚ ? ଅଥଚ ତମ ଦେହ ଖରାପ ହବାର କେଇଦିନ ଆଗରୁ ତମକୁ ପୁଣି ଥରେ ସ୍ମରଣ କରାଇଲାବେଳେ ହଁ, ହଁ, ଦେଳ ହେଲେ ଲେଖିବା ନାହିଁ ? ଏବେ ପରା ଟାଇମ୍ ଅଣ୍ଟୁନି। ଋଣରେ ପୋତି ହେଇଗଲିଣି। ଆଉ କେଇଟା ଦିନ ପରେ ଆରଂଭ କରିବା କହି ଆଡ଼େଇ ଗଲ, ସେ ଦିନ ପାଇଁ ଆମେ ଅପେକ୍ଷା କରି ଚାଲିବୁ। ତମେ ଲେଖିବ ତ ? ତମକୁ ସତରେ ଆଉ ପାରିହେଲା ନାହିଁ, ଭାଇନା ! ତମେ ଯେମିତିକୁ ସେମିତି ରହିଗଲ।

କୋଉ ମହାଜାଗତିକ ପୃଥିବୀର ପୁଣି ଗୋଟାଏ କୋଉ ମହାନ୍ ସାରସ୍ୱତ ଅନୁଷ୍ଠାନ ପାଇଁ ଡକରା ଆସିଲା କେଜାଣି ? ସେଦିନ ଚ୍ଉଁକିନା ତମର ନିଦ ଭାଂଗି ଯାଇଥିବ। ଦି'ଗ୍ଦରିଥର ଟେଲିଫୋନ୍ କରିଥିବ ନିଦ ବାଉଳାରେ, ଭୋର୍ ଭୋର୍ ନିତ୍ୟକର୍ମ ସାରି ଉପରମହଲାରୁ ଝରକାଦେଇ ଅନେଇ ଦେଖୁଥିବ ଗାଡ଼ିଟା ଠିକ୍ ଅଛି ନା ନାହିଁ। ତା' ପରେ ମଲ୍ଲୀଫୁଲ ପରି ତୋଫା ଧଳା ପଂଜାବି ଧୋତିରେ ତମ ଗଛମାନଙ୍କ ଆଡେ ଅନେଇ ଅନେଇ ତଳକୁ ଓହ୍ଲେଇ ଆସିଥିବ। ସେଠି ସକାଳ ଅପେକ୍ଷା କରିଥିବ, ତମେ ସକାଳ ଦେହରେ ଏକାକାର ହେଇ ବାହାରି ପଡ଼ିଥିବ !

ସେଠିକି କ'ଣ ତମର ସମୟ ଅଂଟୁଥିବ ? ଭଂଗା ହାତଟାକୁ ସଜାଡ଼ିବା ପାଇଁ ଆଦୌ ବାହାରୁନଥିବ, ଖାଲି ବେଲ୍ ଚିପୁଥିବ, ଅତିଥିମାନଙ୍କ ପାଇଁ ଚ୍ଚ ଆଣିବାକୁ କହୁଥିବ।

ଫାଇଲ୍‌ରେ କାଗଜପତ୍ର ସଜାଡ଼ି ରଖିବା ପାଇଁ ଧମକଉ ଥିବ ଲୋକଂକୁ । ବିରକ୍ତ ହଉଥିବ, ଶୋଧୁଥିବ ସେଠିକାର ପଣ୍ଡା; ବଡ଼ପଣ୍ଡାମାନଙ୍କୁ । ତମର ପାରିଲାପଣ ଦେଖି ସେଠି ଲୋକେ ଅବାକ୍ ହେଇଯାଉଥିବେ, ତମ କାମ କେବେ ଅଟକୁ ନଥିବ । ଅଟକେଇ ରଖିବାକୁ କେହି ସାହସ କରୁନଥିବ, ଦେଖିବନି ତମେ ଗୋଟେ ଟେଲିଫୋନ୍ କଲେ ତମକୁ ଶହେଟା ଟେଲିଫୋନ୍‌ରେ ଉତ୍ତର ଦବାକୁ ପଡୁଥିବ । ସେଠିକାର ଅନୁଷ୍ଠାନ ପାଇଁ ସଜବାଜ ହଉଥିବ ତମେ, ସେଠି ତମେ ଯା' ଆରଂଭ କରିବାକୁ ଯାଉଛ ତାର କିଛିଟା ସଂକେତ–ଆମ ଏଠି ବି କାଁ ଭାଁ ତା'ର ପ୍ରତିଧ୍ୱନି–ଏଠିକାର ବାଡ଼ିବଗିଚ୍ଚାରେ । ଲୋକ ଗହଳିରେ ଲେଖକଙ୍କ ଭିଡ଼ରେ, ଛାଡ଼ ! ତମେ ତ ବସିରହିବା ଲୋକ ନୁହଁ । ତମର କ'ଣ ଆଉ ସମୟ ଅଛି ଏତେ କଥା ଶୁଣିବା ପାଇଁ ?

ଏତେ ମନୁଆ ହେଲେ ଚଳିବ ଭାଇନା ? ଖ୍ରିଜିରପୁରରୁ ବୋହୁବଜାର, ବୋହୁ ବଜାରରୁ ଆସନ୍ତାକାଲି, ସେଠି ମାଇତିବାବୁ, ଲୁହାକାରଖାନା, ପ୍ରଜାତନ୍ତ୍ର ପ୍ରେସ୍, ଡଃ ମହତାବ, ଜାନକୀବାବୁ, କ୍ୱାଲିଟି ପ୍ରେସ୍, ନୂତନ ପ୍ରସ୍ତର ପ୍ରତିଶ୍ରୁତି ସ୍ୱରୂପ ତମ ବିପ୍ଳବର ଆଧାର 'ସମାବେଶ'– କୋଉଠି ନ ମୁଣ୍ଡ ଗଳେଇଚ ? ଗୋପୀବାବୁଙ୍କ ବାଧ୍ୟ ଛାତ୍ରଭଳି ତାଙ୍କ ପାଖରେ ବସି ବସି କେତେ କ'ଣ ଆଦାୟ କରି ନେଇଥିଲ । ସୁରେନ୍ଦ୍ର ମହାନ୍ତି ତମକୁ ଭେଟିବା ପାଇଁ କାହିଁକି ଏତେ ଉଦଗ୍ରୀବ ହଉଥିଲେ ? ସଚିବାବୁଙ୍କୁ ସାକ୍ଷାତ୍‌ରେ ଓ ଟେଲିଫୋନ୍‌ରେ ତୁମେ ଯେତିକି ଜାଣିଥିଲ ଆଉ କେହି ବୋଧେ ସେମିତି ଓଡ଼ିଶାରେ ନାହାନ୍ତି । ଓଡ଼ିଆ ସାହିତ୍ୟର ନବ ପର୍ବରେ ଏଇ ରଥୀମାନଙ୍କ ପାଖରେ ତମେ ବି ଜଣେ ଦିଗପାଳ ଭଳି ଠିଆ ହେଇଥିଲ । ଯୋଉ ଇତିହାସର କାଗଜ ପତ୍ର ସବୁ ସାଥୀରେ ନେଇଯାଇଚ ସେସବୁର ଉପଯୋଗ କରିବ ତ ଭାଇନା ? ତମେ ତ ଭାରି ମନୁଆ । କେଜାଣି ତମର ଇଚ୍ଛା କ'ଣ ? ତମକୁ ହିଁ ଯୋଡ଼େ ଆଖି ଦେଇଥିଲେ । ସେ ଆଖି ଆଉ କା' ପାଖରେ ନାଇଁ । ତମେ ଯେମିତି ଯାକୁ ଦେଖିଚ ସିଏ ଠିକ୍ ସେମିତି, ବିଶ୍ୱାସ କର, ଭାଇନା, ସେ ବିସ୍ମୟ, ରହସ୍ୟ ବେକା, ଆତ୍ମବିଶ୍ୱାସରେ ଭରପୂର ଆଖି ଯୋଡ଼ାକ ଖୋଜି ହୋଇ ରହିଚି ତମ କୋଠରୀରେ ।

ଯିଏ ଯୋଉଠି ଥିବା କଥା ସିଏ ସେଇଠି, । ପ୍ରେସ୍ ୱାର୍କର, ଡି. ଟି. ପି. ମେସିନ୍, କବି ଲେଖକମାନଙ୍କର ଯିବାଆସିବା, ସମାବେଶ'ର ପୁରୁଣା ସଂଖ୍ୟା ସବୁ, 'ଜନ୍ମଦିନ'ର ବ୍ୟସ୍ତତା ନେଇ ସରୋଜବାବୁ, ବଗିଚ୍ଚା, କାଗଜଗଦା, ତାଲା ପଡ଼ିଥିବା ତମ ନିଜସ୍ୱ ଅଫିସ୍– ସବୁ ଠିକ୍ ନିଜ ନିଜ ଜାଗାରେ, ଖାଲି ତମେ ନାହଁ । ବଦଳରେ ଏ ଝଣ୍ଡ ମଣ୍ଡଳରେ ଆମେ ଦେଖୁଛୁ ଜୋଡା ଏ ଅଲୌକିକ ଆଖିର ଉପପଦ୍, ସେଇ ଆଖି ଯୋଡାକରେ ଏବେ ବି ରହିଚି କିଛି ଶରୀର ରହସ୍ୟ କିଛି କଠୋର ନିର୍ଦ୍ଦେଶ, ରହିଚି ଅସୀମ ଆତ୍ମପ୍ରତ୍ୟୟ । ଆଗାମୀ ଦିନ ପାଇଁ ଅସଂଖ୍ୟ ପ୍ରତିଶ୍ରୁତି ଓ ସଂଦେଶ, ସେ ଆଖି ଆମର ହେଇପାରିବନି କେବେ ବି, ଆମେ ବରଂ ସେଇ ଆଖି ଯୋଡ଼ାକର ଯୋଗ୍ୟ ହେଇପାରୁ, ଏତିକି ଆଶୀର୍ବାଦ କର, ଭାଇନା !



# "ନାମର ସାର୍ଥକତା"

## ପ୍ରବୋଧ ବସ୍ତିଆ

ମୋର ସମ୍ପର୍କ ପାଣିବାବୁଙ୍କ ସାଙ୍ଗରେ ଏଇ କେଇବର୍ଷ ହେଲା । ସେଇ ସମ୍ପର୍କ ମୋତେ ଏତେ ନିବିଡ଼ କରିଦେଇଥିଲା ଯେ ତାଙ୍କ ସହିତ ମୋ ସଂପର୍କ ନିଜ ଲୋକଙ୍କଠୁଁ ବଳି ଅଧିକ ଲାଗେ । ମୋ ଜାଣିବାରେ ସେ, ଏକାଧାରରେ ସାହିତ୍ୟାନୁରାଗୀ, ପ୍ରେମୀ, ହିତାକାଂକ୍ଷୀ, କର୍ମୀ, ସମାଜସେବୀ, ବଂଧୁବତ୍ସଳ ରାଜନୀତିଜ୍ଞ ଓ ଭାବଗ୍ରାହୀ କହିଲେ ଅତ୍ୟୁକ୍ତି ହେବନି । ବହୁ କ୍ଷେତ୍ରରେ ମନେହୁଏ ସେ ଯାହାଙ୍କ ଉପରେ ରାଗନ୍ତି ତାଂକୁହିଁ ଅଧିକ ସ୍ନେହ କରନ୍ତି ଯାହା ମୁଁ ଅଙ୍ଗେ ଲିଭେଇଛି । ଏପରି କୌଣସି ପରିସର ନାହିଁ ଯେ ପାଣିବାବୁ ଉପସ୍ଥିତ ନାହାଁନ୍ତି । ସବୁ କ୍ଷେତ୍ରରେ, ସବୁ ସମୟରେ ସବୁ ସ୍ଥାନରେ ସେ ନିଶ୍ଚୟ ଉପଯୋଗିତାର ଉପଯୋଗୀ ହୋଇ ଅବସ୍ଥାନ କରିଛନ୍ତି । ତେଣୁ ସେ ଜଗଦୀଶ । ଜଗଦୀଶ୍ୱର ମଧ୍ୟ । ଏଇ ଜଗଦୀଶ ନାମରେ ଯେଉଁ ସାର୍ଥକତା ରହିଛି ତାହା ଗୋଟିଏ ବାକ୍ୟରେ ପ୍ରକାଶ କରିହେବ । "ଯଦି ଜୀବନରେ ପଦାସୀନ ହେବାପାଇଁ ଇଚ୍ଛାପ୍ରକାଶ କର ତେବେ ଯଶ ଅର୍ଜନ କରିବା ହିଁ ଏକମାତ୍ର ପନ୍ଥା ।" ନାମାକ୍ଷରର ସାର୍ଥକତା ହେଲା

'ଜ' – ଜୟ କରିବାର ଅଭିଳାଷ ।

'ଗ' – ଗମ୍ଭୀର ବା ଗାମ୍ଭୀର୍ଯ୍ୟତା ଯାହା ମନୁଷ୍ୟକୁ ଉଚ୍ଚାସୀନ କରେ ।

'ଦୀ' – ଦୀପଭଳି ତେଜିୟାନ ହେବା ।

'ଶ' – ଶଙ୍କର ବା ମହେଶଙ୍କ ଭଳି ନିଜକୁ ଭୋଳାନାଥ ବୋଲାଇବା ଏବଂ ଉଚିତ୍ ସମୟରେ କ୍ରୋଧ କରିବା ।

ଏଇ ସମସ୍ତ ସମ୍ମିଶ୍ରଣରେ ଜଗଦୀଶ । ନାମରେ ସାର୍ଥକତା, କର୍ମ ସାର୍ଥକତା, ଭାବର ସାର୍ଥକତା, ବଂଧୁବତ୍ସଳର ଭାବ ନେଇ ସେ ଯେଉଁ ଉପଦେଶ ଦେଇଯାଇଛନ୍ତି ତାହା କେବଳ ଆମ ପାଇଁ ନୁହେଁ; ସମସ୍ତ ସାହିତ୍ୟପ୍ରେମୀ, ଲେଖକ, କବିମାନଙ୍କ ପାଇଁ ପ୍ରଯୁଜ୍ୟ । ଯାହା ଆଜି ମନେପଡ଼ିଲେ ଲୋମ ଟାଙ୍କୁରି ଉଠେ । ଯେ ତାଙ୍କ ସହିତ ମିଶି ଚଳିଛନ୍ତି କେବଳ ସେ'ହିଁ ବୁଝିପାରିବେ ସେଇ "ଜଗଦୀଶ"ଙ୍କର ନାମାକ୍ଷରର କୃତିତ୍ୱ ।

ତାଙ୍କର ଉଦ୍‌ଭାବନ "ସମାବେଶ" ମଧ୍ୟ ଠିକ୍ ତଦନୁରୂପ ।

'ସ' – ସରଳ, ଶାଳୀନତା, ସଦ୍‌ଭାବ ନେଇ ବଞ୍ଚି ରୁହ।
'ମା' – ମାଧୁର୍ଯ୍ୟ, ମୈତ୍ରୀ ସମ୍ପର୍କ ସ୍ଥାପନ କର।
'ବେ' – ବୈଦୁର୍ଯ୍ୟ ପରି ତେଜିୟାନ ହୋଇ ମଧ୍ୟ ବାତ୍ସଲ୍ୟତା ଏବଂ ବନ୍ଧୁବତ୍ସଳ ହୁଅ।
'ଶ' – ଶୋକରେ ଭାଙ୍ଗି ପଡନାହିଁ।

ଏଥିରୁ ବିକଶିତ ହୁଏ ସୌମ୍ୟ, ମୈତ୍ରୀ, ବାତ୍ସଲ୍ୟ, ଶାନ୍ତି ନେଇ ସମାବେଶ ଆସେ – ଧରିତ୍ରୀର ପବିତ୍ର ପୃଷ୍ଠରେ ଶ୍ରୀ ପାଣିଙ୍କର ଅଦମ୍ୟ ଅଭିଳାଷକୁ ସାର୍ଥକ କରିବା ପାଇଁ।

ସେଇ ପାଣିବାବୁଙ୍କ ସହିତ ଚୁଚୁବାବୁଙ୍କ ରୁମ୍‌ରେ ୧ ତାରିଖ ଦିନ କଥା ହେଇ ଆସିଥିଲି। ସମାବେଶ ପାଇଁ ବହୁତ ବ୍ୟସ୍ତ ହୋଇ ସେ କହିଲେ "ସମାବେଶ ମୋର ପ୍ରାଣ, ସମାବେଶକୁ ମୁଁ ଥାଏ ନଥାଏ ବଞ୍ଚାଇ ରଖିବି ନିଶ୍ଚୟ"। ତା'ପରେ ସେଦିନ ମୁଁ ଘରକୁ ଚାଲିଆସିଲି। ପରଦିନ ୧୦ଟା ବେଳେ ପ୍ରେସ୍‌କୁ ଗଲାବେଳେ ବାଟରୁ ଶୁଣିଲି ଯେ ପାଣିବାବୁ ଚାଲିଗଲେ। ସାଇକେଲ ଛାଡ଼ି ଦୌଡ଼ିଲି । ନିଜକୁ ବିଶ୍ବାସ କରିପାରିଲିନି। ଯେତେବେଳେ ସ୍ୱଚକ୍ଷୁରେ ଦେଖିଲି ଠିକ୍ ସେତିକିବେଳେ ପାଟିରୁ ମନେ ମନେ ବାହାରି ପଡ଼ିଲା,

"ହେ ଜଗଦୀଶ୍ବର–"



We deeply mourn the sad demise of Sri Jagadish Pani, the Founder-Editor of **SAMABESHA** and the Managing Director of Kwality Press (P) Ltd.

May His soul rest in peace.

**BHANJA MINERALS PVT. LTD.**

# ପରିବର୍ତ୍ତିନି ସଂସାରେ ମୃତଃ କୋ ବା ନ ଜାୟତେ

**ଭବାନୀ ପ୍ରସାଦ ସିଂହ**

ଏ ସଂସାରରେ ଜନ୍ମହେଲେ ମୃତ୍ୟୁ ଯେ ଧ୍ରୁବ ସତ୍ୟ ଏହା କାହାକୁ ଅବିଦିତ ନୁହେଁ? 'ମର୍ତ୍ତ୍ୟମଣ୍ଡଳେ ଦେହ ବହି। ଦେବତା ହୋଇଲେ ମରଇ।।' ଏହି ଭାଗବତ ବାଣୀ କିଏ ବା ନ ଜାଣେ ? ତଥାପି ପ୍ରିୟଜନକୁ ହରାଇ ମଣିଷ କାହିଁକି ଯେ ମୂହ୍ୟମାନ ହୋଇପଡ଼େ ସେ ବୁଝିପାରେ ନାହିଁ। ସମସ୍ତ ସତ୍ୟକୁ ଉପଲବ୍ଧି କରି ମଧ୍ୟ ସେ ଶୋକରେ ଅଭିଭୂତ ହୋଇ ନିଜର ମାନସିକ ଭାରସାମ୍ୟ ହରାଇ ବସେ। ହଠାତ୍ ପାଣି ଭାଇନାଙ୍କ ମୃତ୍ୟୁ ସଂବାଦ ପାଇଁ ମୁଁ ଦୁଃଖରେ ଅଭିଭୂତ ହୋଇପଡ଼ିଲି। ସେତେବେଳେ ସେହି ଜାଗତିକ ସତ୍ୟକୁ ହୃଦୟଙ୍ଗମ କରିବାକୁ ମୋର ଶକ୍ତି ନଥିଲା। ଆତ୍ମୀୟସ୍ୱଜନ ନହେଲେ ବି ପାଣି ଭାଇନା ଥିଲେ ମୋର ଖୁବ୍ ଆପଣାର – ଜଣେ ଅନ୍ତରଙ୍ଗ ଦରଦୀ ଶୁଭାକାଂକ୍ଷୀ ଭାବରେ। ଜଣେ ସରଳ, ମିଷ୍ଟଭାଷୀ ଓ ମେଳାପୀ ଲୋକ ଭାବରେ ସେ ସମସ୍ତଙ୍କର ପ୍ରିୟପାତ୍ର ଥିଲେ। ସମସ୍ତଙ୍କୁ ଆପଣାର କରିନେବା ଅଦ୍ଭୁତ ଶକ୍ତି ତାଙ୍କଠି ଥିଲା। ଥରେ ଯେ ସଂସ୍ପର୍ଶରେ ଆସିଛି ସେ କଦାପି ତାଙ୍କୁ ଭୁଲି ପାରିବ ନାହିଁ। ତାଙ୍କର ସେ ହସ ହସ ମୁହଁ, ଥଟ୍ଟାଳିଆ କଥା କିଏ ଭୁଲି ପାରିବ ? ଭାରି ଶାନ୍ତିପ୍ରିୟ ସେ ଥିଲେ କିନ୍ତୁ ଜଗଦୀଶ ଜୀବନରେ ଶାନ୍ତି କାହିଁ? ବଡ଼ପୁଅକୁ ହରାଇବା ପରେ ସେ ପ୍ରାୟ ସମସ୍ତ ଶାନ୍ତି ହରାଇ ବସିଥିଲେ। ତଥାପି ଅସୀମ ଧୈର୍ଯ୍ୟର ସହ ପ୍ରେସ୍‌କାର୍ଯ୍ୟ ପରିଚ୍ଛଳନା କରୁଥିଲେ।

ଏତେ ମାନସିକ ଅସ୍ଥିରତା ମଧ୍ୟରେ ରହି ମଧ୍ୟ ଯିଏ ଯାହା କହୁ ପଛେ, ଯାହା ଗାଳି ଦେଉ ପଛେ ସେଥିରେ ସେ ରାଗିଯାଉ ନଥିଲେ। ତାଙ୍କର ସହନଶୀଳତା ଥିଲା ଅସୀମ ଏବଂ ଉଦାରତା ଥିଲା ତାଙ୍କର ଏକ ମହତ୍ ଗୁଣ।

ତାଙ୍କର ମୋର ସଂପର୍କ କ୍ୱାଲିଟି ପ୍ରେସ୍‌କୁ ପ୍ରକାଶନ କାର୍ଯ୍ୟପାଇଁ ଯିବାଆସିବା କରିବାରେ ଅଧିକ ଦୃଢ଼ୀଭୂତ ହୋଇଥିଲା। ଓଡ଼ିଶା ସାହିତ୍ୟ ଏକାଡେମୀର ସମସ୍ତ ପ୍ରକାଶନ କାର୍ଯ୍ୟ ଯଥା : ପୁସ୍ତକ ମୁଦ୍ରଣ, ସ୍ମରଣିକା ମୁଦ୍ରଣ ଏବଂ ଅନ୍ୟାନ୍ୟ ଫୋଲ୍‌ଡର୍ ଓ ନିମନ୍ତ୍ରଣପତ୍ର ମୁଦ୍ରଣ ଏହି ପ୍ରେସ୍‌ରେ କରାଯାଉଥିଲା। କ୍ୱାଲିଟି ପ୍ରେସ୍ ଏକ ଅଗ୍ରଗାମୀ ମୁଦ୍ରଣ ସଂସ୍ଥା ଭାବରେ ଖ୍ୟାତି ଅର୍ଜନ କରି ଆସିଛି। ଏହା ପାଣି ଭାଇନାଙ୍କ ପ୍ରକାଶନ ଅଭିଜ୍ଞତା ଓ ସୁପରିଚ୍ଛଳନାର ଫଳ। ସବୁ ଜିନିଷକୁ ସୁନ୍ଦର ଓ ରୁଚିପୂର୍ଣ୍ଣ ଭାବରେ ମୁଦ୍ରଣ କରିବାର ଅଭିରୁଚି ତାଙ୍କର ଥିଲା। ଯେତେ କାମ ଭିଡ଼ ଥାଉ ପଛକେ ସେ ଏକାଡେମୀ କାମକୁ କେବେ ଫେରାଇ ଦେଇ ନାହାଁନ୍ତି। ବରଂ ଯେକୌଣସି ଜରୁରୀ ମୁଦ୍ରଣ କାର୍ଯ୍ୟକୁ

ଯଥାଶୀଘ୍ର ସଂପନ୍ନ କରିବାକୁ ସେ କର୍ମଚାରୀମାନଙ୍କୁ ତାଗିଦ କରି କହନ୍ତି– ସେଇ ବାବୁଙ୍କ କାମରେ ଯେପରି ଅସୁବିଧା ନହୁଏ। ସେତିକି ଯଥେଷ୍ଟ।

ଜଣେ ସାହିତ୍ୟିକ ତଥା ସାହିତ୍ୟ--ରସିକ ଭାବରେ ସେ ସୁପରିଚିତ ଥିଲେ। ତାଙ୍କର ସାହିତ୍ୟିକ ଅଭିରୁଚି ଥିଲା ସ୍ୱତନ୍ତ୍ର–ଏକ ମାର୍ଜିତ ଧରଣର। 'ସମାବେଶ' ସାହିତ୍ୟ ପତ୍ରିକାର ସୁଯୋଗ୍ୟ ସଂପାଦକ ଭାବରେ ସେ ଓଡ଼ିଶାର ସାହିତ୍ୟିକ ମଣ୍ଡଳୀ ତଥା ସାହିତ୍ୟାନୁରାଗୀ ଜନସାଧାରଣଙ୍କ ମଧ୍ୟରେ ବିଶେଷ ପରିଚିତ। ପତ୍ରିକାକୁ 'ନୂତନ ରୂପ, ଛନ୍ଦ ଓ ଗନ୍ଧ ପ୍ରଦାନ କରିବାରେ ତାଙ୍କର ସାରସ୍ୱତ ସାଧନା ଓ ସିଦ୍ଧି ଅନସ୍ୱୀକାର୍ଯ୍ୟ। ବହୁ କବି ଲେଖକ ସୃଷ୍ଟି କରିବାରେ 'ସମାବେଶ'ର ଭୂମିକା ଯେ ଗୁରୁତ୍ୱପୂର୍ଣ୍ଣ ଏଥିର ସନ୍ଦେହ ନାହିଁ। ଜଣେ ସକ୍ରିୟ ସାରସ୍ୱତ ସଂଗଠକ ଭାବରେ ମଧ୍ୟ ତାଙ୍କର କାର୍ଯ୍ୟ ଅଭିନନ୍ଦନୀୟ। ସାହିତ୍ୟ ସଙ୍ଗଠନ ଓ ସାହିତ୍ୟ ସେବାରେ ସେ ସର୍ବଦା ନିଜକୁ ନିୟୋଜିତ ରଖୁଥିଲେ। ଭୁବନେଶ୍ୱର ଓ କଟକରେ ଅନୁଷ୍ଠିତ ପ୍ରାୟ ସମସ୍ତ ସାରସ୍ୱତ ଓ ସାଂସ୍କୃତିକ ଉତ୍ସବରେ ସେ ଯୋଗଦାନ କରୁଥିଲେ। ଏକାଡେମୀର ସମସ୍ତ ସାରସ୍ୱତ ଉତ୍ସବରେ ସେ ଉପସ୍ଥିତ ରହୁଥିଲେ। ସାହିତ୍ୟିକ ତଥା ସାହିତ୍ୟାନୁଷ୍ଠାନମାନଙ୍କ ସହ ତାଙ୍କର ସଂପର୍କ କେତେ ନିବିଡ଼ ସତେ ! ଜଣେ ମନଖୋଲା, ଉଦାର ସଂସ୍କୃତିସଂପନ୍ନ ବ୍ୟକ୍ତି ହିସାବରେ ସେ ସର୍ବଦା ନିଜର ସ୍ୱାଧୀନ ମତପ୍ରକାଶ କରୁଥିଲେ। କି ରାଜନୀତି, ସମାଜନୀତି କି ସଂସ୍କୃତି, କି ସାହିତ୍ୟ ସବୁ କ୍ଷେତ୍ରରେ ତାଙ୍କର ଦୃଷ୍ଟିଭଙ୍ଗୀ ଥିଲା ସ୍ୱତନ୍ତ୍ର, ମାର୍ଜିତ ଓ ରୁଚିସଂପନ୍ନ।

ମଣିଷ କୁଆଡ଼େ ଚାଲିଗଲା, କେବଳ ସ୍ମୃତି ରହିଗଲା କାଳକାଳକୁ। ପ୍ରକାଶନ କାର୍ଯ୍ୟପାଇଁ କାଲିଟି ପ୍ରେସ୍ ଚଳେ ଆଉ ସେହି ସାରସ୍ୱତ ପୁରୁଷଙ୍କ ସହ ଭେଟ ହେବନାହିଁ। ସବୁ ଯେପରି ଶୂନ୍‌ଶାନ୍ ଲାଗିବ। ମନର କୋହ ମନରେ ମରିବ। ଫେର ମନକୁ ବୁଝାଇବାକୁ ପଡ଼ିବ– 'ପରିବର୍ତ୍ତିନି ସଂସାରେ ମୃତଃ କୋ ବା ନ ଜାୟତେ।

ଆତ୍ମା ତ ଅବିନଶ୍ୱର ସେ ସର୍ବଦା ଅମର ରହିବ। ତାଙ୍କର ମହନୀୟ କାର୍ଯ୍ୟାବଳୀ ଓ ସାଧୁ ଗୁଣାବଳୀ ତାଙ୍କୁ ଲୋକମୁଖରେ ଅମରତ୍ୱ ପ୍ରଦାନ କରିବ, ଏଥିରେ ସନ୍ଦେହ ନାହିଁ।

ସେହି ଅମର ଆତ୍ମାର ଅମ୍ଳାନ ସ୍ମୃତି ଉଦ୍ଦେଶ୍ୟରେ ମୋର ବିନମ୍ର ଶ୍ରଦ୍ଧାଞ୍ଜଳି।



# କଥା ଦେଇଥିଲା : ପୃଥିବୀକୁ ଚିହ୍ନେଇ ଦେବ

**କୃଷ୍ଣ ମିଶ୍ର**

ସାହିତ୍ୟର ମାନଚିତ୍ର ଟାଂଗା ହୋଇଛି
ଆତୁର କଲମ୍ବସମାନଙ୍କ ଭଂଗା ଅଗଣାରେ
ପ୍ରତ୍ୟାଶାର ଚଟେଇବସା ଓ ଶୁଖିଲା ପତ୍ରମାନଙ୍କୁ
ଖୋଜିଲା ବେଳକୁ
ତମେ ଭଲା · ଲୋହିତ ଭାରତୀୟ ପାଲଟି ଯାଇଥାନ୍ତ,
ହୁଏତ ତମ 'ସମାବେଶ'କୁ ପୁସୁଲେଇ ଦେଇଥାଆନ୍ତୁ
ଚଂଦ୍ର ଗ୍ରହଣ ଆଳରେ ।

ଅନେଇଲା ବେଳକୁ
ଶୁଖିଲା ପତ୍ରଟେ ଭାସୁ ଭାସୁ
ଅକସ୍ମାତ ଗଡ଼ି ଛାଡ଼ି ଧାଇଁଲା ଅଣଗ୍ରଣ ପବନରେ,
କେଜାଣି କାହିଁକି ଘଡ଼ିଏ ଅଟକି ଯାଇଥିଲା
କୋଉ ଦରହଣା ପଥର ସନ୍ଧିରେ !

ସାହିତ୍ୟର ମାନଚିତ୍ର ଉଇ ଖାଇଯାଉ
ତମେ ବିଶ୍ୱାସର ଉପଦ୍ୱୀପ;
କଲମ୍ବସମାନଙ୍କ ମୃତ୍ୟୁକାଳୀନ ଜମାନବନ୍ଦୀରେ
ତମେ ଯେ ସୁନାର ଭାରତବର୍ଷ,
ପ୍ରଚଳିତ 'ସମାବେଶ'ରେ ସେଇ ଗୋଟିଏ ପଚରା ଉଚରା
ଆରେ ମଣିଷ ଭଳିଆ ମଣିଷଟେ
ଆଉ ଟିକିଏ ସବୁର୍ କଲାନି
ବିଚରା କଥା ଦେଇଥିଲା
ପୃଥିବୀକୁ ଚିହ୍ନେଇ ଦବ !

❖ ❖ ❖

# ସ୍ମୃତି–ସ୍ମରଣ

ନୃସିଂହ ପ୍ରସାଦ ମିଶ୍ର (ଗୁରୁଭାଇ)

*ଅଥ ଗୋପୀରନୁଜ୍ଞାପ୍ୟ ଯଶୋଦାଂ ନନ୍ଦମେବ ଚ ।*
*ଗୋପନାମନ୍ତ୍ର୍ୟ ଦାଶାର୍ହୋ ଯାସ୍ୟନାରୁରୁହେ ରଥମ ॥*

ଉପରୋକ୍ତ ଶ୍ଳୋକଟି କ୍ଷୀଣଭାବେ ମୋର ମନେପଡ଼ିଗଲା, ଯେତେବେଳେ ଭାଇନା* ସେ ଦିନ ମୋତେ କହିଲେ–'ନୁରି ! ମୋତେ ଛାଡ଼ିଦେ । ଆଉ ରହିବିନି । ମୋର ଫେରି ଯିବାକୁ ଭାରି ଇଚ୍ଛା ହେଲାଣି । ବୋଧେ ସେ ମୋତେ ଯେତିକି ଦିନ ପାଇଁ ରହିବାକୁ କହିଥିଲା ତାହା ପୂରଣ ହୋଇଗଲାଣି । ମୁଁ ପଳେଇବି ।'

ମୁଁ କହିଲି–'ପୁଣି ବାହାରିଲା ? କ'ଣ ଏମିତି ଦି'ଗ୍ରରି ଦିନରେ ଥରେ ହେଉଛ ! ପିଲାଙ୍କ ଭଳି ହୁଅନାହିଁ ।

ଭାଇନା କହିଲେ– 'ପିଲାଙ୍କ ଭଳି ? ମୁଁ ବଡ଼ ନା ତୁ ବଡ଼ ? ତୋ ଠାରୁ ସାନ ପାଖରେ ବି ମୁଁ ହାରିଯାଇଛି । ଆଉ ବଡ଼ କ'ଣ ?

ମୁଁ କହିଲି– 'ଭାଇନା ! ବଡ଼ ସାନର କଥା କହୁନାହିଁ ତୁମେ କିଛି ପରମାର୍ଥ କାମ କରିବାକୁ ଆସିଛ । ଠାକୁର ସବୁବେଳେ ଗୋପୀ ହୋଇଯିବା ପାଇଁ ଆମକୁ ନାନା ଭାବରେ ବୁଝାଇ କହୁଛନ୍ତି । କହିଲେ, କେହି କେବେ ସ୍ୱଇଚ୍ଛାରେ ଗୋପୀ ହୋଇପାରେ? କେହି କେବେ ସ୍ୱଇଚ୍ଛାରେ ତାଙ୍କର ସାନ୍ନିଧ ଲାଭ କରିପାରେ ? କହିଲେ, କେହି, କେବେ ଇଚ୍ଛାକରି ତାଙ୍କର ଦର୍ଶନ ଲାଭ କରିପାରେ ? କହିଲେ, କେହି କେବେ ଇଚ୍ଛାକରି ଶରୀର ତ୍ୟାଗକରି ତାଙ୍କ ପାଖକୁ ଯାଇପାରେ ?'

ଭାଇନା ବିମର୍ଷ । ଆଖି ଛଳଛଳ । ତଳ ଓଠ ଲମ୍ବାଇ ସକାଇଲେ । ଏକାନ୍ତ ସ୍ଥାନ । କ୍ୱାଲିଟି ପ୍ରେସ୍‌ର ଅଫିସ ଘର । କେହି ସେ ଦିନ ତାଙ୍କୁ ବ୍ୟତିବ୍ୟସ୍ତ କରୁନଥାନ୍ତି । ମେଘ ଉଠାଇ ପରିବେଶକୁ ଅଧିକ ଗମ୍ଭୀର କରି ଦେଇଥାଏ । ଭାଇନାଙ୍କ ଅନେକ ଅଭିଯୋଗ, ଅନେକ ଆଶ୍ୱସ୍ତି, ଯଂତ୍ରଣା, ବିଳାପ ଓ ଅନେକ ଦୁର୍ବଳ ମୁହୂର୍ତ୍ତ ମୋତେ ତାଙ୍କ ସହିତ ଘନିଷ୍ଠ କରିଦେଇଥିଲା । ସେଦିନ ଏକାଦଶୀ ହୋଇଥାଏ । ସେପ୍ଟେମ୍ବର ମାସ ଏକ

---

* ସ୍ୱର୍ଗୀୟ ଜଗଦୀଶ ପାଣିଙ୍କୁ ମୁଁ ଭାଇନା ଡାକେ । ସେ ମୋତେ ସାନ ଭାଇର ସ୍ନେହରେ ବାନ୍ଧିଦେଇଥିଲେ ଓ ମୋତେ ତାଙ୍କ ପରିବାରର ଅନ୍ୟ ସମସ୍ତଙ୍କଠାରୁ ପୃଥକ୍ କରି ଏକାନ୍ତରେ ରଖୁଥିଲେ ।

ତାରିଖ, ଗୁରୁବାର । ମୋର ଆଶ୍ରମ ଯିବା କଥା । ତରବରିଆରେ ମୁଁ କାମ ସାରୁଥାଏ । ଦିନ ୨ଟା ଉପରେ ହେବ । ହଠାତ୍ ଫୋନ୍ ବାଜିଲା । ମୁଁ 'ସୀତାରାମ' କହିବା ପୂର୍ବରୁ ତାହା ଆରପୁଟ ଶୁଣିଲି । କହିଲେ, "ମୁଁ ଓ୍ୱାର୍ଡ ଦେଇଛି । ଗଣେଶ ଚତୁର୍ଥୀ ଦିନ ବାହାରିବ ମାନେ ବାହାରିବ ।"

ମୁଁ କହିଲି, "ଭାଇନା ! କ'ଣ ଗୀତା କଥା କହୁଛନ୍ତି ।"

–"ହଁ । ବାବା, ଜମା ରାଗ କରନା । ଆଜି ଆଶ୍ରମ ଯିବନାହିଁ କି ? ଏକାଦଶୀ ପରା ।"

ମୁଁ କହିଲି, "ଟିକିଏ ଡେରି ହେବ । ୫ଟା ବେଳକୁ ବାହାରିବି ।"

–ଆଉ କିଏ ସାଙ୍ଗରେ ?

ମୁଁ କହିଲି, "ବୁଢୀ ଯିବ । ଆଉ ମୁଁ । କାହିଁ କ'ଣ ହେଲା ? ଆପଣ ଯିବେ କି ?"

–"ନାଇଁ, ଯିବିନି ! ଦେହଟା ଟିକିଏ ଖରାପ ଲାଗୁଛି । ତମକୁ ନ ଦେଖିବାର ୪ ଦିନ ହେଲା । ସବୁଦିନ ଟିକିଏ ଦେଖା ହୋଇଯାଉଥିଲେ ହଅନ୍ତା ସିନା । ଆଶ୍ରମକୁ ଯିବାବେଳେ ଟିକିଏ ଝାଡ଼ି ଦେବାକୁ କହିଥାନ୍ତି । ଡେରି ହେବ । ତୁମେ ଯାଅ । ତୁମକୁ ମୁଁ କିଛି ଦେଇନି । ଆଜି ଦଉଛି । ତୁମେ ଖୁବ୍ ବଡ଼ ହୁଅ । ବାବା । ନୁରିବାବା । ଖୁବ୍ ବଡ଼ ହେବ । ମୁଁ ତମ ସହିତ କଥା ହେଉଛି ମୋତେ ତୁମେ ଦେଖାଯାଉଛ ।"

ଭାଇନାଙ୍କର ଏପରି ଆବଡା ଖାବଡା କଥା ସହିତ ମୁଁ ଅଭ୍ୟସ୍ତ ମନେ ମନେ ହସୁଥାଏ । କହିଲି–"ଆଉ ଗୁରୁଜୀ ?"

–"ହଁ ! ଗୁରୁଙ୍କୁ ନ ମଣିବ ନର । ଗୁରୁ ହିଁ ସାକ୍ଷାତ ଠାକୁର ।"

ମୁଁ କହିଲି, "ଭାଇନା ! ଠାକୁର ନୁହେଁ ଈଶ୍ୱର ।"

–"ହଁ ହଁ ! ସେଇ ଏକା କଥା । ତାଙ୍କୁ ବି ଦେଖୁଛି । ତାଙ୍କୁ ତ ସବୁବେଳେ ଦେଖୁଚି । ସେ ବି ମୋତେ ଦେଖୁଚନ୍ତି ।"

ମୁଁ କହିଲି, "ଆଉ କ'ଣ କହୁଛନ୍ତି ?"

–"ହଁ, ତୁମେ ଫେରିବାବେଳେ ଆମ ଘରବାଟେ ଫେରିବ । ମତେ ଟିକିଏ ଝାଡିଦେବ । ଗୀତା ବହି ଡେରି ହେଇଯାଇଛି ବୋଲି ମନଦୁଃଖ କରିବନି ।"

ମୁଁ କହିଲି, "ଭାଇନା ! ଫେରୁ ଫେରୁ ଡେରି ହୋଇପାରେ ।"

–"ନ'ଟା, ସାଢ଼େ ନ'ଟା, ଦଶଟା, ଏଗାରଟା । ଏଗାରଟା ଭିତରେ ପାସ୍ କଲେ ଘରକୁ ଆସିବ । ଆଉ ଡେରି ହେଲେ ଶୋଇ ପଡିବି । କାଲି ଆସିବ ।"

ମୁଁ କହିଲି, "କାଲି ମୋର ଯିବାର ଅଛି । ସରୋଜଙ୍କୁ କହିଦେବେ, ସେ ବି କହୁଥିଲେ । ମୁଁ ୩ଟାରେ ପହଞ୍ଚିବି ।"

–"ହଉ । ତିନିଟାରେ ଆସିବ । ଫୋନ୍‌ବିଲ୍ କେତେ ହେବଣି କେଜାଣି । ରଖିଲି । ସୀତାରାମ, ସୀତାରାମ.......... ।

ଭାଇନା ଫୋନ୍ ଥୋଇଦେଲେ । ତା ପରେ ଆଶ୍ରମ ବାହାରିଲି । ହୀନସ୍ତା ହେଲି ଆଶ୍ରମ କେନାଲ ରାସ୍ତାରେ । ଆଶ୍ରମରେ ପୂଜା ସାରି ଗୁରୁଜୀଙ୍କ ପାଖରେ ବସିଲି । ଅନେକ ଗୁରୁଭାଇ ବସିଥିଲେ । ଗୁରୁଜୀ ଆମ ସହିତ ବ୍ରହ୍ମବିଦ୍ୟା ଓ ଗୀତା ପ୍ରସଙ୍ଗରେ କଥା ହେଉଥିଲେ । ସେଁ କହୁଥିଲେ, ଆମେ ଶୁଣୁଥିଲୁ । ସେ ଖୁବ୍ .ପ୍ରଫୁଲ୍ଲ ଓ ପ୍ରସନ୍ନ ଦେଖାଯାଉଥାନ୍ତି । କିନ୍ତୁ ମଝିରେ ମଝିରେ ମୁହୂର୍ତ୍ତକ ପାଇଁ, ମୁହୂର୍ତ୍ତକ ପାଇଁ ଅନ୍ୟମନସ୍କ ହୋଇଯାଉଥାନ୍ତି । ମୋତେ ଦେଖୁଥାନ୍ତି । ମୋତେ ଖୁବ୍ ଆନନ୍ଦ ଲାଗୁଥାଏ । ହଠାତ୍ ପଗ୍ଚରିଲେ "କେତେ ବାଜିଲା ?"

ଭାଇ ପୁପୁ ହଠାତ୍ କହିଲେ, "ଦଶଟା ସାତ୍" ।

ଗୁରୁଜୀ "ଦଶଟା ସାତ୍ ବୋଧେ ଶହେ ସାତ୍ । ଆଉ ଦଶମିନିଟ୍ ଯାଉ । ଯିବ ।"

ଦଶମିନିଟ୍ ଗଲା । ଆମେ ଉଠିଲୁ । କେନାଲ ରାସ୍ତାରେ ଅସୁବିଧା ହେଲା । ବାଳକାଟିରେ ପହଞ୍ଚୁ ପହଞ୍ଚୁ ରାତି ସାଢେ ବାର । କଟକରେ ମୁଁ ପହଞ୍ଚିବା ବେଳକୁ ରାତି ସାଢେ ଗୋଟେ । ମୁଁ ଧୁଆଧୋଇ ହୋଇ ଭାଗବତର ଅବଧୂତ ମୁନି ଦତ୍ତାତ୍ରେୟଙ୍କ ପ୍ରସଙ୍ଗ, ପଚିଶତମ ଗୁରୁ "ଦେହ" ଅଧ୍ୟାୟଟି ପଢ଼ିଲି । ପ୍ରଭୁଦତ୍ତ ବ୍ରହ୍ମଚାରୀ ଖୁବ୍ ସୁନ୍ଦର ବୁଝାଇ ଲେଖିଛନ୍ତି । ପ୍ରାୟ ତିନିଟା ବେଳକୁ ଚଉକି ଛାଡିଲି । ଭୋରରୁ ନିଦ ଭାଙ୍ଗିଗଲା । ଗାଧୋଇ ପକାଇ ଲୁଗା ବଦଳାଉଛି ଫୋନ୍ ବାଜିଲା । ଭାଇ ପୁପୁ ଫୋନ୍ କରିଥିଲେ । କହିଲେ, "ଭାଇନା ! ସତ କି ମିଛ ଜାଣେନା, ମଉସା ଗ୍ଚଲିଗଲେ ।"

ମୁଁ କହିଲି, "ମଉସା ? ଆରେ ତୋ ମଉସା କିଏ ? କେଉଁ ମଉସା ।"

–"ଭାଇନା ! ଜଗଦୀଶ ମଉସା" ।

ମୁଁ "ଏଁ" କହି ରହିଗଲି । ହଠାତ୍ କିଛି ଉତ୍ତର ଦେଇପାରିଲି ନାହିଁ ଭାଇ ପୁପୁକୁ । ତେବେ ସେ ଚତୁର । ତାଙ୍କଆଡୁ କହିଲେ, "ଭାଇନା ! ଆପଣ ଟିକିଏ ବୁଝନ୍ତୁ । ମୋତେ ଇନ୍‌ଫର୍ମ କରିବେ । "ମୁଁ ହଉ କହି ଫୋନ୍ ରଖିଲି । ଏହା ପରଠାରୁ ଯେତେ ଚେଷ୍ଟାକଲି ଭାଇନାଙ୍କ ଘରକୁ ଫୋନ୍ ପାଇଲି ନାହିଁ । ଦିନ ୯–୩୦ରେ ଭାଇନାଙ୍କ ଅତି ପ୍ରିୟ ଓ କାର୍ଯ୍ୟଦକ୍ଷ ସେବକ ସରୋଜବାବୁ ଫୋନ୍ ଧଇଲେ ଓ ଭୋ ଭୋ କାନ୍ଦି କନ୍‌ଫର୍ମ କଲେ । ମୁଁ ସରୋଜଙ୍କୁ କହିଲି, "ସରୋଜବାବୁ ! 'ଭାଉଜଙ୍କୁ, ଭାଇ ଓ ଝିଅକୁ ଦେଖନ୍ତୁ । କାନ୍ଦନ୍ତୁ ନାହିଁ । ଭାଇନା ଗୋଟିଏ ଉତ୍କୃଷ୍ଟ ଜନ୍ମ ପାଇବେ । ଆପଣ ସମ୍ଭାଳନ୍ତୁ । ମୁଁ ଯାଉଛି ।"

ଭାଇନାଙ୍କର କେତେ କଥା ମନେପଡ଼ିଗଲା । ତାଙ୍କର ଶେଷ କେଇପଦ କଥା ଅନୁସାରେ ମୁଁ ଠିକ୍ ଦିନ ୩ଟାରେ ତାଙ୍କୁ ଦର୍ଶନ କଲି । ସବୁ ଶେଷ । ଅନେକ ଲୋକ ଥିଲେ । ସେମାନେ ସମସ୍ତେ କଥା ହେଉଥିଲେ–କେମିତି ଗଲେ ? କ'ଣ ହେଲା ? ହଠାତ୍? ଏଇ କାଲି ତ ଦେଖା ହୋଇଥିଲା ? ଭାରି ଅମାୟିକ ଥିଲେ । ଏମିତି ଉଦାର ଆମେ କେଉଁଠି ଦେଖିନାହୁଁ ।

–"ଯିବି ହେଇ, ଯିବି ହେଇ କହୁଥିଲେ । ସତରେ ଗ୍ଳ୍ଲିଗଲେ ।" ଏମିତି ଅନେକ କଥା ଶୁଣି ମୁଁ ଘରକୁ ଫେରିଲି ।

ମୁଁ ଭାଇନାଙ୍କୁ ଅନେକ ଥର କହିଛି, "ଭାଇନା ! କେହି କେବେ ଇଚ୍ଛାକରି ଗୋପୀ ହୋଇପାରେ ? କେହି କେବେ ସ୍ୱଇଚ୍ଛାରେ ତାଙ୍କର ସାନ୍ନିଧ ଲାଭ କରିପାରେ ? କେହି କେବେ ଇଚ୍ଛାକରି ତାଙ୍କର ଦର୍ଶନ ଲାଭ କରିପାରେ ? କହିଲେ, କେହି କେବେ ଇଚ୍ଛାକରି ଶରୀର ତ୍ୟାଗ କରିପାରେ ?"

ଆଜି ଗାଡିରେ ଫେରିବାବେଳେ ଜଣାଯାଉଥାଏ ସତେ ଯେପରି ମୋ କଥାକୁ ଭାଇନା ହୃଦୟଙ୍ଗମ କରିଥିଲେ । ସମସ୍ତଙ୍କର ଅନୁମତି ନେଇ, ନନ୍ଦ, ଯଶୋଦା, ଗୋପିକାଗଣ, ଗୋପଗଣଙ୍କ ଅନୁମତି ନେଇ, ବ୍ରଜର ଅନୁମତି ନେଇ, ସମସ୍ତଙ୍କ ପ୍ରତ୍ୟକ୍ଷରେ ସେ ଦିନ ଉଦ୍ଧବ ଗୋକୁଳ ଛାଡ଼ି ଯେତେବେଳେ ମଥୁରାକୁ ଫେରୁଥିଲେ, ତାଙ୍କ ହୃଦୟ ଗୋପୀ ଭାବରେ ଫାଟି ପଡୁଥିଲା । ଉଦ୍ଧବ ଫେରି ଆସିଲେ ସତ, କାରଣ ଫେରିବା ପାଇଁ ତ ସେ ବାଧ୍ୟ ଥିଲେ, କିନ୍ତୁ ଅତ୍ୟଧିକ ହୃଦୟ ବେଦନାର ସହିତ ଗୋପୀ–ବିରହ ସହ୍ୟକରି ତାଙ୍କୁ ଫେରିବାକୁ ପଡିଥିଲା ।

ପୂର୍ବେ ଭାଇନାଙ୍କୁ ଏହି ପ୍ରସଙ୍ଗ ଦିନେ ଶୁଣାଇଥିଲି । ସେ ଶୁଣିଥିଲେ । ଶୁଣିବା ଭିତରେ ଅନେକ ଥର କାନ୍ଦିଥିଲେ । ଆଜି ସେ ତେଣୁ କାହାକୁ କିଛି ନ ଜଣାଇ ଚୁପ୍‌ଚାପ୍ ଗ୍ଳ୍ଲିଗଲେ । କହୁଥିଲେ, ଆଶ୍ରମରେ ସବୁବେଳେ ରହିଯିବାକୁ ତାଙ୍କର ଭାରି ଇଚ୍ଛା ହେଉଛି । କିନ୍ତୁ ସେ ସବୁବେଳେ ଚିନ୍ତା କରୁଥିଲେ କ୍ୱାଲିଟି ପାଇଁ, କ୍ୱାଣ୍ଟିଟି ପାଇଁ ନୁହେଁ ।

॥ ତ୍ରାହି, ଅଚ୍ୟୁତ ॥

( ସମୟ ଅଭାବରୁ ଲେଖାଟିକୁ ସଂକ୍ଷିପ୍ତ କରାଯାଇଛି, ଏଥିପାଇଁ ଦୁଃଖିତ )

*ଲୋକେଽସ୍ମିନ୍ ଦ୍ୱିବିଧା ନିଷ୍ଠା ପୁରା ପ୍ରୋକ୍ତା ମୟାନଘ ।*
*ଜ୍ଞାନଯୋଗେନ ସାଂଖ୍ୟାନାଂ କର୍ମଯୋଗେନ ଯୋଗିନାଂ ॥*

# ସେଇ ବିରଳ ଉଚ୍ଚମନା ଭାଇନା

ପ୍ରମୋଦ କୁମାର ମହାନ୍ତି

"ଅଣାଏ ପଇସାରେ ଜୀବନ ଆରମ୍ଭ କରିଛି, ବୁଝିଲୁ !" କଥା କଥାକେ କହନ୍ତି ସେ। ଅଥଚ ନିଜ ମନରେ ସେ ଥିଲେ କଳ୍ପନାତୀତ ଭାବେ ଧନୀ। ଅନ୍ୟ ସମସ୍ତେ ଯେଉଁଠି ହାରି ଯାଇଛନ୍ତି– ପଛଘୁଞ୍ଚା ଦେଇଛନ୍ତି ସେଇଠି ସେ ସାହସର ସହିତ ଧସେଇ ପଶନ୍ତି। ଭଗବାନ ପୁଅ ଦିଓଟି ଦେଲେ, ଝିଅ ଦରକାର। ବୁଢ଼ାହେଲାବେଳେ ଗ୍ଲ' ଆଣି ଦେବ। ସେ କୁଆଡ଼େ ବାପଘର –ଶାଶୁଘର ହେଉଥିବ। ବୁଢ଼ାବାପାର ଯତ୍ନ ନେବ। ସେ କନ୍ୟାଦାନ କରି ନୂଆବୋଉଙ୍କ ସହିତ ପୁଣ୍ୟ ଅର୍ଜନ କରିବେ। ଝିଅଟିଏ ଜନ୍ମହେଲା, କିନ୍ତୁ ରକ୍ତ ଦୋଷରୁ ସେ ତିନିମାସରୁ ଅଧିକ କାଳ ବଂଚିବ ନାହିଁ ବୋଲି ପେଡିଆଟ୍ରିକ୍ ପ୍ରଫେସର କହିଲେ। ଭାଇନାଙ୍କ ପାଇଁ ଏହା ଥିଲା ଏକ ଆହ୍ୱାନ। ଗ୍ଲିଲା ଅନ୍ୱେଷଣ। କେନ୍ଦ୍ରାପଡ଼ାର ଜନୈକା ମୁସ୍‌ଲିମ ଭଦ୍ରମହିଳା ଝିଅକୁ ଦେଖି କହିଲେ "ରକ୍ତବାତ" ଚେରମୂଳ ଔଷଧ ଖାଇ ଝିଅ ବଞ୍ଚିରହିଲା ଡାକ୍ତରୀ ବିଜ୍ଞାନକୁ ବୃଥା ପ୍ରମାଣିତ କରି। ହେଲେ ଚିରକାଳ ପାଇଁ ମାନସିକ ନ୍ୟୂନ ହୋଇ ରହିଗଲା। ତା' ପାଇଁ ଜଣେ ପରିଗ୍ଲରିକା ଦିନରାତି ବନ୍ଧା। ଏବେ ତାକୁ ୨୮/୨୯ ବର୍ଷ ବୟସ ଗତ ୩ ଦଶନ୍ଧି ଧରି ନୂଆବୋଉ ଅନେକ ସମୟ କୁଆଡ଼େ ଯାଇପାରନ୍ତି ନାହିଁ।

ମନରେ ସେ ଯେତିକି ଧନୀ ଥିଲେ ସେତିକି ଗଭୀର ଥିଲା ତାଙ୍କର ବ୍ୟକ୍ତିଗତ ସାଂସାରିକ ଦୁଃଖ। ଏତେ ଦୁଃଖ ଜଣେ ସଚେତନ ସଂବେଦନଶୀଳ ମଣିଷ ଭୋଗି ଯେ ସାହିତ୍ୟ କରୁଥିଲା ଭାବିଲେ ସ୍ତମ୍ଭୀଭୂତ ହେବାକୁ ପଡ଼େ। ସାରା ରାଜ୍ୟରେ ବହୁ ଛାପାଖାନା ଅଛି। ସେଗୁଡ଼ିକର ମାଲିକମାନେ ଶିକ୍ଷିତ, ସଂଭ୍ରାନ୍ତ ଓ ସଂସ୍କୃତିବନ୍ତ ମଧ। କିନ୍ତୁ କେତେଜଣ ସାହିତ୍ୟ ପତ୍ରିକା– ତାହା ପୁଣି 'ସମାବେଶ' ଭଳି ସୁରୁଚିସଂପନ୍ନ ସାହିତ୍ୟ ପତ୍ରିକା ପ୍ରକାଶ କରିପାରନ୍ତି ? ଜଗଦୀଶବାବୁ ଛାପାଖାନା ଦୈନନ୍ଦିନ ଜଞ୍ଜାଳରେ ଘାଣ୍ଟି ହେଉଥାଆନ୍ତି ସତ ଚେତନାରେ ଉଚ୍ଚରେ ଥାଆନ୍ତି– ଯେଉଁଠି ସାହିତ୍ୟ ଥାଏ–ତତ୍ତ୍ୱ ଓ ଦର୍ଶନଥାଏ, ଭଗବତ୍ ଚିନ୍ତା ଥାଏ। ସ୍ୱର୍ଗତ ବିଶ୍ୱନାଥଙ୍କର, ବାଳକୃଷ୍ଣ କର ଓ ପଣ୍ଡିତ ନୀଳକଣ୍ଠ ତଥା ଡକ୍ଟର ହରେକୃଷ୍ଣ ମହତାବ୍‌ଙ୍କ ପରେ ସେ ଥିଲେ ଶ୍ରେଷ୍ଠ ସଂପାଦକ। ସର୍ବୋତ୍ତମ ଚିନ୍ତାରା ଗ୍ରାହକ।

ଅସଂଖ୍ୟ ଅନୁଭୂତିର ଗନ୍ତାଘର ସେ। ବୈଷ୍ଣବ ପାଣିଙ୍କର ଶେଷାବସ୍ଥାଠାରୁ ଆରମ୍ଭ କରି ସ୍ୱର୍ଗତ ବିଧାନ ଚନ୍ଦ୍ର ରାୟ, ଡଃ ମହତାବ, ଅଜୟ ମୁଖାର୍ଜି, ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଓ ବର୍ତ୍ତମାନର ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ସହିତ ତାଙ୍କର ଅନ୍ତରଙ୍ଗତା କଥାକଥାକେ ତାଙ୍କ ମୁହଁରୁ ବାହାରିପଡ଼େ। ଡଃ ମହତାବ କିଭଳି କଥା କହନ୍ତି ବହୁ ବ୍ୟକ୍ତି ସେସବୁ ଅଭିନୟ କରିପାରୁଥିଲେ ବି ତାଙ୍କ ସହିତ ତାଙ୍କର ବିଶ୍ୱସ୍ତତା ବହୁତ ଅଧିକ ଥିଲା .ଓ ସେ ଅବିକଳ ଡଃ ମହତାବ କେମିତି ରାଗନ୍ତି, କେମିତି କଥା କହନ୍ତି– ନକଲ କରି କହିପାରନ୍ତି। ତାଙ୍କର, ମୋ ଜାଣିବାରେ ତିନିଜଣ ସର୍ବଶ୍ରେଷ୍ଠ ବନ୍ଧୁଥିଲେ, କଥାକାର

ଅଖିଳମୋହନ, ମାଇତି ଦାଦା (ସ୍ୱର୍ଗତ ବିଷ୍ଣୁପଦ ମାଇତି) ଓ ଡାକ୍ତର ଶ୍ରୀ ଜଗନ୍ନାଥ ମହାପାତ୍ର। ଅଖିଳବାବୁ ଚାଲିଗଲା ପରେ ଭାଇନା ତାଙ୍କୁ ପ୍ରକାଶ୍ୟରେ ବହୁବାର ଝୁରି ହୋଇଛନ୍ତି। କିନ୍ତୁ ଏଇ ମାତ୍ର ୨୧/୨୨ ଦିନ ତଳେ ଜ୍ୱରରେ ପଡ଼ି ମ୍ୟୁନିସିପାଲିଟି ଡାକ୍ତରଖାନାରେ ମାଇତିଦାଦା ଚାଲିଗଲାପରେ ଭାଇନା ନିଜକୁ ଅତ୍ୟନ୍ତ ନିଃସଙ୍ଗ ମନେକଲେ। ମାଇତି ଦାଦା ଥିଲେ ତାଙ୍କର ପରମ ସଖା, ସୁହୃଦ, ସହୋଦର। ତାଙ୍କର ବିବେକ ରକ୍ଷକ। ମାଇତି ଦାଦା ଜଣେ ବୁଦ୍ଧିଜୀବୀ। ବଙ୍ଗଳାର ବିଶିଷ୍ଟ ନେତା ତଥା ଏକଦା ଉପମୁଖ୍ୟମନ୍ତ୍ରୀ ସ୍ୱର୍ଗତ ଅଜୟ ମୁଖାର୍ଜୀଙ୍କ ସେ ଥିଲେ ବ୍ୟକ୍ତିଗତ ସଚିବ। ପରେ ସେ ହେଲେ ନକ୍ସାଲାଇଟ୍। ପୌଢ଼ ହେବାଯାଏ ଥିଲେ ଅବିବାହିତ। ଏହି ନିର୍ଲୋଭୀ, ସ୍ପଷ୍ଟବାକ୍, ଦେଶ ତଥା ବନ୍ଧୁ ହିତୈଷୀ ଭଦ୍ରଲୋକଙ୍କୁ ନିଜ ସାଙ୍ଗରେ କଲିକତାରୁ କିମିଆ କଲାଭଳି ଭାଇନା ଓଡ଼ିଶା ନେଇ ଚାଲିଆସିଲେ। ବର୍ଷ ବର୍ଷ ଧରି ସେ ଜଗଦୀଶ ଭାଇନାଙ୍କ ପଛେ ପଛେ ଛାଇଭଳି ସାନ୍ନିଧ ଦେଇଆସିଥିଲେ। ଏମର୍‌ଜେନ୍‌ସି ରାଷ୍ଟ୍ରବିପ୍ଳବ ଠାରୁ ଦୁର୍ଭିକ୍ଷ ଯାଏ, ସବୁ ଉତ୍ସବଠାରୁ ସଚିବାଳୟ ରାଜଦ୍ୱାର ଯାଏ ବିଭିନ୍ନ ସ୍ଥାନରେ ସେ ଭାଇନାଙ୍କୁ ସହାୟତା କରିଛନ୍ତି ଓ ଉଦ୍ଧବ ଭଳି ଦୈତ୍ୟ କାର୍ଯ୍ୟ କରିଛନ୍ତି। ସେ କିଛି ମାଗିନାହାନ୍ତି, ପାରିଶ୍ରମିକ ନେଇ ନାହାନ୍ତି। ଯାଚିଲେ କିଛି ଫେରାଇ ଦେଇଛନ୍ତି। ଭାଇନା ତାଙ୍କୁ ଧରି ବାନ୍ଧିରଖିବେ ବୋଲି ଜବରଦସ୍ତି ବାହାକରାଇ ଦେଇଥିଲେ ସମବୟସ୍କା ଜଣେ ଏଇଠି ଚାକିରି କରୁଥିବା ଭଦ୍ର ମହିଳାଙ୍କ ସହିତ। ଭିଡ଼ିଓଟାରି ଏଲ୍.ଆଇ. ଜି. ଘର ଖଣ୍ଡେ କିଣେଇ ଦେଇଥିଲେ ବରଗଡ଼ ବ୍ରିଟ୍ କଲୋନୀରେ। ଯେଉଁଦିନ ମାଇତିଦାଦାଙ୍କର ଏକାଦଶାହ ସେଦିନ ଅଖଣ୍ଡ ବନ୍ଧୁତ୍ୱର ଔଚିତ୍ୟ ଦୃଷ୍ଟିରୁ ତାଙ୍କ ପାଖକୁ ଭଦ୍ର ଜଗଦୀଶ ଆଉ ନଯାଇ ରହନ୍ତେ କିପରି ?

ସାଂସାରିକତା ଦୃଷ୍ଟିରୁ ତାଙ୍କର ସାନପୁଅ ସାନବୋହୂ ଅଛନ୍ତି। ଅଳ୍ପ ବୟସ୍କ ନାତି ନାତୁଣି ଅଛନ୍ତି। କିନ୍ତୁ 'ସମାବେଶ' ଥିଲା ତାଙ୍କର ମାନସ ସନ୍ତାନ । ପ୍ରିୟ' ପ୍ରିୟତର ଓ ପ୍ରିୟତମ। ପରିକଳ୍ପନା କରିଥିଲେ, "ସମାବେଶ ପ୍ରବନ୍ଧମାଳା", "ସମାବେଶ କବିତା ସଂକଳନ" ଓ "ସମାବେଶ ଗଳ୍ପମାଳା" ବଡ଼ ବଡ଼ ପୁସ୍ତକ ଆକାରରେ ପ୍ରକାଶ କରିବେ ବୋଲି। ସବୁଗୁଡ଼ିକ ପୁନଃ ସଂପାଦିତ ହେବ ଓ ପ୍ରକାଶିତ ହେବ। 'ସମାବେଶ'ର ଟ୍ରଷ୍ଟବୋର୍ଡ ଗଢ଼ାହେବ– ଏହାକୁ ସ୍ଥାୟୀ କରି ପ୍ରକାଶ କରିବା ନିମିତ୍ତ। କୁଆଡ଼େ ଗଲା ସେ ସ୍ୱପ୍ନ ? ଆମ ସମୟର ସବୁ କବି, ଲେଖକ ଓ ସଂପାଦକଙ୍କ ଠାରୁ ସେ ଥିଲେ ସର୍ବାଧୁନିକ। ଥିଲେ ସର୍ବଶୁଭେଚ୍ଛୁ। ଅନ୍ତଃକରଣରେ ଇଚ୍ଛା କରୁଥିଲେ ଯେ ସମସ୍ତେ ଭଲରେ ରହନ୍ତୁ। ସେ ଲୋଭାସକ୍ତ ସାହିତ୍ୟିକଙ୍କୁ ଭଲ ପାଉନଥିଲେ। ନିର୍ଲୋଭୀ ଲୋକଟିଏ ଦେଖିଲେ ତା' ପଛରେ ପଡୁଥିଲେ। ସିଏ ଏଭଳି ଜଣେ ବିରଳ ଭାଇନା, ଯିଏ ଅକାତରରେ ବିଶ୍ୱାସନୀୟ ଦମ୍ଭ ଦେଇପାରୁନଥିଲେ। "ହେଇଯିବ" ନିଶ୍ଚୟ ହୋଇପାରିବ" ବୋଲି ମନଃପୂତ ଭରସା ଦେଉଥିଲେ। ମୁଁ ଥଟ୍ଟାରେ କହେ, "ଯଦି ଭାଇନା ଜରୁରୀ ଔଷଧ ଟିକିଏ ପାଇଁ ଚଂଦ୍ରରୁ ମାଟି ଅଧଟାମୁଠେ ଦରକାର ପଡୁଚି; କ'ଣ କରିବା ?" ତେବେ ଭାଇନାଙ୍କୁ କୁହାଯିବ, ଭାଇନା ଆଖି ପଲକ ନପକାଇ ସଙ୍ଗେ ସଙ୍ଗେ କହିବେ, "କିଛି ନାଇଁ ମିଳିଯିବ। ରବି ଅଛି USIS କଲିକତାରେ (କବି ରବିନ୍ଦ୍ର କୁମାର ପାଢ଼ୀ) ତାକୁ ଏବେ ଫୋନ୍ କରିଦେବା। ସେ ୟୁ.ଏସ୍.ଆଇ.ଏସ୍. ଜରିଆରେ ଦିଲ୍ଲୀରେ ଆମେରିକାର ଆମ୍ବାସେଡ଼ରଙ୍କୁ

କହି ସେଠୁ ଆମେରିକା ପ୍ରେସିଡେଣ୍ଟଙ୍କୁ କହି ଚଂଦ୍ରରୁ ସେମାନେ ଅଣିଥିବା ମାଟିରୁ ୫୦ଗ୍ରାମ୍ ଆମ ପାଖକୁ ପଠାଇଦେବେ। କିଛି ଚିନ୍ତାନାହିଁ।" ପୁଣି ସେ ହସନ୍ତି। କହନ୍ତି, ମୁଁ ଏଭଳି ସାହସ ନଦେଲେ ତମେମାନେ ବଂଚିବ କେମିତି ? ମୋ ଗୋଡ଼ ତିନିଥର ଅପରେସନ୍ ପରେ ବି ଭଲ ହେଲାନାହିଁ। ଅବଶିଷ୍ଟ ଜୀବନ ଆଶାବାଡ଼ି ସାହାଯ୍ୟରେ କଟାଇବି ବୋଲି ଏକପ୍ରକାର ଭାଗ୍ୟ ଆଦରି ନେଇଥିଲି। ସେ ଏହାକୁ ଏକ ଚ୍ୟାଲେଞ୍ଜ ଭାବେ ଗହଣ କଲେ। କେବଳ ତାଙ୍କରି ଏକନିଷ୍ଠ ଚେଷ୍ଟାରେ ମୁଁ ଦିଲ୍ଲୀ ଅଲ୍ ଇଣ୍ଡିଆ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମେଡ଼ିକାଲ୍ ସାଇନସ୍‌କୁ ଯାଇପାରିଲି ଓ ସେଠାରେ ୬ ମାସର ଚିକିତ୍ସା ପରେ ସାଧାରଣ ଭାବେ ବିନା ବାଡ଼ିରେ ଚାଲିପାରୁଛି। ସେ ନିଜର ପ୍ରଖର ବୁଦ୍ଧି ସହିତ ମହତ୍ ହୃଦୟବତ୍ତାର ମଣିକାଂଚନ' ସଂଯୋଗ କରିପାରେ ଲୋକମାନଙ୍କୁ କିମିଆଁ କଳାଭଳି ଆପଣାର କରିପାରୁଥଲେ। ତେଣୁ ତାଙ୍କର ସାରସ୍ୱତ ଦରବାର ସଦାସର୍ବଦା ପରିପୂର୍ଣ୍ଣ ରହୁଥିଲା।

ଭଲ ଭଜନ ସେ ଭଲ ପାଆନ୍ତି। ଖୋଜି ଖୋଜି କଲିକତାଠାରୁ କଟକ ଓ ଭୁବନେଶ୍ୱର ବଜାରରୁ ଭଜନ କ୍ୟାସେଟ କିଣି ଅଧିକାଂଶ ସମୟ ଶୁଣନ୍ତି। ବାଗବଗିଚ୍ଚ ପ୍ରତି ତାଙ୍କର ଆଗ୍ରହ ଅପରିସୀମ। ଯେଉଁଠି ଯାହା ଘରେ ଭଲ ନୂଆ ଗଛ ଦେଖିଲେ କେଉଁଠି ମିଳୁଛି ବୁଝି ଆଣି ନିଜ ବଗିଚାରେ ଲଗାଇବେ। ଚିତ୍ରକଳାକୁ ଭଲ ପାଆନ୍ତି। ଭଲ ଭଲ ଚିତ୍ର ସଂଗ୍ରହ କରି, ଯଥା ଦୀନନାଥ ପାଠୀ, ଶିବ ପାଣିଗ୍ରାହୀ ଓ ଅସୀମ ବସୁଙ୍କ ନିଜ ଦେହରୁ କୃତିକୁ ବିଭିନ୍ନ କୋଠରୀରେ ଟାଙ୍ଗିଛନ୍ତି। ଆଧ୍ୟାତ୍ମିକତାର ସଂଧାନରେ ପଣ୍ଡିତ ସୁରେଶ ଚଂଦ୍ର ମିଶ୍ର ଓ ପଣ୍ଡିତ ଅମରେଶ୍ୱର ମିଶ୍ରଙ୍କୁ ସେ ଗୁରୁତୁଲ୍ୟ ଭକ୍ତି କରନ୍ତି। ନୁରି ମିଶ୍ରଙ୍କୁ ଗୁରୁଭାଇ ଭଳି ସମ୍ମାନ ଦିଅନ୍ତି।

ସେ ମହାପୁରୁଷ ନଥିଲେ। ଜଣେ ମଣିଷ ଭାବରେ ପାନୀୟ ପ୍ରତି ତାଙ୍କର ଦୁର୍ବଳତା ଥିଲା। ଏଥିଯୋଗୁ ସେ ଟି.ବି. ଭୋଗି ସେଥିରୁ ଆରୋଗ୍ୟ ହୋଇ ମଧ୍ୟ ପାନୀୟ ପ୍ରାୟ ଛାଡ଼ିପାରି ନଥିଲେ। ସିଗାରେଟ୍ ବିଡ଼ି ଓ ଚିନି କଥା ମଧ୍ୟ ସେହିଭଳି। ଯଦି ସେ ପଥ୍ୟରେ ରହିଥାଆନ୍ତେ ତେବେ ଆଉ ତିରିଶବର୍ଷ ଖୁସିରେ ରହିପାରିଥାଆନ୍ତେ, କିନ୍ତୁ ଅସାଧାରଣ ଓ ବିରଳ ବ୍ୟକ୍ତିମାନେ କ'ଣ କାହା କଥା ଶୁଣିବା ଲୋକ ? ତାଙ୍କର ମନର ବୋଲ ଶରୀର ମାନିଲା ନାହିଁ। ନିଜର ଅବହେଳାରୁ ଶରୀରର ସବୁ ଅଂଶ ଚୂର୍ଣ୍ଣ ହେବାରେ ଲାଗିଥିଲା। ଅଥଚ ତାଙ୍କର ମସ୍ତିଷ୍କ ଅଭିନବ କଳ୍ପନାରେ ବେଳକୁବେଳ ସତେଜ ହୋଇ ଚାଲିଥିଲା। ଏବଂ ଶେଷରେ ଏକ ଅଭିନବ କରୁଣ ଉପସଂହାର। ନିଷ୍କରୁଣ ମରଣ ମଧ୍ୟ ସୁଖ ମରଣ ହୋଇପାରେ। ଆମ୍ବୁଲାନ୍‌ସ ନାହିଁ। ନିଷ୍ପ୍ରାଣ ଡାକ୍ତରଖାନାର ଆଣ୍ଟିସେପ୍‌ଟିକ ହୃଦୟହୀନତା ନାହିଁ। କି ଡାକ୍ତରଙ୍କ ମୁହଁର ପ୍ରହେଳିକା ମଧ୍ୟ ନାହିଁ। ଯମ ଘୋଷାରିବାକୁ ଗ୍ଲାକ୍ ଭାଇନା ପୁର୍ସତ ଦେଲେ ତ ! ବାସ୍ ଭୋର୍। ପର୍ଚ୍ଚା ସକାଳେ ଶୋଇଛନ୍ତି ଯେ ଶୋଇଛନ୍ତି! ମହତାବ୍, ଅଖିଳ, ସୁରେନ୍ଦ୍ର, ଗୋପୀନାଥ, ବସନ୍ତ ଶତପଥି, କୃଷ୍ଣପ୍ରସାଦ ଓ ମାଇଟିଦାଦାଙ୍କ ସ୍ୱର୍ଗର ସମାବେଶକୁ ଜଗଦୀଶ ଭାଇନା ନଯାଇଥିଲେ ସଭା କ'ଣ ସତରେ ଶୋଭା ଦିଶିନଥାନ୍ତା ?



# ଶ୍ରଦ୍ଧାଂଜଳି

ଅକ୍ଷୟ ବେହେରା

॥ ୧ ॥

ପ୍ରତିଟି ଜୀବନ
ମୁହାଁଇ ଥାଏ
ମୃତ୍ୟୁର
କଳା ହ୍ରଦକୁ
ଅନବରତ ।

ବର୍ଷ ବର୍ଷର
ମୂଲ୍ୟବାନ ପୃଷ୍ଠା ସବୁ
ଉଡ଼ିଯିବାକୁ
ଡେ଼ରି ଲାଗେନି
ପବନରେ ।

ତମାମ ଜୀବନ
ବିନିମୟରେ
ମଣିଷ ପାଇପାରେନା
ଫୁଲଟିଏ
ଶବାଧାରରେ ।

ଅଥଚ ଫୁଲଟିଏ ହିଁ
ଈଶ୍ବରଂକ ଆଶୀର୍ବାଦ
ମାଟି ଦେବତାର
ଚରଣରେ ।

॥ ୨ ॥

ଗୁଣ୍ଡୁଚିର
ସେ ଟିକକ
ଧୂଳି ବି
ମିଶିଛି ସେତୁରେ;
ସେହି ଧୂଳି ହିଁ
ପବିତ୍ର ଧୂଳି ।

ଜଟାୟୁର
ରକ୍ତ ଟିକକ
ନିଗିଡ଼ି ପଡ଼ିଛି
ମାଟିରେ;
ମାଟି ଗର୍ବିତ
ସେ ରକ୍ତ ପାଇଁ ।

ଦୂବଘାସ ପରି
ଛୋଟ ମଣିଷଟେ
ବି ରଖିଯାଏ
ଅମ୍ଳାନ କୀର୍ତ୍ତି ॥



# ଜଗଦୀଶ

ସୂର୍ଯ୍ୟ ମିଶ୍ର

ଗେଟ୍ ଖୋଲି ଭିତରକୁ ଗଲେ
ଟେବୁଲ ସେ ପାଖରେ ବସିଥାଏ ଜଣେ ଶ୍ରମେଶ୍ୱର
ପିନ୍‌କଂଟାରୁ ଶାବଳରେ ରୂପାଂତରିତ ହେବାର
ଯାବତୀୟ ଉଜ୍ଜ୍ୱଳ ସତର୍କତା ତାର କୃତିତ୍ୱ ।

ସେ ବୁଢାମାନଂକୁ ପାଖରେ ବସାଏ
ସମବୟସମାନଙ୍କୁ ପରିହାସ କରେ
ତରୁଣମାନଙ୍କୁ ଉତ୍ସାହରେ ଆଲିଂଗି ନିଏ
ପାଦରେ ମୋଟରରେ ରିକ୍‌ସାରେ ବୁଲୁଥାଏ ଉତ୍ସବାନୁଷ୍ଠାନ
ଡିଜାଇନ୍ ଦେଖୁଥାଏ
ପ୍ରିୟ ବଂଧୁକୁ ଶ୍ମଶାନରେ ବିଦାୟ ଦିଏ
ସାହିତ୍ୟ ବହିର ଉପହାର କାହାକୁ ଦେଇ ଫେରେ
ଶେଷରେ ବିଛଣାଧରେ ରାତିରେ ।

ବିଛଣା ଶେଷରେ ପାଲଟିଯାଏ ଫୁଲର ଚୌକାଠ
ଏବଂ ତ୍ୟାଗ ଆଉ ବେଦନାର ଅମଳିନ ହାରଟିଏ ପିଂଧି
ସକାଳୁ ସକାଳୁ ସେ ବାହାରିପଡ଼େ
ଅନ୍ୟ ଏକ ଜଗଦୀଶ ପାଖୁ ।



# ପାଣିବାବୁ ଓ କ୍ୱାଲିଟି ପ୍ରେସ୍ ଏକ ସ୍ମୃତି-ଚାରଣ

**ଅର୍ଜ୍ଜୁନ ଦାଶ**

୧୯୭୦ ମସିହାର ଅଗଷ୍ଟ ମାସ। ପ୍ରଜାତନ୍ତ୍ରର କର୍ମଚାରୀ ମାଗୁଣି ମହାନ୍ତି ଖଣ୍ଡେ ଚିଠି ଦେଇଗଲେ- କହିଲେ, ଜଗଦୀଶବାବୁ ପ୍ରଜାତନ୍ତ୍ରରୁ ଯାଇ ଗୋଟେ ଛାପାଖାନା (ପ୍ରେସ୍) କରିଛନ୍ତି, ତୁମକୁ ଭୁବନେଶ୍ୱର ଯାଇ ଦେଖା କରିବାକୁ କହିଛନ୍ତି -ଦୈନିକ 'ଜନଶକ୍ତି' ବନ୍ଦ ହେବାରୁ ମୁଁ ଘରେ ବସିଥାଏ। ଭୁବନେଶ୍ୱରରେ ପ୍ରେସ୍‌ରେ ରହିବି- ରାଜଧାନୀ ଦେଖିବି- ନେଇ ଚିଠି ଧରି ଗଲି।

ୟୁନିଟ୍ ୩ ନମ୍ବରରେ ଶଶି ମହାନ୍ତିଙ୍କ ଘରେ ଭଡ଼ା ନେଇ ପ୍ରେସ୍‌ଟି ଚାଲିଥାଏ। ଜଗଦୀଶବାବୁଙ୍କ ସଙ୍ଗେ ଆଗରୁ ପରିଚୟ ନଥିଲା। ମାତ୍ର କଲିକତାରେ ପ୍ରବାସୀ ଓଡ଼ିଆ ସମ୍ମିଳନୀରେ ଗୋଦାବରୀଶ ମହାପାତ୍ରଙ୍କ ସଙ୍ଗେ ଯାଇ ତାଙ୍କୁ ମିଶିବାର ସୌଭାଗ୍ୟ ମିଳିଥିଲା। ପ୍ରବାସୀ ଉତ୍କଳୀୟଙ୍କ ପାଇଁ ତାଙ୍କର ଯେଉଁ କର୍ମନିଷ୍ଠା ଦେଖି ମୁଁ ଅଭିଭୂତ ହୋଇ ପଡ଼ିଥିଲି। ସେଇ ଜଗଦୀଶବାବୁ ପୁଣି ଭୁବନେଶ୍ୱରରେ ଛାପାଖାନା କରିଛନ୍ତି-ଏଣୁ ଆଗ୍ରହରେ ଯାଇ ଦେଖାକଲି। ସେ ମତେ ସାନଭାଇ ପରି ମନେକରି ପ୍ରେସ୍‌ର ସବୁ ହାନିଲାଭ ବୁଝିବା ପାଇଁ ପରାମର୍ଶ ଦେଲେ। ପ୍ରେସ୍‌ରେ ସେଇ ଘରେ ରହି ପ୍ରେସ୍ କାର୍ଯ୍ୟ ବୁଝିଲି। ମୋର ପରିବାର କଟକରେ। ପ୍ରେସ୍ କାର୍ଯ୍ୟରେ ଏପରି ମଜ୍ଜିଗଲି ଯେ ଆଉ ପରିବାର ପ୍ରତି ନଜର ଦେବାକୁ ସମୟ ପାଇଲି ନାହିଁ।

ପ୍ରେସ୍‌ର ନାଁ କ୍ୱାଲିଟି ପ୍ରେସ୍। ସକାଳ ଆଠଟାରୁ ରାତି ବାରଟାଯାଏ ଖଟଣି। ମୋର ସେତେବେଳର ସତୀର୍ଥ କର୍ମଚାରୀ ଯେଉଁମାନେ ସେମାନଙ୍କର ପରିଚୟ ସାମାନ୍ୟ ଦେଉଛି । ଜଗଦୀଶବାବୁଙ୍କ ଛତ୍ର ତଳେ ଆମେ କେତେଜଣ ଏପରି ନୀରବଚ୍ଛିନ୍ନ କାମ କଲୁ ଯେ, ଘର କଥା ସମସ୍ତେ ପ୍ରାୟ ଭୁଲି ଯାଇଥିଲୁ।

ପ୍ରେସ୍ ଜଣେ ପୁରୁଣା କର୍ମଚାରୀ ଦେବେନ୍ ଦେବ। ପ୍ରେସ୍‌ର ଯେତେବେଳେ ଯେଉଁ କାମ (ଛାପା) ପଡ଼େ ସବୁଥିରେ ସେ ଆଗଭର ଓ କିପରି ସୁନ୍ଦର ଛାପା ହେବ-ସେଥିପାଇଁ ତାଙ୍କର ଦୃଷ୍ଟିଥାଏ। ଜଗଦୀଶବାବୁଙ୍କର ଆଉ ଜଣେ ଅନ୍ତରଙ୍ଗ ବନ୍ଧୁ ସ୍ୱାଧୀନତା ସଂଗ୍ରାମୀ ମାଇତିବାବୁ (ବିଷ୍ଣୁପଦ ମାଇତି) ସେ ସବୁ ସମୟରେ ତାଙ୍କର ଡାହାଣହାତ ଭଳି ପ୍ରେସ୍‌କୁ ତଥା ତାଙ୍କ ପରିବାର ପ୍ରତି ସହଯୋଗ ଦେଇ ଚାଲିଆସୁଥିଲେ। ମାତ୍ର ଦୁଃଖର କଥା ଗତ ୨୦ ଦିନ ହେଲା ସେ ମଧ୍ୟ ଆଉ ଇହଧାମରେ ନାହାନ୍ତି। ମାଇତିବାବୁଙ୍କର ପରିଣତ ବୟସରେ ଜଗଦୀଶବାବୁ ନିଜେ କଟକର ଶ୍ରୀମତୀ ସବିତା ରାୟଙ୍କ ସଙ୍ଗେ ବିବାହ ଦେଇଥିଲେ।

ମାଇତିବାବୁଙ୍କ ମୃତ୍ୟୁ ସମ୍ବାଦ ପାଇବାର ପ୍ରାୟ ମାସେ ପୂର୍ବେ ମୁଁ ଭୁବନେଶ୍ୱର ଯାଇଥିବାବେଳେ ପ୍ରେସ୍‌ରେ ତାଙ୍କ ସଙ୍ଗେ ଦେଖା । "କି ଦାଶବାବୁ ଭଲ ଅଛନ୍ତି ତ ?" ଏଇ ସଂବୋଧନ ସେ ପ୍ରତିଥର କରନ୍ତି। ତା'ପରେ ପ୍ରେସ୍ ଭିତରକୁ ଯାଇ ବୁଲି ପାଣିବାବୁଙ୍କ ସଙ୍ଗେ ସାକ୍ଷାତ କରିବା ପାଇଁ ଉପରକୁ

ଗଲି । ସାମ୍ନା ସୋଫାରେ ଭାଉଜ ବସିଥାନ୍ତି, ସେ କହିଲେ, ଏଇନେ ହରି ମିଶ୍ରଙ୍କ ମା'ଙ୍କର ଶ୍ରାଦ୍ଧ ଉତ୍ସବରେ ଯୋଗଦେଇ ଆସି ଶୋଇଛନ୍ତି । ଭିତରକୁ ଅନାଇଲି । ଖଟ ଉପରେ ନିର୍ବିକାର ଭାବରେ ନିଦ୍ରା ଯାଇଛନ୍ତି । ଆଉ କଥା ହୋଇପାରିନି । ପ୍ରେସ୍‌କୁ ଆସିବା ପରେ ସରୋଜ ଗ୍ଲ' ଆଣି ଦେବାରୁ ଖାଇ ବାହାରି ଆସିଲି । ଜଗଦୀଶବାବୁ କହିଲେ- କ୍ୱାଲିଟି ପ୍ରେସ୍ ଓ କ୍ୱାଲିଟ ପ୍ରେସ୍ କହିଲେ ଜଗଦୀଶବାବୁ ଛଡ଼ା ଆଉ କିଛି କୁହାଯାଇନପାରେ । ମୁଁ କେବଳ ଦାଶବାବୁ ହୋଇ ରହିଗଲି ।

୧୯୭୪ରେ କ୍ୱାଲିଟି ପ୍ରେସ୍ ତିନି ନମ୍ବର ୟୁନିଟ୍‌କୁ ( ବର୍ତ୍ତମାନ ଯେଉଁଠି ଅଛି ) ଉଠି ଆସିଲା । ପ୍ରେସ୍ ପାଇଁ ଓ ଘର କରିବା ପାଇଁ ତାଙ୍କର ରାତିଦିନ ଯେଉଁ ପରିଶ୍ରମ ଯେ ନ ଦେଖିଛି ଜାଣିପାରିବ ନାହିଁ । ନୂତନ ପ୍ରେସ୍ ଗୃହକୁ ତଦାନୀନ୍ତନ ୟୁକୋ ବ୍ୟାଙ୍କର ସର୍ବୋଚ୍ଚ କର୍ତ୍ତା ମିଃ ଧାବନ ଉଦ୍‌ଘାଟନ କରିଥିଲେ । ପ୍ରତିଦିନର ଅନେକ କଥା ମୋର ମନେପଡୁଛି ।

ଜଗଦୀଶବାବୁଙ୍କ ସଂପାଦନାରେ 'ସମାବେଶ' କଲିକତାରୁ ପ୍ରକାଶ ପାଇ ଆସିଥିଲା । ଭୁବନେଶ୍ୱର ପ୍ରେସ୍ ଆସିବା ପରେ ପୁଣି ପ୍ରକାଶ କରିବା ପାଇଁ ସେ ସଚେଷ୍ଟ ହେଲେ । ପ୍ରାୟ ପ୍ରତିଦିନ ସଂଧ୍ୟାରେ ସାହିତ୍ୟିକମାନଙ୍କର ସମାବେଶ ହୁଏ, ପ୍ରେସ୍ ଲନ୍‌ରେ । ତାଙ୍କର ଗୁରୁପ୍ରତିମ ଡଃ ମହତାବ 'ପ୍ରଜାତନ୍ତ୍ର' ରୁ ଫେରି କିଛି ସମୟ ଲନ୍‌ରେ ବସି ଆଲୋଚନାରେ ଭାଗ ନେଇ, ସୁପରାମର୍ଶ ଦେଇଥାନ୍ତି । ସାହିତ୍ୟ ସହ ଓଡ଼ିଶା ରାଜନୀତିର କିଛି ଚର୍ଚ୍ଚା ହୁଏ । ସାହିତ୍ୟିକମାନଙ୍କ ମଧ୍ୟରେ ନୀଳମଣି ସାର୍, ଚନ୍ଦ୍ରଶେଖର ବାବୁ, ପ୍ରମୋଦ ବାବୁ, ରାଜେନ୍ଦ୍ର ପଣ୍ଡା, ପ୍ରଫୁଲ୍ଲ ତ୍ରିପାଠୀ, ଓ ଚିନ୍ତାମଣିବାବୁ , କୃଷ୍ଣବାବୁ, ଯତିନବାବୁ, କୃଷ୍ଣପ୍ରସାଦବାବୁ, ଗଣେଶ୍ୱରବାବୁ, ଶାନ୍ତନୁବାବୁ, ଅଖିଳ ବାବୁ, ନୟାଗଡ଼ରୁ ଆସିଥିବା ହରିବାବୁ, ଶିଳ୍ପୀ ଅସୀମବାବୁ, ଦୀନନାଥ ପାଠୀ, ସରୋଜ ମହାନ୍ତି, ସତ୍ୟାନନ୍ଦବାବୁ, ବ୍ରଜକିଶୋର ନନ୍ଦ ପ୍ରମୁଖ ସମୟେ ସମୟେ ଯୋଗଦେଇ ଓଡ଼ିଆ ସାହିତ୍ୟର ଅନେକ ଦିଗ ବିଷୟରେ ଆଲୋଚନା କରନ୍ତି ।

ଜଗଦୀଶବାବୁ ସବୁସ୍ତରରେ କି କଣ୍ଟ୍ରାକ୍‌ଟର, ଇଂଜିନିୟର, ରାଜମିସ୍ତ୍ରୀ କଳାକାର ଏପରିକି ସାହିତ୍ୟକ, ସାମ୍ବାଦିକ, ଚିତ୍ରକାର, ନାଟ୍ୟକାର କବି ସମସ୍ତଙ୍କୁ ଆପଣାର କରିପାରିଥିଲେ ।

ଅନେକ ତିକ୍ତ ମଧୁର ସ୍ମୃତି ମନରେ ପଡୁଛି । ଶେଷ ବୟସରେ ଧର୍ମକୁ ଆଶ୍ରାକରି ସେ ଇହଧାମ ତ୍ୟାଗ କରିଛନ୍ତି । ତାଙ୍କର ଆଶୀର୍ବାଦ ଆମ ପ୍ରତି ସେ ପୁରରୁ ପଠାନ୍ତୁ ଏତିକି କାମନା । ପୁତ୍ର ପ୍ରତି ଟୁଟୁକୁ ଓ ପ୍ରାଣାଧିକ ସାନ ଭାଇଭଳି ଦେଖୁଥିବା ପରଲୋକ ଗତ ବାବୁଲିର ପୁତ୍ର କନ୍ୟାଙ୍କୁ ଏ ଦାରୁଣ ଧକ୍କା ସହିବାକୁ ଭଗବାନ ଅଧିକ ଶକ୍ତି ଦିଅନ୍ତୁ । ଏତିକି କାମନା କରିବା ଛଡ଼ା ଆଉ କ'ଣ କରିପାରିବି । ତାଙ୍କର ହାତଗଢ଼ା କ୍ୱାଲିଟି ପ୍ରେସ୍ ଓ ତାଙ୍କ କର୍ମଚାରୀ ତାଙ୍କର ଆଶୀର୍ବାଦରେ ଉନ୍ନତି ହେଉ ମୋର ଏତିକି କାମନା । ମୁଦ୍ରଣ କାର୍ଯ୍ୟରେ ଭୁବନେଶ୍ୱରରେ (ଯେତେବେଳେ ହାତରେ ଗଣତି ଛାପାଖାନା ଥିଲା ) କୃତିତ୍ୱ ଆଣିବାରେ ସେ ପ୍ରଥମେ ଆଗଭର ହୋଇ ବାହାରିଥିବା ଆନନ୍ଦର ବିଷୟ । ତାଙ୍କର ଗୁଣାବଳି, ତଥା ପ୍ରେସ୍‌ର ନିତିଦିନର ଘଟଣା ଯାହା ମୁଁ ଅଙ୍ଗେ ନିଭାଇଛି ଲେଖିଲେ ତ ପୋଥିଟାଏ ହେବ । ଏଣୁ ସେପୁରରେ ଅମର ଆତ୍ମା ଶାନ୍ତିରେ ରହୁ ଏତିକି କାମନା ।



# ଅଣିରୁ ଅନେକ; ଅନେକରୁ ଅଚ୍ୟୁତ

## ଧୀର ଶତପଥୀ

ସେଦିନ ସେ ଗଲେ । ଆସିବେ । କାରଣ ଯାତନା ଓ ଯନ୍ତ୍ରଣାର ସମସ୍ତ ଅନୁଭୋଗ ଓ ଅନୁଭବ ଶରୀରରେ, ମନରେ, ଚେତନାରେ ମିଳାଇ ଦେଲେ । ସେ-ଶରୀର ଏ ସମସ୍ତ ସାଧନା ସହିନେଲା । ଆଉ ପାରିଲାନି । ଆତ୍ମା; ଅନନ୍ତ-ଅଚ୍ୟୁତ,-ଗୋଲୋକନାଥଙ୍କ ଭଜନରେ ବିଭୂଷିତ ହେଲା । ମୋର ଯେମିତି ମନେ ହେଉଛି – "ଜଗନ୍ନାଥଙ୍କର ହାତ ଖଣ୍ଡିଆ ନୁହେଁ" । ଏଇମାନେ ହିଁ ଜଗନ୍ନାଥଙ୍କର ହାତ । ସେ ତାଙ୍କ ପାଣିକୁ (ହାତକୁ) ନିଜ ଅଙ୍ଗରୁ ଛେଦନ କରି ଏ ସମାଜ ଭିତରକୁ ନିକ୍ଷେପ କରିଛନ୍ତି, ଯେପରି ତାଙ୍କ ନିଜ ଦାନ୍ତ ଭାଙ୍ଗି ଶ୍ରୀଗଣେଶ ଗଜାସୁରକୁ ବିଦ୍ଧକରି ନିହତ କଲେ ! ଜଗଦୀଶ୍ ପାଣି ଜଗବନ୍ଧୁଙ୍କର ସେ ନିକ୍ଷେପିତ ହସ୍ତାଂଶ, ଯାହାର କାମଥିଲା – "ସମାଜର ପ୍ରତ୍ୟେକଟି ସ୍ତରକୁ ସ୍ପର୍ଶକରି ସମ୍ମୁଖୀତ ସମସ୍ୟାର ସମାଧାନ କରିବା ।"

ଚଞ୍ଚଳ, ଚତୁର ନିର୍ଭୀକ, ରସିକ, ଚେତନା, ଯାତନା ଓ ଯନ୍ତ୍ରଣା, ଶୋକ ସନ୍ତାପ ସମ୍ଭୋଗ ସାହସ, ସମ୍ଭ୍ରାନ୍ତ୍ୟ ସମ୍ବେଦନା, ସୃଷ୍ଟି ସଂଗ୍ରାମ ଏ ସକଳର ସମାବେଶ ସେ ଜଣେ! ଅନ୍ୟର ହସ ସହିତ ଓଠ ମିଳେଇ ହସିବା, ଅନ୍ୟର କୋହରେ ଲୁହ ହୋଇ ବୋହିଯିବା, ଅନ୍ୟର ଯେକୌଣସି ସମସ୍ୟାକୁ ନିଜ କାନ୍ଧରେ ବୋହିନେବା ମଣିଷ କୋଟିକରେ ଗୋଟିଏ । ସେ ମୋର ଅଗ୍ରଜତୁଲ୍ୟ ବନ୍ଧୁ (ଶତ୍ରୁ) । ଏହା ମୁଁ ତାଙ୍କୁ ଅଧିକ ପ୍ରଶଂସା କରି ଲେଖୁନାହିଁ ସେ ମୋ ପାଇଁ ଯାହା ଥିଲେ ତାଠାରୁ ଅଧିକ ଶହେଗୁଣ ଥିଲେ ଯେଉଁମାନଙ୍କ ପାଇଁ- ସେମାନେ ଓ ସଜ୍ଞାନରେ ବା ଅଜ୍ଞାନରେ ତାଙ୍କର ସମ୍ବେଦନଶୀଳତା ଯାହାଙ୍କୁ ସ୍ପର୍ଶ କରିଛି ସେମାନେ ଏକଥା ବୁଝିବେ ।

ଯଶଫୁଲ ତିନିଜଣ ତୋଳନ୍ତି- "ସୁର, ବୀର ଓ ବିଦ୍ୱାନ । ଜଗଦୀଶ୍ ପାଣି ସୁର-ଅସୁର, ବୀର-ବୀରପୂଜକ ବିଦ୍ୱାନ, ବିଦ୍ୟୁଜନ ସେବକ ବନ୍ଧୁ-କନ୍ଧୁକ, ସାଧୁ-ସାଧକ, ପ୍ରୀତି ଓ ପ୍ରେମର ପ୍ରତୀକ ପ୍ରମାଣ ପ୍ରୟୋଜନହୀନ ।

ବନ୍ଧୁ ମାଇତିବାବୁ ସେପାରିକୁ ଚାଲିଯିବା ଦଶଦିନ ପୂରିଲାନି । ଅବଢ଼ା ବଡା ହେଲାନି, ହୁଏତ ଆରପାରିରେ ଦୁହେଁ ଅମୃତ ବାଢ଼ିବେ । ଏମାନେ ମରଣଶୀଳ ନୁହଁନ୍ତି ଏମାନଙ୍କର ଆତ୍ମା ଅନନ୍ତ, ଅଚ୍ୟୁତ , ପରମଧାମର ପବିତ୍ର ପୀଠରେ ସେବା ଦେବା ପାଇଁ ବ୍ୟଗ୍ର ହୋଇ ଉଠିଥିଲା ତେଣୁ ତ୍ୱରାନ୍ୱିତ ଗତିରେ ଏ ଦୁହେଁ କାନ୍ଧରେ କାନ୍ଧ ମିଳାଇ ବାନ୍ଧିହୋଇ ଚାଲିଗଲେ ସେ ଧାମକୁ ।

ସେ କହୁଥିଲେ ଅଣିଟିଏ ନେଇ କଲିକତାରେ ପହଞ୍ଚିଥିଲେ । ରାସ୍ତା ପାଇପରୁ ପାଣିପିଇ ଏପାଖ ସେପାଖ ବୁଲିବୁଲି ଅଦୃଶ୍ୟ ଶକ୍ତିର ସହାୟତାରେ ଧୀରେ ଧୀରେ ସବୁ ଏଡାଇ ଚାଲିଗଲେ । କିଛି ଅକ୍ଷରକୁ ଅବଲମ୍ବନ କରି ପ୍ରଥମେ ମୁଦ୍ରଣ କାର୍ଯ୍ୟରେ ଲାଗିପଡ଼ିଲେ । ଦୀର୍ଘଦିନର କଲିକତା ଅବସ୍ଥାନ ପରେ ସେଠାକାର ଓ ଓଡ଼ିଶାର

ଓଡ଼ିଆମାନଙ୍କର ସମସ୍ୟା ସମାଧାନରେ ନିଜକୁ ନିୟୋଜିତ କଲେ । ଡଃ ହରେକୃଷ୍ଣ ମହତାବବାବୁ ଜଗଜ୍‌ଜୀବନ ରାମ– ବିଶ୍ୱନାଥ ଦାଶଙ୍କ ସହ ତାଙ୍କର ପିତାପୁତ୍ର ସମ୍ବନ୍ଧ ଥିଲା । "ଜଗଦୀଶ" ଏହି ନାମ ଶୁଣିବା ମାତ୍ରକେ ଡଃ ମହତାବଙ୍କ ମୁହଁରେ ଆଶୀର୍ବାଦର ପୁଲକାଲୋକ ପ୍ରକଟିତ ହେଉଥିଲା । ବ୍ୟକ୍ତିଗତ ଜୀବନଠାରୁ ବହୁ ଊର୍ଦ୍ଧ୍ୱରେ ଥିଲା ତାଙ୍କ ଆଧ୍ୟାତ୍ମିକ ଜୀବନ ଓ ସାମାଜିକ ସମ୍ବେଦନଶୀଳତା ।

ଥରେ କିଛି ଯୁବକ ଅପକର୍ମ କରି ଆଇନ୍‌ଶୃଙ୍ଖଳା ଅଧିକାରୀଙ୍କ ଦ୍ୱାରା ଆବଦ୍ଧ ହୋଇଥିଲେ । ସେମାନଙ୍କର କର୍ମ ସମର୍ଥନ–ଯୋଗ୍ୟ ନଥିଲା । ମୁଁ ବିରୋଧଭାବ ପ୍ରକାଶ କଲି ସେ ମୋତେ କହିଥିଲେ –ଧୀର ! ନିଜ ପିଲା ଏପରି କଲେ ଆମେ ଯାହା କରନ୍ତେ ତାହାହିଁ କରୁଛି ଏବଂ ସେମାନଙ୍କୁ ସେ ସାହାଯ୍ୟ କରି ମୁକ୍ତ କରିଥିଲେ । ଏକଥା ପ୍ରାୟ କୋଡ଼ିଏ ବର୍ଷ ତଳର । ଘଟଣାଟି ମୋର ମନେ ଅଛି । ତା'ପରେ ମୁଁ କେବେ ଅନ୍ୟ କୌଣସି କଥାରେ କିଛି କହେନା । ବ୍ୟକ୍ତିଗତ ସୁଖଦୁଃଖର ସବୁ ନୋଟ୍ ତାଙ୍କ ପାଖରେ ଥଜାଡ଼ି ଦିଏନା, ଶୁଣି ଶୁଣି ସେ ଯାହା ପାରିଛନ୍ତି କରିଛନ୍ତି । ଏହା ତାଙ୍କ ସ୍ୱଭାବ । ଶେଷକଥାଟି ଜଗନ୍ନାଥଙ୍କ "ଶ୍ରୀମନ୍ଦିର" ଛପାହେବ । ଦାନ୍ତ ଘଷା ହୋଇନି ସେ ଅବସ୍ଥାରେ ଗାଡ଼ିରେ ବସିବାକୁ କହୁଥିଲେ । ସହଧର୍ମିଣୀ ତାଗିଦ୍ କଲାରୁ ଦୁଇ ମିନିଟ୍‌ରେ ପାଣି ଢ଼ାଳି ହୋଇପଡ଼ି ଲୁଗା ପଞ୍ଜାବି ପିନ୍ଧି କଚ୍ଛା ମାରୁ ମାରୁ ଖୋସଣି ଖସିଯିବାଟା ତାଙ୍କ ପାଇଁ ନୂଆ ନୁହେଁ । ବିନା ଅଇନାରେ ଆଗରୁ ପଛକୁ ପାନିଆ ଚଳେଇ ନେଉ ନେଉ ସ୍ତ୍ରୀଙ୍କୁ ଡାକିଲେ ପୁରୀ ଯିବାକୁ । ସହଧର୍ମିଣୀ ସବୁବେଳେ ସଜ । ସେ ମଧ୍ୟ ବାହାରିଥିଲେ । ଆମେ ସମସ୍ତେ ଗଲୁ । 'ଶ୍ରୀମନ୍ଦିର' । ଶ୍ରୀମନ୍ଦିରରେ ପହଞ୍ଚିଲା ଶୁଣିଲି, ଉପରଥାକରୁ 'ଶ୍ରୀମନ୍ଦିର' କାଢ଼ୁ କାଢ଼ୁ ସେ ପଡ଼ିଗଲେ । ହାତ ଭାଙ୍ଗିଗଲା, ଏହା ସଙ୍କେତ ଥିଲା କି ? ଜୀବନର ଶେଷଭାଗରେ ଅଚ୍ୟୁତାନନ୍ଦଙ୍କ ଆଶ୍ରମର ଅନ୍ୟତମ ଆଶ୍ରିତ ହୋଇଥିଲେ, ସବୁ କାମକୁ ପଛରେ ପକେଇ ସେ ଆଶ୍ରମ କାମକୁ ଆଗେ କରୁଥିଲେ । ସ୍ତ୍ରୀ 'ପ୍ରେମଲତା'ଙ୍କୁ (ଚୁନାଙ୍କୁ) ତାଙ୍କର ଯେତିକି ପ୍ରୀତି/ ସେତିକି ଭୀତି, କାରଣ ଯାଙ୍କର ତୁଳନାରେ ସେ ଟିକିଏ ଅଧିକ ନୀତି–ପରାୟଣା, କହନ୍ତି–"କେଉଁ ଜନ୍ମର ମା' ଏଣିକି ଜନ୍ମ ଜନ୍ମାନ୍ତରରେ ମୋର ସହଧର୍ମିଣୀ ହେଉ । ସବୁକଥା ଲେଖିଲେ ଅସୀମ ହୋଇଯିବ । ଶିଳ୍ପୀ ଅସୀମ୍‌ବାବୁ ଶ୍ମଶାନରେ ଠିଆହୋଇ ଉପରକୁ ଚାହିଁଥିଲେ । ସେ ହୁଏତ ଯାହା ତାଙ୍କ ଦିବ୍ୟ ଚକ୍ଷୁରେ ଦେଖିଥିବେ– ଆଙ୍କିବେ ।" ସରୋଜବାବୁ କୂଅ ଉପରେ ବସି ଲୁହ ଢାଳୁଥିଲେ । ସରୋଜ ଆଗ, ପ୍ରେସ୍ କାମରେ ସମସ୍ତେ ପଛ । ମୁଁ କିନ୍ତୁ ଦେଖୁଛି–'ଆଲୋକମୟ ଜଗତରେ ଅନନ୍ତ, ଅଚ୍ୟୁତ, ପରମାନନ୍ଦଙ୍କ ଗୋଲୋକ ବୈକୁଣ୍ଠଧାମରେ ସେମାନେ ପ୍ରାର୍ଥନା କରୁଛନ୍ତି–'ପ୍ରଭୁ! ଆମ ଦୁହିଁଙ୍କୁ ପୁଣି ଫେରାଇ ନିଅ ! ଆମ କାମ କ'ଣ ସରିଛି ? ଆମେ ଦାମ–ସୁଦାମ' ପରି ପୁଣି ସେବା କରିବୁ, ବୃନ୍ଦାବତୀ ପରି ସେ ମୋ ସହଧର୍ମିଣୀ ଆମ ପାଖରେ ଥିବ ।"

ସେ ଆସିବେ । ଏକଥା ସମର୍ଥନ କରି ଯେପରି 'ଶ୍ରୀକଣ୍ଠରେ ପ୍ରଭୁ କହୁଛନ୍ତି....

"ମଦ୍‌ଭକ୍ତଃ ନ ହ ପ୍ରଣଶ୍ୟନ୍ତି"–ମୋ ଭକ୍ତର କେବେ ବିନାଶ ହୁଏନା :

ଧ୍ରୁବଂଜାତଃ ମୃତସ୍ୟଚ"– ଯେ ମୃତ୍ୟୁ ଲାଭକରେ ସେ ପୁନଶ୍ଚ ଜନ୍ମ ଲାଭକରେ.....

ଏ ଆଶା ଓ ଆଶ୍ୱାସନା ସମସ୍ତଙ୍କୁ ସାହସ ଦେଉ; ଏହାହିଁ ଆଜିର ପ୍ରାର୍ଥନା.................



# ବାପା

ବାପାହେ,

କେମିତି ଭୁଲିଲ ଆମକୁ ତୁମେ
ଗ୍ଧଲିଗଲ କେଉଁ ଅଜଣା ପୁରେ ।
ମଉନେ ରହିଲ କିଛି କହିଲନି
ଆମକୁ କେମିତି ଭୁଲିଲ ତୁମେ ।

ରାଗିକି ଗଲକି ରୁଷିକି ଗଲ
କହିଲ ନାହିଁଟ ଆମକୁ ଟିକେ
ଭୁଲ୍ କଲୁ ଯଦି ଗାଳି ଦେଇଥାନ୍ତ
ସହିଥାନ୍ତୁ ମଥାପୋତି କି ଆମେ ।

ଆମ ଭୁଲ୍‌ର କି କ୍ଷମା ନଥିଲା
ଏତେ ବଡ ଦଣ୍ଡ କାହିଁକି ଦେଲ ।
କେମିତି ବଞ୍ଚିବୁ ତୁମକୁ ଛାଡ଼ି ହେ,
ମନେ ଥରେ ଟିକେ ଭାବି ଦେଖିଲ ?

'କୁନି ପିଲା' ବୋଲି ଡାକିବ କିଏ
ଭାଇ ବୋଲି ଆଉ କିଏ ଡାକିବ
ନମୀ ! ଅଧକପେ ଗ୍ଧ' କରିଦେ
କିଏ ମୋତେ ଆଉ ଡାକି କହିବ ।

ମାମା ପରା ତୁମ ଗେହ୍ଲାର ଗ୍ଧଙ୍କୁଡ଼ି
ମାତା ଥିଲା ତୁମ ଗଳାର ମାଳି
ବୋଉ ଥିଲେ ତୁମ ଚଳନ୍ତି ପ୍ରତିମା
ସମସ୍ତଙ୍କୁ ଭୁଲି ଯାଇଛ ଗ୍ଧଲି ।

ବାପା ବୋଲି ଆଉ କାହାକୁ ଡାକିବୁ
ବାପା ଡାକ ଆମ ଗଳାଟ ସରି
ବାପା ଡାକ ଭୁଲି ଥିଲେ ଜିତୁ ମାମା
ଜେଜେ ଡାକ ଆଜି ଗଲାଣି ସରି ।

ଦିଅ ଶକତି ହେ ଦିଅ ଆଶିଷ
ଦିଅ ଦିବ୍ୟଜ୍ଞାନ ସାହସ, ବୁଦ୍ଧି
ତୁମରି ଚରଣେ ଆମ ମନ ଥାଉ
ବାପାହେ, ଆମର ନିଅ ପ୍ରଣତି ।

ନମୀ (ବୋହୂ)

# ଆଉ ଥରେ ଡାକନ୍ତୁ

## ସରୋଜ ଭଟ୍ଟାଚାର୍ଯ୍ୟ

ଚାକିରି ଦରକାର–ଚାକିରି । ରାତିରେ କଲେଜରେ ପାଠ ପଢୁଛି । ଦିନରେ ଚାକିରି ଖୋଜୁଛି । ଆଜି ଏ ଅଫିସ୍– କାଲି ସେ ଅଫିସ୍ । ଆଜି ଏ କଂପାନୀ ତ କାଲି ସେ କଂପାନୀ । ହେଲେ ସବୁଠି ସେଇ ଗୋଟିଏ ନୋଟିସ୍–"ନୋ ଭେକେନ୍‌ସୀ" । କିନ୍ତୁ ମୋର ଯେ ଝଣ୍ଟେ ଚାକିରି ଦରକାର । ନିହାତି ଦରକାର ।

ଦିନେ ମାମୁଁ ରମାପ୍ରସାଦ ବାର୍‌ଚି ରାତି ନ ପାହୁଣୁ ଘରେ ଆସି ପହଞ୍ଚିଲେ । ମୁଁ ବିଛଣାରୁ ଉଠିନଥିଲି । ବିଛଣାରୁ ଉଠେଇ କହିଲେ–"ଷଷ୍ଠି ! ଜଲ୍‌ଦି ମୁହଁ ଧୋଇ ଚାଲ୍ ମୋ ସାଙ୍ଗରେ ।"

ମୁଁ ପଚାରିଲି-- କଉଠିକି ?

ସେ କହିଲେ– ଓହୋ ! ଗଲେ ଦେଖିବୁନି । ବାହାରି ପଡ଼ିଲି ମାମୁଁଙ୍କ ସାଂଗରେ । ଆସି ପହଞ୍ଚିଲି ବହୁବଜାର ଷ୍ଟ୍ରିଟ୍‌ର ଗୋଟାଏ ଘରେ । ଘର ତ ନୁହେଁ– ହୋଟେଲର କାଠପାହାଚ ଚଢ଼ି କାଠ ତିଆରି ଗୋଟାଏ ବଖରାରେ । ଧଳା ଧୋତି ସାଂଗକୁ ଧଳା ଖଦଡ଼ ପଂଜାବି ପିନ୍ଧି ଖଟ ଉପରେ ଯେ ବସିଥିଲେ ତାଂକ ସାଂଗରେ ପରିଚୟ କରେଇ ଦେଲେ । ଜଗଦୀଶ ପାଣି । ସମାବେଶର ସଂପାଦକ ଜଗଦୀଶ ପାଣି । ମାମୁଁଙ୍କର ଘନିଷ୍ଠ ବନ୍ଧୁ ଜଗଦୀଶ ପାଣି । ମୁଁ ନମସ୍କାର କରି ଠିଆହେଲି । ସେ ମୋ ମୁହଁକୁ ଅନେଇ ମାମୁଁଙ୍କୁ କହିଲେ-- "ହଁ ପାରିବ ।" ମୁଁ ନିଜେ ଜାଣିଲିନି ମୁଁ କ'ଣ ପାରିବି ।

ଜଗଦୀଶବାବୁ ମତେ ସେଇ ଖଟ ଉପରେ ବସେଇ କିଛି ଛାପା କାଗଜ ମୋ ହାତରେ ଧରେଇ ଦେଇ କହିଲେ--"ସମାବେଶ'ର ଲେଖା । ପ୍ରୁଫ୍ ଦେଖିବ ତମେ । ପାରିବନି ?" ଜାଣିନି କେମିତି ପ୍ରୁଫ୍ ଦେଖନ୍ତି । ହେଲେ ସେକଥା କହିଲେ କାମ ମିଳିବ କେମିତି ?

କହିଲି– ଚେଷ୍ଟା କରିବି । ମତେ ଟିକିଏ ଦେଖେଇଦେଲେ ଭାବୁଛି ମୁଁ ପାରିବି । ସେ କହିଲେ– ମୁଁ ଜାଣେ ତମେ ପାରିବ । ମୁଁ ବତେଇଦେବି କେମିତି କ'ଣ କରିବାକୁ ହୁଏ । ବାସ୍ ଚାକିରି ହେଇଗଲା– ତା' ପରଠୁ ତିନିବର୍ଷ–ଷାଠିଏରୁ ବାଆଷଠି କି ତେଏଷଠି । ତା' ପରେ ମତେ ଚାଲିଯିବାକୁ ପଡ଼ିଲା କଲିକତା ଛାଡ଼ି କେନ୍ଦୁଝର– ବାପାଙ୍କ ପାଖକୁ ।

ବେଶ୍ କେତୋଟି ବର୍ଷ କଟିଯାଇଛି । ମୁଁ ବି. କମ୍ ପାସ୍ କରିଛି । ବାପା ଚାଲିଗଲେ । ଘରର ଦାୟିତ୍ୱ ଏବେ ମୋ ଉପରେ । ହେଲେ ମୁଁ କ'ଣ କରିବି ? କଲିକତାରେ ନିଆଁ ଜଳୁଛି । ନକ୍ସାଲ ଆନ୍ଦୋଳନର ନିଆଁ । ମାମୁଁ କହିଲେ- ଷଷ୍ଠି ! ଏଠି ନୁହେଁ ଚାଲ ମୋ ସାଂଗରେ-ଭୁବନେଶ୍ୱର ଯିବୁ । ମାମୁଁ ସେତେବେଳେ ଭୁବନେଶ୍ୱରରେ ଇଉ.ଏନ୍.ଆଇର ଷ୍ଟାଫ୍ ରିପୋର୍ଟର ।

ଭୁବନେଶ୍ୱର ? ମୁଁ ବିସ୍ମୟର ଦୃଷ୍ଟିରେ ମାମୁଁଙ୍କୁ ଅନେଇଲି ।

ସେ କହିଲେ-"ଜଗଦୀଶବାବୁ ଏବେ ସେଠି ତାଂକ ପ୍ରେସ୍ କରିଛନ୍ତି । ସେଇଠି ତୁ ରହିବୁ ।"

କହିଲି- ସେ କ'ଣ ମତେ ରଖିବେ ? ଏବେ ହୁଏତ ତାଙ୍କ ପ୍ରେସ୍‌ରେ ଆଉ କିଏ ପ୍ରୁଫ୍ ଦେଖୁଥିବେ ।

ମୁଁ ଚଲେ-

ମାମୁଁ କହିଲେ ହେଲା ଏବେ ପ୍ରୁଫ୍ ନଦେଖିବୁ- ଅନ୍ୟ କିଛିତ କରିପାରିବୁ । ଚାଲ ।

ବାସ୍ । ଚାଲିଆସିଲି ମାମୁଁଙ୍କ ସାଂଗରେ ଭୁବନେଶ୍ୱର । ଜଗଦୀଶ ବାବୁଙ୍କ ପ୍ରେସ୍ ସେତେବେଳେ ତିନିନମ୍ବର ଇଉନିଟ୍‌ରେ । ମତେ ଦେଖି ଜଗଦୀଶବାବୁ କୁଣ୍ଢେଇ ପକେଇଲେ ।

"ସରୋଜ ତୁ ଆସିଛୁ ? ଆ ଆ ବସ "

ତେଏସ୍ତରି ମସିହା ଜୁଲାଇ ମାସର ଗୋଟାଏ ସକାଳରେ ସେଇ ଯେ ପ୍ରେସ୍‌ରେ ଆସି ବସିଛି ଆଜି ଚଉରାନବେରେ ବି ସେଇଠି । ନିଜ ହାତରେ ଟିକିନିଖିକରି ଗୋଟିକ ପରେ ଗୋଟେ ପ୍ରେସ୍‌ର ସବୁ କାମ ମତେ ଶିଖେଇଲେ ଗୁରୁହେଇ- ବାପା ହେଇ । ପ୍ରେସ୍‌ର ଭଲମନ୍ଦରେ ପରାମର୍ଶ କରିବାକୁ ହେଲେ ଡାକ ଛାଡ଼ନ୍ତି- "ସରୋଜ ଇଆଡ଼େ ଆ !" କିଛି ଭୁଲ୍ କଲେ ଗାଳି ଦେବା ପାଇଁ ଡାକ ଛାଡନ୍ତି- "ସରୋଜ ଇଆଡ଼େ ଆ !" ମୋ କାମରେ ଖୁସିହେଲେ ଡାକ ଛାଡ଼ନ୍ତି- "ସରୋଜ ଇଆଡ଼େ ଆ !" ସେପ୍ଟେମ୍ବର ଦୁଇ ତାରିଖ ଭୋରରେ ସେ ଚାଲିଗଲେ । "ସରୋଜ ଇଆଡ଼େ ଆ" ଡାକିବାକୁ ଆଉ କେହି ରହିଲେନି ।

ମୁଁ ଯେ ଏବେ ଆପଣଂକୁ ଡାକୁଛି- ଅନ୍ତର ଭିତରେ
ଥରକୁ ଥର ଅନେକ ଥର-କହୁଛି କୁହନ୍ତୁ
ମୁଁ କ'ଣ କରିବି-କ'ଣ କରିବି ମୁଁ ?



# ନିଦ ଭାଂଗିବ କେତେବେଳେ ?

**ଅସୀମ ବସୁ**

ଜଗଦୀଶବାବୁ ! ଏବେ କ'ଣ ଶୋଇରହିଲେ ଚଳିବ ? ପୂଜା ଆଉ କେତେଦିନ ରହିଲା ? ସମାବେଶର ପୂଜାସଂଖ୍ୟା ପାଇଁ ପ୍ରସ୍ତୁତ ହେବାକୁ ପଡ଼ିବନି ? ସେଇ କଲିକତାରୁ- "ସମାବେଶ"ର ପ୍ରାୟ ଜନ୍ମ ଲଗ୍ନରୁ ମୁଁ ତ ଆପଣଙ୍କୁ ଦେଖିଆସୁଛି । କାହିଁ- କେବେ ତ ଏମିତି ନିଷ୍କ୍ରିୟ ହେଇନାହାନ୍ତି । କଲିକତାରେ-ଫ୍ରେଣ୍ଡସ୍ ପ୍ରେସ୍‌ର ସେଇ ଛୋଟ ଅଫିସ୍ ଘରେ ଖୁନ୍ଦାଖୁନ୍ଦି ହୋଇ ବସିବା- ହରି ହାତରୁ ଗୁହା ପିଇବା-'ସମାବେଶ'ର ପ୍ରଚ୍ଛଦ ପାଇଁ ତାଗିଦ୍ ଦେବା-ଏସବୁ କ'ଣ ଭୁଲିଗଲେ ।

ଜଗଦୀଶବାବୁ ! ମୁଁ ତ ଲେଖକ ନଥିଲି । "ସମାବେଶ"ରେ "କଥାରେ କଥାରେ" ଲେଖିବାକୁ ବାଧ କରେଇ ମତେ ଲେଖକ ବନେଇଲେ ଆପଣ ।

"କଥାରେ କଥାରେ" କ'ଣ ଏତିକିରେ ସରିଯିବ ? ଆପଣଙ୍କ ତାଗିଦା ନପାଇଲେ ମୁଁ ଲେଖିବି କେମିତି କହିଲେ ?

ଜଗଦୀଶବାବୁ ମନେଅଛି ? ମନେଅଛି କଲିକତାରେ ମୋର ପରୀକ୍ଷାଫିସ୍ ଦେବାପାଇଁ ନିଜ ଘଣ୍ଟା ବନ୍ଧାରଖି ମତେ ଚାଳିଶ ଟଂକା ଦେଇଥିଲେ ? ସେ ଘଣ୍ଟା ତ ଆପଣ ଆଉ ମୁକୁଳେଇ ପାରିନାହାନ୍ତି । ମନେଅଛି କଲିକତାରେ ମୋର ଟାଇଫଏଡ୍‌ବେଳେ ମୋ ପାଖରେ ଜଗି ବସିଥିଲେ ? ଏଠି ବି ସେଇ ପୁରୁଣା ଭୁବନେଶ୍ୱର ଡାକ୍ତରଖାନାରେ । ସେଇ ଯେତେବେଳେ ମୋ ପେଟରେ ପଥର ହେଇଥିଲା ।

ଗଲା କେଇବର୍ଷ ପୂଜାସଂଖ୍ୟା କଥା ମନେ ପକେଇଲେ- ସେଇ ଯେତେବେଳେ ଅସିତ୍, ସରୋଜ, ତ୍ରିପାଠୀ ଅସୀମକୁ ନେଇ ପୂଜାସଂଖ୍ୟା ପାଇଁ ଲଢେଇ କରୁଥିଲେ ? ବା ଯେତେବେଳେ ଅସୀମ, ସରୋଜ, ବସ୍ତିଆ, ତ୍ରିପାଠୀକୁ ନେଇ ଲଢେଇ କରୁଥିଲେ । ପୂଜା ଆଗର ସେଇ ଦେଢ଼ମାସ କି ପରିଶ୍ରମ । ପ୍ରେସ୍‌ଟା ପାଲଟି ଯାଉଥିଲା ଗୋଟାଏ ଯୁଦ୍ଧକ୍ଷେତ୍ରରେ-ଆପଣ ସେନାଧକ୍ଷ ପାଲଟି ଯୁଦ୍ଧ ପରିଚ୍ଳନା କରୁଥିଲେ । ରାତି ଆଉ ଦିନ ଭିତରେ ଫରକ୍ ନଥିଲା । ତ୍ରିପାଠୀକୁ ଦଉଡ଼ଉ ଥିଲେ- ସରୋଜକୁ ବୁଝାଉଥିଲେ- ବସ୍ତିଆକୁ ତେଜାଉଥିଲେ- ଅସୀମକୁ ଲେଖାଉଥିଲେ ଏଇ ପୂଜାସଂଖ୍ୟା ସମାବେଶ ପାଇଁ । ଆପଣ ପରା କହୁଥିଲେ-"ସମାବେଶ' ଆପଣଙ୍କର ପତ୍ରିକା ନୁହେଁ- ଆପଣଙ୍କର ପ୍ରାଣ । ତେବେ ? ଏବେ ଶୋଇରହିଲେ ଚଳିବ ? ଲେଖା ତ ଅନେକ ଆସିଲାଣି । ଉପନ୍ୟାସ କାହାର ଦବା ? ଏଥରର ନୂଆ ଆକର୍ଷଣ କ'ଣ ହେବ କହିଲେ ସିନା ବିଜ୍ଞାପନ ପାଇଁ ଲେଖା ତିଆରି କରିବି । ଆମ ଭିତରେ ଆପଣ ସଞ୍ଚରି ଯାଆନ୍ତୁ-ଆମକୁ ଉତ୍ତେଜିତ କରନ୍ତୁ-ଆପଣଙ୍କର ପ୍ରାଣର 'ସମାବେଶ'କୁ ଆପଣଂକର ଇଚ୍ଛା ଅନୁସାରେ ସଜେଇବା ପାଇଁ ଆମକୁ ନିର୍ଦ୍ଦେଶ ଦିଅନ୍ତୁ । ଆମେ ପ୍ରସ୍ତୁତ ହୋଇ ଅପେକ୍ଷା କରିଛୁ ଆପଣଂକର ନିର୍ଦ୍ଦେଶକୁ ।

# ଶେଷପୃଷ୍ଠା-ଶେଷକଥା

**ହରିହର ମିଶ୍ର**

ମୁଁ ପହଞ୍ଚିଲା ବେଳକୁ ସବୁ ସରିଗଲାଣି । ସେ ଆଖି ଦୁଇଟି କେବଳ ଶୂନ୍ୟକୁ ଗୃହିଁଛି । କାହାକୁ ଅପେକ୍ଷା କରିଛନ୍ତି ନା କ'ଣ । ନୟାଗଡ଼ ପୂର୍ବଦିନ ଟେଲିଗ୍ରାମ୍ କରିଥିଲେ ହରି ଆସିବାକୁ ଗୃହିଁ ଗୃହିଁ ଶୋଇଯାଇଛନ୍ତି । ଏଇ ତ ଆସିଗଲି । ସରୋଜ ଆଖିପତା 'ଦି'ଟା ବଂଦ କରିଦେଲା ହଠାତ୍ ।

'ହରିବାବୁ !' ବୋଲି ଭାଉଜ ରଡି ଛାଡ଼ି କାଂଦି ଉଠିଲେ । ଜୋର୍‌ରେ ବାହାଟା ଚିପି ଧରିଲି ତାଙ୍କର । ତାଙ୍କୁ ଅଲଗା କରିଦେଲି ମୋ ଭାଇଠୁ, ଜଗଦୀଶବାବୁଙ୍କଠୁ । ସେ କାଂଦି କାଂଦି କହିଲେ- ହରିବାବୁ ମତେ ଯିବାକୁ ଦିଅ ।

ବୋହିନେଇ ଗୃଲିଗଲୁ ସମସ୍ତେ ସତ୍ୟନଗର ମଶାଣିକୁ ।

ସମସ୍ତେ କହିଲେ- 'ତମକୁ ସେ ଅପେକ୍ଷା କରିଥିଲେ ।' ରମାକାନ୍ତବାବୁ କହିଲେ "ତମେ ତ ନିଶ୍ଚୟ ଆସିଥାନ୍ତ । ମୁଁ ପୂଜାପାଇଁ କବିତାଟିଏ, ପୋଷ୍ଟ କରି ଅପେକ୍ଷା କରିଥିଲି ତାଙ୍କଠୁ ଶୁଣିବାକୁ-କବିତା କେମିତି ଲାଗିଲା, ଜାଣିବାକୁ ?"

ମୁଁ କହିଲି ସେ ଥିଲେ ଆପଣଙ୍କ କବିତାର ଜଣେ ପ୍ରେମୀ ଲୋକ- "ସମାବେଶ' ତାଙ୍କୁ ବାଦ୍‌ଦେଇ କ'ଣ କେବେ ହେଇପାରେ ହରି !" ମୁଁ ଚୁପ୍ ରହିଲି । କଥାଟା ଏବେ ବାରଂବାର ମୁଣ୍ଡରେ ଖେଳୁଛି । 'ସମାବେଶ' ଏକ ଅନୁଷ୍ଠାନ । କେତେ ସାହିତ୍ୟିକଙ୍କ ଲେଖାରେ ସମୃଦ୍ଧ । ସେଦିନ ଚଂଦ୍ରଶେଖରବାବୁ ତାଙ୍କ ଗଳ୍ପଟି ବିଷୁବରେ ପ୍ରକାଶ ପାଇନଥିବାରୁ ଠିକ୍ ସେଇଆ କହିଲେ- "ମୁଁ, ଜଗଦୀଶବାବୁ ଆଉ ତମେ ଅଛ ବୋଲି ଗଳ୍ପ ପଠାଏ । ମୋ ପାଇଁ ବ୍ୟକ୍ତି ଓ ବ୍ୟକ୍ତିଗତ ସଂପର୍କ ବଡ଼ କଥା । ପତ୍ରିକା ବା ଅନୁଷ୍ଠାନ ନୁହଁ ।"

ଆଜି ଭାବୁଛି, ବ୍ୟକ୍ତି ଯଦି ଭଲ ନଥାଏ, ତା'ର ପତ୍ରିକାର ଯେତେ ପ୍ରତିପତ୍ତି ଥାଉନା କାହିଁକି ତା ଭିତରୁ ଗୁଣାତ୍ମକ ସାହିତ୍ୟ କଦାପି ସୃଷ୍ଟି ହେବନି । ସୃଜନଶୀଳ ବ୍ୟକ୍ତିମାନେ ବ୍ୟକ୍ତିର ବ୍ୟକ୍ତିତ୍ୱ ଦ୍ୱାରା ଆକର୍ଷିତ ହୋଇ କିଛି ଲେଖିଥାନ୍ତି ଓ ସେ ଲେଖା ପଠେଇବାକୁ ଆଗ୍ରହ ପ୍ରକାଶ କରନ୍ତି ।

ବର୍ତ୍ତମାନ ସେ ବ୍ୟକ୍ତିଟି ନାହିଁ । ତାଙ୍କୁ ଯେତିକି ଜାଣିଛି, ସେ ଥିଲେ ଅତୁଳନୀୟ ଓ ଅନନୁକରଣୀୟ । ଗୋଟିଏ ପତ୍ରିକାର ସଂପାଦକ ଭାବେ, ଆଗ୍ରହ, ଭଲପାଇବା, ନିଷ୍ଠା, ତତ୍ପରତା, ଉତ୍ସାହ ତାଙ୍କ ପାଖେ ଯାହା ଥିଲା ସେ ସବୁ ପାଇଁ 'ସମାବେଶ' ଯଥେଷ୍ଟ ନୁହେଁ ।

ତଥାପି 'ସମାବେଶ' ଥିଲା ତାଙ୍କର ଆତ୍ମା । ତାଙ୍କ ପରିଚୟ । ଯାହା ସବୁରି ଭିତରେ ବାଣ୍ଟି ହୋଇଯାଇଛି ଓ ସବୁରି ଭିତରେ ରହିଥିବ ।

# ଜଗଦୀଶ ପାଣିଙ୍କ ସ୍ମରଣୀୟ ବାଣୀ

୧.- ସମାବେଶ ବିଶ୍ୱାସ କରେ ନିୟମିତ ଅସାହିତ୍ୟ ପତ୍ରିକା ହେବାଠାରୁ ଅନିୟମିତ ସାହିତ୍ୟ ପତ୍ରିକା ହୋଇ ବଂଚି ରହିବାରେ ସାର୍ଥକତା ଅଛି।

(ଜଗଦୀଶ,ଶେଷପୃଷ୍ଠା)

୨ - ଏଣିକି ସାହିତ୍ୟ ପୁଣି ଫୁଟିବ କାଶତଣ୍ଡି ପରି ସମୟୋପଯୋଗୀ ଓ ଶୁଭ୍ର ଏବଂ ଗଙ୍ଗଶିଉଳି ପରି ସୁବାସିତ, ପବିତ୍ର ଓ ମାଧୁର୍ଯ୍ୟପୂର୍ଣ୍ଣ।

(ଜଗଦୀଶ,ଶେଷପୃଷ୍ଠା)

୩- କବିତା ସୂକ୍ଷ୍ମ ହୋଇପାରେ, ଗଭୀର ହୋଇପାରେ କିନ୍ତୁ ତା ସହିତ କବିତା ଯେ ପ୍ରଧାନତଃ ଶକ୍ତିଶାଳୀ ବା Powerful ହେବା ପ୍ରୟୋଜନ, ଏ କଥାଟି ଆଧୁନିକ ସ୍ରଷ୍ଟାଗଣ ଅନେକ ସମୟରେ ଭୁଲି ଯାଆନ୍ତି।

(ଜଗଦୀଶ,ଶେଷପୃଷ୍ଠା)

୪ - ଅଖିଳ ମୋହନ କେବଳ ସାହିତ୍ୟ ସାଧକ ଭାବରେ ନୁହେଁ, ଜଣେ ଉଚ୍ଚକୋଟୀର ମନୁଷ୍ୟ ଭାବରେ ତାଂକର ବ୍ୟକ୍ତିତ୍ୱ ଓ ଚରିତ୍ରବତ୍ତା ବାସ୍ତବିକ ଅତୁଳନୀୟ। ଶୁଆ ମୂଲ୍ୟ ଶୁଆ ନିଜ ତୁଣ୍ଡରେ କହିଲା ଭଳି ସେ ଛାଡ଼ି ଯାଇଥିବା ଗଳ୍ପ ସମ୍ଭାରତାଙ୍କ ପ୍ରତିଭାର ସାକ୍ଷ୍ୟ ଚିରକାଳ।

(ଜଗଦୀଶ, ଶେଷପୃଷ୍ଠା)

୫ - ଉପନ୍ୟାସ କଳାର ସାର୍ଥକତା ଓ ଭାବ ରାଜ୍ୟର ଚିରନ୍ତନତା ଦୃଷ୍ଟିରୁ ଓଡ଼ିଆ ଉପନ୍ୟାସର ସମୀକ୍ଷା କରାଗଲା ବେଳେ କେତକ ତରୁଣ ଔପନ୍ୟାସିକମାନଙ୍କ ପ୍ରତି ଆସ୍ଥାଭାବ ସୂଚିତ ହୋଇଥିଲା। ସେମାନେ ହେଲେ ଗଣେଶ୍ୱର ମିଶ୍ର, ଦେବ୍ରାଜ ଲେଙ୍କା, ହର ପ୍ରସାଦ ଦାସ, ଶ୍ୟାମ ପ୍ରସାଦ ଚୌଧୁରୀ, ଅନାଦି ସାହୁ, ହୃଷିକେଶ ପଣ୍ଡା, ଜଗଦୀଶ ମହାନ୍ତି ଓ ପ୍ରତିଭା ରାୟ,।

(ଜଗଦୀଶ,ଶେଷପୃଷ୍ଠା)

୬- ସ୍ୱାର୍ଥକୁ ସାରଥୀ କରି ଜାତି ନନ୍ଦିଘୋଷ ଚଳାଇବାର ପ୍ରଚେଷ୍ଟାରେ ସମାବେଶ ବିଶ୍ୱାସୀ ନୁହେଁ, କିନ୍ତୁ ସ୍ୱାର୍ଥ ସଂପୂର୍ଣ୍ଣ ତ୍ୟାଗ କରିବା ବି ବାସ୍ତବ ଅଭିଜ୍ଞତା ଦୃଷ୍ଟିରୁ ସମ୍ଭବ ନୁହେଁ। କିନ୍ତୁ ଏ ସ୍ୱାର୍ଥର ସଂଜ୍ଞା ବି ଆମ ଆଖିରେ ଭିନ୍ନ।

(ଜଗଦୀଶ ଶେଷପୃଷ୍ଠା)

୭- ଶେଷପୃଷ୍ଠା ଶେଷ କଥା ନୁହଁ- ଆରମ୍ଭ ମାତ୍ର। ପ୍ରତ୍ୟେକ ଯାତ୍ରାରେ ଆରମ୍ଭର ଶେଷ ଓ ପୁଣି ଶେଷରୁ ଆରମ୍ଭର ମୂଳଦୁଆ ପଡ଼ିଆସିଛି।

୮ - ସମାବେଶର ପୂଜାସଂଖ୍ୟା ଯେ ଅନ୍ୟାନ୍ୟ ବହୁ ପୂଜାସଂଖ୍ୟାର ଭିଡ଼ ମଝିରେ ନ ହଜିଯିବା ପରି, ଏହା ଦୀର୍ଘ ଅଣତିରିଶ ବର୍ଷ ଧରି ଆପଣମାନେ ମୁକ୍ତକଣ୍ଠରେ ସ୍ୱୀକାର କରି ଆସିଛନ୍ତି।

(ଜଗଦୀଶ, ଶେଷପୃଷ୍ଠା)

୯ - ଯେତେ କାଳଜୟୀ କବିତାର ରଚୟିତା ହେଲେ ସୁଦ୍ଧା ସ୍ୱୟଂକବିକୁ ଜଣେ ସାଧାରଣ ମଣିଷପରି ଜୀଇଁବାକୁ ଓ ମରିବାକୁ ହୁଏ, ଏ କଥା ଉଭୟ କବି ଓ କବିତାଗ୍ରାହୀ ବେଶ୍ ଭଲ ଭାବରେ ବୁଝିସାରିଛନ୍ତି। ଜୀବନକାଳ ମଧ୍ୟରେ ଘୋର ଅବହେଳା ଓ ହତାଦରର ଗ୍ରହୀତା ହୋଇ ସୁଦ୍ଧା ଜଣେ ସଚ୍ଚା କବି କଦାପି ମୌଳିକ ବିଶ୍ୱାସ ଓ ଭାଷା ସହିତ ପ୍ରତାରଣା କରେନାହିଁ। କବି ଅନନ୍ତ ପଟ୍ଟନାୟକ ଏହି ସିଦ୍ଧ ସତ୍ୟର ବ୍ୟତିକ୍ରମ ନଥିଲେ। ଭଲ କବିଟିଏ ହେବାକୁ

ହେଲେ ପ୍ରଥମେ ଯେ ଭଲ ମଣିଷଟିଏ ହେବାକୁ ପଡ଼େ ଏ କଥା ସେ ନିଶ୍ଚୟ ମାନିଥିଲେ।

(ଜଗଦୀଶ, ଶେଷପୃଷ୍ଠା)

୧୦-ସାହିତ୍ୟ ପତ୍ରିକାଟିଏ ପ୍ରକାଶ କରିବାକୁ ହେଲେ ଯେଉଁ ପ୍ରକାର ନିଷ୍ପକ୍ଷ ଓ ତଟସ୍ଥ ଭାବ ଅତ୍ୟନ୍ତ ଜରୁରୀ ବୋଲି ମୋର ବ୍ୟକ୍ତିଗତ ଧାରଣା , ସେହି ପ୍ରକାର ଭାବ ଏହି ସ୍ମୃତି ସଂଖ୍ୟାରେ ମୁଁ ରକ୍ଷାକରିପାରିନାହିଁ। କାରଣ ଯେଉଁ ମହାନ୍ ବ୍ୟକ୍ତିଙ୍କ ସହିତ ମୁଁ ଏତେ ଘନିଷ୍ଠ ଓ ଆତ୍ମୀୟ ଭାବରେ ସଂପୃକ୍ତ ସେହି ଡକ୍ଟର ମହତାବଙ୍କ ନିମିତ୍ତ ମୋର ଭାବପ୍ରବଣତାର ପରିପ୍ରକାଶରୁ ମୁଁ ଆଦୌ ଅସ୍ୱାଭାବିକ ମନେ କରୁନାହିଁ।

(ଜଗଦୀଶ,ଶେଷପୃଷ୍ଠା)

୧୧-ସାହିତ୍ୟ ସେବା କ୍ଷେତ୍ରରେ ଦିନକୁ ଦିନ ବାଧା ବିପତ୍ତି, ଘାତ ପ୍ରତିଘାତ ଏପରି ଭାବରେ ବଢିଚାଲିଛି ଯେ ସାହିତ୍ୟ ପତ୍ରିକା ଗୁଡ଼ିକର ବଂଚିରହିବା କ୍ରମଶଃ କଷ୍ଟ ହୋଇପଡୁଛି। ସାହିତ୍ୟକୁ, ସାହିତ୍ୟ ପତ୍ରିକାମାନଙ୍କୁ ପ୍ରୋତ୍ସାହନ ଦେବା ଯେ ସରକାରଙ୍କର ନୈତିକ ଦାୟିତ୍ୱ ଏ କଥା ଭୁଲିଗଲେ ଚ଼ଳିବ କିପରି ?

(ଜଗଦୀଶ, ଶେଷପୃଷ୍ଠା)

୧୨-ହୃଦାନନ୍ଦ ଗ୍ଲଲିଗଲେ, ଗ୍ଲଲିଗଲେ ଚିର ଆନନ୍ଦ ଧାମକୁ। ଏମିତି ସବୁ ଚାଲିଯିବ ଜଣକ ପରେ ଜଣେ। ପଛରେ ଛାଡ଼ିଯିବେ ଛୋଟ ବଡ଼ ଅନେକ ସ୍ମୃତିର ସମ୍ଭାରକୁ ସେଇମାନଙ୍କ ପାଇଁ ଯେଉଁମାମନେ ରହିଗଲେ, ଚ଼ାଲିଯିବାର ଦିନର ପ୍ରତୀକ୍ଷାରେ।

(ଜଗଦୀଶ, ଶେଷପୃଷ୍ଠା)

୧୩-ସ୍ଥିର ହୋଇଛି, ସମାବେଶକୁ ମାସିକ-ପତ୍ର ଭାବରେ ପ୍ରକାଶ ନକରି ତ୍ରୈମାସିକ-ସାହିତ୍ୟ-ପତ୍ର ଭାବରେ ନିୟମିତ ପ୍ରକାଶ କରିବା ପାଇଁ। ଗତାଗତିକ ଯେକୌଣସି ମାସିକ ସାହିତ୍ୟ ପତ୍ରିକାଠୁ ଏହାର ମାନ ଓ ମର୍ଯ୍ୟାଦାକୁ ଉଚ୍ଚତର ଓ ଅଭିଜାତ କରିବା ପାଇଁ ଆମର ସକ୍ରିୟ ଉଦ୍ୟମ ସର୍ବଦା ଅବ୍ୟାହତ ରହିବ।

xxxx

ପ୍ରବୀଣ ଓ ତରୁଣ ସ୍ରଷ୍ଟାମାନଙ୍କୁ ସୃଜନଶୀଳ ମୌଳିକ ରଚନାବଳୀରେ ଏହାର ତନୁ ହେବ ଶ୍ରୀମନ୍ତ ଓ ସମୃଦ୍ଧ। ନୂତନ ପ୍ରତିଭାର ଏହାହେବ ଆବିଷ୍କାରକ ତଥା ଦିଗ୍‌ଦର୍ଶକ।

(ଜଗଦୀଶ,ଶେଷପୃଷ୍ଠା)

୧୪-'ସମାବେଶ'ରେ ରମାକାନ୍ତ ରଥଙ୍କ କବିତା ଯେତେବେଳେ ପ୍ରକାଶ ପାଏ, ସେତେବେଳେ ତୁଳସୀ ଦୁଇ ପତ୍ରରୁ ବାସିଲା ପରି ତାର ଅତ୍ୟାଧୁନିକ ଦୃଷ୍ଟିଭଂଗୀଟି ଫୁଟି ଉଠିଥିଲା।

xxxx

କବିତାଠୁ ରମାକାନ୍ତଙ୍କ ବ୍ୟକ୍ତିଗତ ଆଚରଣ ଆହୁରି ମୁଗ୍‌ଧକର। ସାଧୁ ସନ୍ଥ ସଂସାର ଭିତରେ ଥିଲେ ଏମିତି ଦିଶନ୍ତି, ଏମିତି ସାନ୍ତ୍ୱନା ଆଉ ପ୍ରବୋଧନା ଦିଅନ୍ତି। ମୋ ଜୀବନର ବହୁତ ଦୁଃଖଯନ୍ତ୍ରଣା ଭିତରେ ମୁଁ ଯେତେବେଳେ ତାଙ୍କୁ ଭେଟେ, ସେ ଗୋଟିଏ ପରି କହି ମୋର ପୁତ୍ରଶୋକର ବ୍ୟଥାକୁ ପୋଛିଦେବାକୁ ଚ଼େଷ୍ଟା କରିଛନ୍ତି। ଜୀବନର,ଅକାଟ୍ୟ ସତ୍ୟ ମରଣ। ଆତ୍ମୀୟସ୍ୱଜନଠାରୁ ଆହୁରି ଆତ୍ମୀୟ ସେ। ତାଂକ କବିତାରେ ମୃତ୍ୟୁ ଚ଼େତନା ଯଦି ଥାଏ, ତାକୁ ସେ ଯେପରି ଅଂଶ ଲିଭେଇଛି ସେପରି ଲେଖିଥିବାରୁ ତାହା ଆଜି ପାଠକଙ୍କ ଅନ୍ତରକୁ ଛୁଇଁଛି। କବିତା ଓ ଜୀବନ ଏକା ହୋଇଯାଇଛି। ସେଥିରେ ଛଳନା ନାହିଁ କପଟତା ନାହିଁ। ତାଙ୍କୁ ଆମର ଶ୍ରଦ୍ଧାପୂତ ଅଭିନନ୍ଦନ।

(ଜଗଦୀଶ-ଶେଷପୃଷ୍ଠା)

ଆପଣ ଅନୁଚ୍ଛେଦକୁ ଗୁଳି ମାରନ୍ତୁ ।
ଆସନ୍ତୁ ହସନ୍ତୁ ଆଜି ଦିନ ଦୁଇଟା ।
ଅଗ୍ରଣୀଙ୍କ ସମ୍ମୁଖରେ ପ୍ରାର୍ଥନା କରନ୍ତୁ
ଅନୁଚ୍ଛେଦଙ୍କରେ ରହି ଆପଙ୍କୁ ଆଶୀର୍ବାଦ
କରନ୍ତୁ, ପ୍ରେରଣା ଦିଅନ୍ତୁ
ଆପଣଙ୍କର ଅସଂପୂର୍ଣ୍ଣ କାମକୁ ଯେପରି
ଆପଣ ସଂପୂର୍ଣ୍ଣ କରି ପାରନ୍ତୁ

ଭବଦୀୟ
କର୍ଣ୍ଣପୁରୀ ଦେବ
କ୍ୱାଲିଟି ପ୍ରେସ୍ (ପ୍ରା) ଲିଃ ଓଡ଼ିଶା ଗୌରବ ଆସ୍ଥା

Type Setting, Design and Printed at : Kwality Press [P] Ltd., Bhubaneswar-751001